ଜାନକୀ ବଲ୍ଲଭ ମହାନ୍ତି

# ଆଧୁନିକ ଓଡ଼ିଆ ସାହିତ୍ୟ

# ଆଧୁନିକ ଓଡ଼ିଆ ସାହିତ୍ୟ

ଲେଖକ
ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)
ଅଧ୍ୟାପକ, ଓଡ଼ିଆ ଓ ସଂସ୍କୃତ ବିଭାଗ
ରେଭେନ୍‌ସା କଲେଜ
କଟକ

ମୁଦ୍ରକ
ରାମକୃଷ୍ଣ ଶାସ୍ତ୍ରୀ
ଗୀତା ପ୍ରେସ, କଟକ

ପ୍ରକାଶକ
ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର
କଟକ : ବ୍ରହ୍ମପୁର

ପ୍ରଥମ ପ୍ରକାଶ
ରାସପୂର୍ଣ୍ଣିମା, ୧୯୬୩

ମୂଲ୍ୟ—ଟ ୫·୦୦
ବୋର୍ଡ଼ ବନ୍ଧେଇ
ଟ ୧·୦୦ ଅତିରିକ୍ତ

## ଲେଖକଙ୍କ ପ୍ରକାଶିତ ଅନ୍ୟାନ୍ୟ ରଚନା—

* କବିତା *

ଉର୍ମିଳ

ସ୍ୱପ୍ନର ବନ୍ଧ

* ଆଲୋଚନା *

ଓଡ଼ିଆ ସାହିତ୍ୟ ପରିକ୍ରମା

ଓଡ଼ିଆ ଛନ୍ଦର ବିକାଶ

* ଅନୁବାଦ *

କଥା ଓ କଥାକାର

ଦେଶ ବିଦେଶର ଗଳ୍ପ

ସେ ଦେଶର ଗଳ୍ପ

* ଶିଶୁ ସାହିତ୍ୟ *

ଦେଶ ବିଦେଶର କାହାଣୀ

କାହାଣୀ ସଂଗ୍ରହ

ଭାରତୀୟ ଗ୍ରାମ୍ୟ ଗଳ୍ପ

* ଜୀବନୀ *

ଲିଓ ଟଲଷ୍ଟୟ

* ସମ୍ପାଦନା *

ଫକୀରମୋହନ ପରିକ୍ରମା

ଓଡ଼ିଆ ପ୍ରେମ କବିତା

———

# ସୂଚୀ



———

# ଭୂମିକା

ରାଜଶକ୍ତିର ବିବିଧ ପରିବର୍ତ୍ତନ ସତ୍ତ୍ୱେ ପ୍ରାଚୀନ ବା ମଧ୍ୟଯୁଗର ଓଡ଼ିଆ ସାହିତ୍ୟ ତାହାର ପାରମ୍ପରିକ ଗତିପଥକୁ ଅନୁସରଣ କରି ଗତିଶୀଳ ହେଉଥିଲା । ସେତେବେଳେ ସାହିତ୍ୟକୁ ମୁଖ୍ୟତଃ ପ୍ରଭାବିତ କରୁଥିଲା ପୁରାଣ ଓ ଧର୍ମଶାସ୍ତ୍ର । ସେଥିପାଇଁ ମୋଗଲ ବା ମରହଟ୍ଟା ରାଜତ୍ୱକାଳରେ ରଚିତ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଆତ୍ମିକ ବା ଆଙ୍ଗିକ ପରିବର୍ତ୍ତନର ଉଲ୍ଲେଖଯୋଗ୍ୟ ଅଭିଜ୍ଞାନ ମିଳେ ନାହିଁ । ମାତ୍ର ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେବା ପରେ ଏ ଦେଶରେ ଇଂରାଜୀ ଶିକ୍ଷା ଓ ପାଶ୍ଚାତ୍ୟ ସଂସ୍କୃତିର ପ୍ରଚାର ଫଳରେ ବିଗତ ପ୍ରାୟ ଏକଶତାବ୍ଦୀ ମଧ୍ୟରେ ସାହିତ୍ୟର ବିଷୟବସ୍ତୁ ଓ ରଚନାରୀତିରେ ଯେଉଁ ବିପୁଳ ପରିବର୍ତ୍ତନ ହୋଇଅଛି ତାହା ଯେପରି ଉଲ୍ଲେଖଯୋଗ୍ୟ ସେହିପରି ଗୁରୁତ୍ୱପୂର୍ଣ୍ଣ । ଏହି ପୁସ୍ତକରେ ସେସବୁ ପରିବର୍ତ୍ତନଶୀଳ ସାହିତ୍ୟାଦର୍ଶ, ଐତିହାସିକ ରୂପରେଖ ଓ ବିକାଶଧାରାକୁ ଚିହ୍ନିତ କରିବାପାଇଁ ମୁଁ ଯତ୍‌ସାମାନ୍ୟ ଉଦ୍ୟମ କରିଅଛି । ମୋର ଏହି ପ୍ରୟାସ କିପରି ସତ୍ୟ ଓ ତଥ୍ୟାଶ୍ରିତ ଏବଂ ବ୍ୟକ୍ତି-ନିରପେକ୍ଷ ହୋଇପାରିଅଛି ତାହା ସୁଧୀ ପାଠକ-ପାଠିକାମାନଙ୍କ ପକ୍ଷେ ବିବେଚ୍ୟ ।

ମୂଳତଃ ଫକୀରମୋହନ, ରାଧାନାଥ, ମଧୁସୂଦନଙ୍କ ସାହିତ୍ୟସାଧନାର ପରବର୍ତ୍ତୀ ଓଡ଼ିଆ ସାହିତ୍ୟକୁ, ଅର୍ଥାତ୍ ଊନବିଂଶ ଶତାବ୍ଦୀର ଶେଷ ଦଶକରୁ ଅବଧି ପ୍ରାୟ ନବେ ବର୍ଷ ମଧ୍ୟରେ ରଚିତ ହୋଇଥିବା ସାହିତ୍ୟକୁ ଆଲୋଚନାର ସୁବିଧା ଦୃଷ୍ଟିରୁ 'ଆଧୁନିକ' ବୋଲି ଗ୍ରହଣ କରାଯାଉଅଛି । ଏହାକୁ 'ସମକାଳୀନ ଓଡ଼ିଆ ସାହିତ୍ୟ' ନାମରେ ମଧ୍ୟ ଅଭିହିତ କରାଯାଇ ପାରେ ।

ପ୍ରାଚୀନ ଓ ମଧ୍ୟ ଯୁଗର ଓଡ଼ିଆ କବି ଏବଂ କାବ୍ୟମାନଙ୍କ ସମ୍ପର୍କରେ ସବୁସାମାନ୍ୟ ଆଲୋଚନା ହୋଇଥିଲେ ହେଁ ଏହି ଆଧୁନିକ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଧାରାବାହିକ ଆଲୋଚନାର ଏକାନ୍ତ ଅଭାବ। ନାନା କାରଣରୁ ଆଲୋଚକଙ୍କୁ ଏହି ସମ୍ପର୍କୀୟ ଆଲୋଚନା କ୍ଷେତ୍ରରେ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥାଏ। ଓଡ଼ିଆରେ 'ଗ୍ରନ୍ଥସୂଚୀ' ପୁସ୍ତକର ଅଭାବ ଓ ଉପାଦେୟ ପୁସ୍ତକାବଳୀ ଦ୍ୱାରା ସୁସଜ୍ଜିତ ପୁସ୍ତକାଗାରର ଅଭାବ, ଏନ୍ମଧ୍ୟରୁ ଅନ୍ୟତମ। ତାହାଛଡ଼ା ଯେକୌଣସି ସାହିତ୍ୟର ଏହି ବିଭାଗ ସମ୍ପର୍କରେ ଆଲୋଚନା କରିବା ମଧ୍ୟ ଅତୀବ କଷ୍ଟସାଧ୍ୟ। ଏଣୁ ଯଥାର୍ଥତଃ କୁହାଯାଇଛି—To make a proper estimate of modern literature is, indeed one of the most difficult task of literary criticism. An old country and its old literature is a stuedy; but a new country and its new literature is a problem. It is hard to realise the past; but it is harder to read the present. (Preface to Bengali Litertuare in 19th Century P XI—by Dr. S. K. Dey (1919).

ବହୁ ଧାରାରେ ଏହି ଆଧୁନିକ ଓଡ଼ିଆ ସାହିତ୍ୟର ଅଭିବ୍ୟକ୍ତି। ସାଗର-ମିଳନ-ପ୍ରତ୍ୟାଶୀ ମହାନଦୀ ଭଳି ପ୍ରାଚୀନ ସାହିତ୍ୟର ପ୍ରବାହ ଯେପରି ନିଜକୁ ବହୁଧାରାରେ ବିଭକ୍ତ କରି ପରିପୂର୍ଣ୍ଣତା ଆଡ଼କୁ ଆଗେଇ ଚାଲିଛି; ତାର ପ୍ରତ୍ୟେକଟି ଶାଖା ବିଶାଳତାରେ ମୂଳ-ଧାରାର ସମକକ୍ଷ। ଏଣୁ ଗୋଟିଏ କ୍ଷୁଦ୍ର ପୁସ୍ତକରେ ତାହାର ସମଗ୍ର ପରିଚୟ ଦେବା ସମ୍ଭବପର ନୁହେଁ। ଯାହା ହେଉ, ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବ, ତାର ବିକାଶଧାରା ଓ ପ୍ରବୃତ୍ତି

ସମ୍ପର୍କରେ ମୋର ଯତ୍କିଞ୍ଚିତ ଆଲୋଚନାକୁ ଏହି ପୁସ୍ତକରେ ଏକସୂତ୍ରରେ ଗ୍ରଥିତ କରିଅଛି ।

ପ୍ରଗତଶୀଳ ସାହିତ୍ୟକ୍ଷେତ୍ରରେ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ଥାନନିର୍ଣ୍ଣୟ ବା ତୁଳନାତ୍ମକ ମୂଲ୍ୟାଙ୍କନ କରିବା ମୋ ପକ୍ଷେ ସମ୍ଭବପର ହୋଇପାରି ନାହିଁ । ଏହାଛଡ଼ା ନିରବଚ୍ଛିନ୍ନଭାବେ ସାହିତ୍ୟସୃଷ୍ଟିରେ ନିୟୋଜିତ ବ୍ୟକ୍ତିମାନଙ୍କ ରଚନା ସମ୍ପର୍କରେ ଅଥବା ରଚନାରେ ବୈଶିଷ୍ଟ୍ୟ ସ୍ପଷ୍ଟ ହୋଇ ନଥିବା ନବାଗତ ଲେଖକମାନଙ୍କ ସମ୍ପର୍କରେ କୌଣସି ଅଭିମତ ଦେବା ସମ୍ଭବ ନହେଲେ ହେଁ ପ୍ରସଙ୍ଗାନୁବୋଧରେ ସ୍ଥାନେ ସ୍ଥାନେ ମୁଁ ତାହା କରିବାକୁ ବାଧ୍ୟ ହୋଇଛି । ମୋର ଅନବଧାନତାପ୍ରସୂତ କେତେକ ସାହିତ୍ୟ-ସ୍ରଷ୍ଟାଙ୍କ ନାମୋଲ୍ଲେଖ ହୁଏତ ହୋଇ ନଥିବା ସମ୍ଭବପର । ଆଶାକରେ, ଲେଖକଗଣ ଏହାକୁ ଉଦାରଚିତ୍ତର ସହ ଗ୍ରହଣ କରିବେ ।

ପ୍ରବନ୍ଧଗୁଡ଼ିକୁ ଏକ ବିଷୟାଭିମୁଖୀ ଓ ଧାରାବାହିକ ଆଲୋଚନାରୂପେ ପୁସ୍ତକାକାରରେ ପ୍ରକାଶ କରିବାକୁ ସୁପରାମର୍ଶ ଦେଇ ଅନୁଗୃହୀତ କରିଛନ୍ତି କଥାଶିଳ୍ପୀ ଅଗ୍ରଜୋପମ ଶ୍ରୀ ରାଜକିଶୋର ପଟ୍ଟନାୟକ । ବିଶେଷତଃ ଯେଉଁ ସହୃଦୟ ଅଭିଜ୍ଞ ପ୍ରକାଶକଙ୍କ ସୌଜନ୍ୟରୁ ଏହି ପୁସ୍ତକର ପରିବେଷଣ ସମ୍ଭବପର ହୋଇ-ପାରିଛି ତାହାଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଅଛି ।

ଏହି ପୁସ୍ତକରେ ସନ୍ନିବିଷ୍ଟ ପ୍ରବନ୍ଧମାନଙ୍କ ମଧ୍ୟରୁ କେତେ-ଗୋଟି ପ୍ରବନ୍ଧ 'ଝଙ୍କାର', 'ଡଗର' ପ୍ରଭୃତି ସାହିତ୍ୟ ପତ୍ରିକାରେ ଓ ଅନ୍ୟ କେତେଗୋଟି ପ୍ରବନ୍ଧ ଦୁଇଟି ସଙ୍କଳିତ ପୁସ୍ତକରେ

ପୂର୍ବରୁ ପ୍ରକାଶିତ ହୋଇଥିଲା । ସେଗୁଡ଼ିକ ପରିମାର୍ଜିତ ଓ ପୁନର୍ଲିଖିତ ହୋଇ ଏହି ପୁସ୍ତକରେ ସ୍ଥାନ ପାଇବା ବ୍ୟତୀତ କେତେଗୋଟି ନୂତନ ପ୍ରବନ୍ଧ ମଧ୍ୟ ଏଥିରେ ସଂଯୋଜିତ ହୋଇଅଛି ।

ଏହି ଗ୍ରନ୍ଥରେ ପ୍ରବନ୍ଧଗୁଡ଼ିକ ଯଥାସମ୍ଭବ କାଳାନୁକ୍ରମେ ସଜ୍ଜିତ ହୋଇଥିଲେ ହେଁ ମୁଦ୍ରଣ ସମୟରେ ତାହାର ସଜ୍ଜୀକରଣରେ ଗୋଟିଏ ସ୍ଥାନରେ ସାମାନ୍ୟ ତ୍ରୁଟି ରହିଯାଇଅଛି । 'ସତ୍ୟବାଦୀ ସାହିତ୍ୟ' ପ୍ରବନ୍ଧଟି 'କଥାକାର ଫକୀରମୋହନ' ପ୍ରବନ୍ଧ ପରେ ମୁଦ୍ରିତ ହେବା ଉଚିତ ଥିଲା । ଏହି ପୁସ୍ତକରେ ବର୍ଣ୍ଣିତ ହୋଇଥିବା ଅନ୍ୟାନ୍ୟ ପୁସ୍ତକ ଓ ଲେଖକମାନଙ୍କର ଏକ ସୂଚୀ (index) ଦେବାର ଅଭିପ୍ରାୟ ଥିଲା; ତାହା ସମୟାଭାବରୁ କାର୍ଯ୍ୟକାରୀ ହୋଇ ପାରିନାହିଁ । ପରସଂସ୍କରଣରେ ଏହି ତ୍ରୁଟି ଦୂର କରିବାର ଅଭିଳାଷ ରହିଲା ।

ପରିଶେଷରେ ଓଡ଼ିଆ ସାହିତ୍ୟ ଆଲୋଚକ, ବିଦ୍ୟାର୍ଥୀ ଓ ସାହିତ୍ୟାନୁରାଗୀ ପାଠକମାନଙ୍କ ସେବାରେ ଏହି ରଚନା ନିୟୋଜିତ ହେଉ, ଏତିକି ମୋର ଏକାନ୍ତ ସ୍ୱାଭାବିକ ଅଭିପ୍ରାୟ ।

ଜାନକୀବଲ୍ଲଭ ମହାନ୍ତି
୧୧ । ୧୧ । ୬୩
କଟକ

# ଓଡ଼ିଆ ସାହିତ୍ୟର ନବଯୁଗ

ସାହିତ୍ୟ ଜୀବନଧର୍ମୀ । ଜୀବନଧର୍ମୀ ସାହିତ୍ୟର ରୂପ ଓ ରୀତି ଚିର ପରିବର୍ତ୍ତନଶୀଳ । ଲେଖକମାନଙ୍କର ବ୍ୟକ୍ତିଗତ ବୈଶିଷ୍ଟ୍ୟ ଅପେକ୍ଷା ପରିବର୍ତ୍ତିତ ପରିବେଶ ଓ କାଳର ଅପ୍ରତିହତ ପ୍ରଭାବହିଁ ସାହିତ୍ୟକୁ ନବୀନ ରୂପ ଓ ରସରେ ବିମଣ୍ଡିତ କରିଥାଏ । ଏଣୁ ମନୁଷ୍ୟର ଚିର ପରିବର୍ତ୍ତନଶୀଳ ଜୀବନ-ଧାରାର ବିଚିତ୍ର ପ୍ରବାହ ଭଳି ସାହିତ୍ୟ କ୍ଷେତ୍ରରେ ଯୁଗେ ଯୁଗେ ବହୁବିଧ ଆଙ୍ଗିକ ଓ ଆତ୍ମିକ ପରିବର୍ତ୍ତନ ସଂଘଟିତ ହୋଇଥାଏ । ସେଥିପାଇଁ ପ୍ରାଚୀନ ଓ ମଧ୍ୟ ଯୁଗର ଓଡ଼ିଆ ସାହିତ୍ୟ ଅପେକ୍ଷା ଆଧୁନିକ ବା ସାମ୍ପ୍ରତିକ ଓଡ଼ିଆ ସାହିତ୍ୟରେ ବହୁ ବିଶିଷ୍ଟତା ଓ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ଆଧୁନିକ ଓଡ଼ିଆ ସାହିତ୍ୟର ରୂପରେଖ ନିର୍ଦ୍ଧାରଣ ଲାଗି ସେହି ସବୁ ଆଙ୍ଗିକ ଓ ଭାବଗତ ପରିବର୍ତ୍ତନ ସମ୍ପର୍କରେ ଅବହିତ ହେବା ସର୍ବାଦୌ ଆବଶ୍ୟକ ।

## ଆଧୁନିକ ଓଡ଼ିଆ ସାହିତ୍ୟର ପୃଷ୍ଠଭୂମି—

୧୮୦୩ ମସିହାରେ ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହୋଇ ଥିଲେହେଁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି ସମ୍ପୂର୍ଣ୍ଣଭାବେ ପାଶ୍ଚାତ୍ୟ ପ୍ରଭାବରୁ ମୁକ୍ତ ଥିଲା ।

ପୌରାଣିକ ବିଷୟବସ୍ତୁ ସମ୍ବଳିତ ଓ ଭଞ୍ଜୀୟ କଳ୍ପନା-ସମୃଦ୍ଧ ଆଲଂକାରିକ କାବ୍ୟ-ରୀତିର ପ୍ରଭାବ ସେପର୍ଯ୍ୟନ୍ତ ଓଡ଼ିଶାର କବି-ଚିତ୍ତକୁ ପ୍ରଭାବିତ କରୁଥିଲା । ରୀତି-ଯୁଗର ଶେଷ ରକ୍ତିମ ରାଗରେ ଅନୁରଞ୍ଜିତ ଥିଲା ଓଡ଼ିଆ ସାହିତ୍ୟାକାଶ । ଭକ୍ତଚରଣ, ଯଦୁମଣି, ଗୋପାଳକୃଷ୍ଣ, କବିସୂର୍ଯ୍ୟ, ଗୌରହରି, ହରିବନ୍ଧୁ, ରଘୁନାଥ ପରିଚ୍ଛା ପ୍ରଭୃତି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର କବିଗଣ ରାମ-ସୀତା ବା ରାଧାକୃଷ୍ଣ ଲୀଳାତ୍ମକ କାବ୍ୟ ଅଥବା କାଳ୍ପନିକ କାବ୍ୟ ରଚନା କରିବାରେ ଆପଣାକୁ ମୁଖ୍ୟତଃ ନିୟୋଜିତ ରଖିଥିଲେ । କ୍ଷୁଦ୍ର ପ୍ରବନ୍ଧ ବା ସଙ୍ଗୀତ, ବିଭିନ୍ନ ରାଗରାଗିଣୀ ସମନ୍ୱିତ କାବ୍ୟ, ଚୌତିଶା, କୋଇଲି, ଜଣାଣ, ଚୌପଦୀ ଆକାରରେହିଁ ତାହା ଅଭିବ୍ୟକ୍ତି ଲାଭ କରୁଥିଲା । ମାତ୍ର ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେଉଁ ନୂତନତାର ପ୍ଲାବନ ସୃଷ୍ଟି କରିଥିଲା ତାହା ସମ୍ପୂର୍ଣ୍ଣଭାବେ କାବ୍ୟର ପାରମ୍ପରିକ ରୂପ ଓ ରୀତିକୁ ପରିବର୍ତ୍ତିତ କରିଦେଲା ।

## ଇଂରାଜୀ ଶିକ୍ଷା ବିସ୍ତାର ଓ ପତ୍ର ପତ୍ରିକା ପ୍ରଚଳନ—

ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ଅନ୍ତର୍ବିପ୍ଳବ, ଶାସନଗତ ଅସୁବିଧା, ପ୍ରାକୃତିକ ତଥା ନାନା ପ୍ରତିକୂଳ ପରିସ୍ଥିତି ଯୋଗୁଁ ଓଡ଼ିଶାରେ ଇଂରାଜୀ ଶିକ୍ଷା ବିସ୍ତାର ଲାଗି ମନଯୋଗୀ ହୋଇ ପାରି ନ ଥିଲେ । ମାତ୍ର ଏହି ସମୟ ମଧ୍ୟରେ ଖ୍ରୀଷ୍ଟିୟାନ ପାଦ୍ରି (ମିସନାରୀ) ମାନେ ଖ୍ରୀଷ୍ଟ ଧର୍ମ ପ୍ରଚାର ଲାଗି ବାଇବେଲର ଓଡ଼ିଆ ଅନୁବାଦ କରିଥିଲେ ଓ ଓଡ଼ିଆ ଭାଷା ଶିକ୍ଷା ଲାଗି ଓଡ଼ିଆ ବ୍ୟାକରଣ ଓ ଅଭିଧାନ ସଂକଳନ କରିଥିଲେ । ଶ୍ରୀରାମପୁର ମିସନାରୀମାନଙ୍କ ଦ୍ୱାରା ୧୮୧୧

ଖ୍ରୀଷ୍ଟାବ୍ଦରେ 'ହୋଲି ବାଇବେଲ'ର ଓଡ଼ିଆ ଅନୁବାଦ ପ୍ରକାଶ ପାଇଥିଲି ଓ ୧୮୨୭ରେ'ନ୍ୟୁ ଟେଷ୍ଟାମେଣ୍ଟ' ମୌଳିକ ଗ୍ରୀକ୍ ଭାଷାରୁ ଅନୂଦିତ ହୋଇ ପ୍ରକାଶିତ ହୋଇଥିଲି । ରେଭରେଣ୍ଡ ଏମସ୍ ସଟନ୍ ଓ ଭୁବନାନନ୍ଦ ନ୍ୟାୟାଳଂକାର ୧୮୪୧ରେ ଓଡ଼ିଆ ଅଭିଧାନ ସଂକଳନ କରି ପ୍ରକାଶ କରାଇ ଥିଲେ । ଏହାପରେ ୧୮୫୩ରୁ ୧୮୫୫ ମଧ୍ୟରେ ପୁରୀ, କଟକ ଓ ବାଲେଶ୍ୱରରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସମୂହ ପ୍ରତିଷ୍ଠିତ ହେଲି ଓ କ୍ରମଶଃ ଏ ଦେଶରେ ଇଂରାଜୀ ଶିକ୍ଷାର ପ୍ରସାର ଘଟିଲି । ଏହି ଇଂରାଜୀ ଶିକ୍ଷା ବିସ୍ତାରର ଶୁଭ ପରିଣତି ସ୍ୱରୂପ ପରବର୍ତ୍ତୀ ଦୁଇ ଦଶକ ମଧ୍ୟରେହିଁ ଏ ଦେଶରେ ନୂତନ ସାହିତ୍ୟ ସୃଷ୍ଟିର ଭୂମିକା ରଚିତ ହୋଇଥିଲି ।

୧୮୬୬ ମସିହାରେ ଓଡ଼ିଶା ନଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସରେ ପତିତ ହେବା ଫଳରେ ଉତ୍କଳର ଜାତୀୟ ଜୀବନରେ ଏକତା ଓ ସର୍ବାଙ୍ଗୀନ ଉନ୍ନତିର ସ୍ୱପ୍ନ ଜାଗ୍ରତ ହେଲି । ୧୮୬୮ରୁ ୭୦ ମଧ୍ୟରେ ଶିକ୍ଷା କ୍ଷେତ୍ରରୁ ଓଡ଼ିଆ ଭାଷାର ଉଚ୍ଛେଦ ପ୍ରଚେଷ୍ଟା ମଧ୍ୟ ଜାତୀୟ ଚେତନାକୁ ଉଦ୍‌ବୁଦ୍ଧ ଓ ଉଦ୍ଦୀପ୍ତ କରିଥିଲି । ଏହି ଅବକାଶରେ ଓ ଏହାର ଅବ୍ୟବହିତ ପରେ ଏ ଦେଶର ବିଭିନ୍ନାଞ୍ଚଳରୁ ସମ୍ବାଦ-ପତ୍ର ଓ ସାହିତ୍ୟ ପତ୍ରିକା ସମୂହ ପ୍ରକାଶିତ ହେବାକୁ ଲାଗିଲି । ଏହି ସବୁ ପତ୍ରିକାମାନଙ୍କୁ ଆଶ୍ରୟ କରି ପରବର୍ତ୍ତୀ ଗଦ୍ୟ ସାହିତ୍ୟ ସୃଷ୍ଟିର ବଳିଷ୍ଠ ଭିତ୍ତି ସ୍ଥାପିତ ହେଲି । ୧୮୩୭ ମସିହାରେ ଖ୍ରୀଷ୍ଟିୟାନ ଧର୍ମ ପ୍ରଚାରକମାନେ ଓଡ଼ିଶାରେ ପ୍ରଥମେ ମୁଦ୍ରଣ ଯନ୍ତ୍ର (କଟକ,ମିଶନ ପ୍ରେସ) ସ୍ଥାପନ କରିଥିଲେ । ରେଭରେଣ୍ଡ ଲେସି (Rev C. Lacy)ଙ୍କ ସଂପାଦନାରେ ପ୍ରଥମ ଓଡ଼ିଆ ପତ୍ରିକା 'ଜ୍ଞାନାରୁଣ' ୧୮୪୯ ମସିହାରେ ପ୍ରକାଶିତ ହୋଇଥିଲି । ଏହି ପତ୍ରିକା ମୁଖ୍ୟତଃ ଖ୍ରୀଷ୍ଟଧର୍ମ ପ୍ରଚାର

ପାଇଁ ଉଦ୍ଦିଷ୍ଟ ଥିଲା । ୧୮୬୬ ମସିହାରେ ଉତ୍କଳୀୟମାନଙ୍କ ଉଦ୍ୟମରେ ଆୟୋଜିତ ଓ ଗୌରୀଶଙ୍କର ରାୟଙ୍କ ଦ୍ୱାରା ସମ୍ପାଦିତ ପ୍ରଥମ ଓଡ଼ିଆ ପତ୍ରିକା 'ଉତ୍କଳ ଦୀପିକା' କଟକରୁ ପ୍ରକାଶିତ ହୋଇଥିଲା । ଏହାର ଦୁଇ ବର୍ଷ ପରେ ବାଲେଶ୍ୱରରୁ 'ବାଲେଶ୍ୱର ସମ୍ବାଦ ବାହିକା', 'ଉତ୍କଳ ଦର୍ପଣ' ( ୧୮୭୩ ), ମୟୂରଭଞ୍ଜରୁ 'ମୟୂରଭଞ୍ଜ' (୧୮୭୯) ପୁରୀରୁ 'ପୁରୁଷୋତ୍ତମ ଦୀପିକା' (୧୮୦୦) ଓ 'ପୁରୁଷୋତ୍ତମ ପତ୍ରିକା' (୧୮୮୨), ବାମଣ୍ଡାରୁ 'ସମ୍ବଲପୁର ହିତୈଷିଣୀ' ପ୍ରଭୃତି ପତ୍ରିକା ସମୂହ ପ୍ରକାଶିତ ହୋଇଥିଲା । ଏହିସବୁ ପତ୍ରିକାମାନଙ୍କରେ ସମ୍ବାଦ ବ୍ୟତୀତ ସାମୟିକ କବିତା, ଗଳ୍ପ, ପ୍ରବନ୍ଧ ପ୍ରଭୃତି ପ୍ରକାଶ ପାଉଥିଲେ ହେଁ ବାଲେଶ୍ୱରରୁ ପ୍ରକାଶିତ 'ଉତ୍କଳ ଦର୍ପଣ'ହିଁ ଓଡ଼ିଶାର ପ୍ରଥମ ସାହିତ୍ୟ-ପତ୍ରିକା ଓ ଏହା ପରେ ମୟୂର-ଭଞ୍ଜରୁ ପ୍ରକାଶିତ 'ଉତ୍କଳ ପ୍ରଭା' (୧୮୯୧) ଓ କଟକରୁ 'ଉତ୍କଳ ସାହିତ୍ୟ' (୧୮୯୭) ପ୍ରଭୃତି ପ୍ରକାଶିତ ହୋଇ ନୂତନ ଯୁଗରେ ନୂତନ ବିଷୟ ସମ୍ବଳିତ ସାହିତ୍ୟ ସୃଷ୍ଟିର ପଥକୁ ପ୍ରଶସ୍ତତର କରି-ଅଛି । ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଭାଷାରେ "ଉତ୍କଳ ଦର୍ପଣ ହିଁ ଓଡ଼ିଆ ସାହିତ୍ୟର ଆଦ୍ୟ ଲେଖକ ମଣ୍ଡଳୀ ପ୍ରସୂତ କରିଥିଲା ।" *

## ଓଡ଼ିଆ ସାହିତ୍ୟରେ ନବଯୁଗ—

ଖ୍ରୀଷ୍ଟୀୟ ଧର୍ମ ପ୍ରଚାରକଗଣ ଏ ଦେଶରେ ଇଂରାଜୀ ଶିକ୍ଷା ବିସ୍ତାର ଲାଗି ସର୍ବାଦୌ ପ୍ରଯତ୍ନ କରିଥିଲେ । ବିଭିନ୍ନ ସ୍ଥାନରେ ବିଦ୍ୟାଳୟ ପ୍ରତିଷ୍ଠା କରି ଓ କେତେକ ପାଠ୍ୟ ପୁସ୍ତକ ପ୍ରଣୟନ କରି ତଥା ପତ୍ରିକା ସମ୍ପାଦନ କରି ଜନସାଧାରଣଙ୍କୁ ଖ୍ରୀଷ୍ଟ ଧର୍ମ ପ୍ରତି ଆକୃଷ୍ଟ କରିବାକୁ ଚେଷ୍ଟା କରିଥିଲେ । ମାତ୍ର ଏହିମାନଙ୍କ ରଚିତ

* ଉତ୍କଳ ପତ୍ରିକା (୧୯ ଶତାବ୍ଦୀ)—ପଣ୍ଡିତ ମୃତ୍ୟୁଞ୍ଜୟ ରଥ ।

ପୁସ୍ତକାବଳୀ ଦ୍ୱାରା ଓଡ଼ିଆ ଗଦ୍ୟ ସ୍ୱତ ଉନ୍ନତ ବା ସୁସଂସ୍କୃତ ହୋଇ ନଥିଲା ଅଥବା ଏହି ଲେଖକମାନେ କୌଣସି ଉଲ୍ଲେଖ-ଯୋଗ୍ୟ ସାହିତ୍ୟ ସୃଷ୍ଟି କରିବାକୁ ସମର୍ଥ ହୋଇ ପାରି ନଥିଲେ ।

ଇଂରାଜୀ ଓ ବୈଦେଶିକ ସାହିତ୍ୟ ସମ୍ପର୍କରେ ଆସି ରାଧାନାଥ ଓ ମଧୁସୂଦନ ପ୍ରଭୃତି ନୂତନ ବିଷୟବସ୍ତୁ ସମ୍ବଳିତ ଓ ନୂତନ ସ୍ୱତର କାବ୍ୟ କବିତାମାନ ରଚନା କରିଥିଲେ । ଫକୀରମୋହନ ରାମଶଙ୍କର, ଉମେଶଚନ୍ଦ୍ର, ଜଗନ୍ମୋହନ ପ୍ରଭୃତି ଓଡ଼ିଆ ଗଦ୍ୟରେ ନୂତନ କରି ଗଳ୍ପ, ଉପନ୍ୟାସ, ନାଟକ ପ୍ରଭୃତି ରଚନା କରିଥିଲେ । ଗୌରୀଶଙ୍କର, ମଧୁସୂଦନ, ବିଶ୍ୱନାଥ, ପ୍ୟାରିମୋହନ, ଗୋବିନ୍ଦ-ଚନ୍ଦ୍ର ପଟ୍ଟନାୟକ, ନୀଳମଣି ବିଦ୍ୟାରତ୍ନ, ଗୋବିନ୍ଦ ରଥ, କପିଳେଶ୍ୱର ବିଦ୍ୟାଭୂଷଣ ପ୍ରଭୃତି ସମ୍ବାଦମୂଳକ ତଥା ବିବିଧ ଗଦ୍ୟ ରଚନା ଲେଖି ପାଠକମାନଙ୍କ ରୁଚିରେ ପରିବର୍ତ୍ତନ ଆଣିବାକୁ ସମର୍ଥ ହୋଇଥିଲେ । ଏଣୁ ୧୮୭୦ ଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ ଏହି ତିରିଶ ବର୍ଷ ମଧ୍ୟରେ ଫକୀରମୋହନ, ରାଧାନାଥ, ମଧୁସୂଦନ, ଗଙ୍ଗାଧର, ଗୌରୀଶଙ୍କର, ରାମଶଙ୍କର, ବିଶ୍ୱନାଥ, ଗୋବିନ୍ଦ ରଥ ପ୍ରଭୃତି ଯେଉଁ ସବୁ ସାହିତ୍ୟ ରଚନା କରିଥିଲେ ତାହା ପ୍ରାଚୀନ ତଥା ମଧ୍ୟଯୁଗର ଓଡ଼ିଆ ସାହିତ୍ୟଠାରୁ ଥିଲା ବହୁ ପରିମାଣରେ ଭିନ୍ନ ଓ ସ୍ୱତନ୍ତ୍ର ।

ପ୍ରାଚୀନ ଓଡ଼ିଆ କାବ୍ୟ କବିତାର ରୂପ ଓ ରୀତିକୁ ଅନୁସରଣ ନକରି ରାଧାନାଥ, ମଧୁସୂଦନ ଓ ଫକୀରମୋହନ ଅଭିନବ ବିଷୟ-ବସ୍ତୁ ଓ ରଚନାରୀତି ପ୍ରବର୍ତ୍ତନ କରିଥିଲେ । କ୍ରମଶଃ ପ୍ରାଚୀନ ଓଡ଼ିଆ ସାହିତ୍ୟର ରଚନାରୀତି ଆମୂଳ ପରିବର୍ତ୍ତିତ ହୋଇ ଓଡ଼ିଆ ସାହିତ୍ୟରେ ନୂତନ ଭଙ୍ଗୀ ଓ ଅଭିବ୍ୟକ୍ତିର ପ୍ରତିଷ୍ଠା ହେଲା ଓ

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠା ହେଲା । ଏଣୁ ଊନବିଂଶ ଶତାବ୍ଦୀର ଶେଷ ତ୍ରିଦଶକ ଥିଲା ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟିର ପ୍ରସ୍ତୁତି ତଥା ପ୍ରତିଷ୍ଠାର ସମୟ । ପ୍ରାଚୀନ ଓଡ଼ିଆ ସାହିତ୍ୟ ରୀତି ବା ବିଷୟବସ୍ତୁର ପ୍ରଭାବ ଅତ୍ୟନ୍ତ କ୍ଷୀଣ ହୋଇ ପଡ଼ିବାରୁ ଏହି ସମୟ-ଠାରୁ ଓଡ଼ିଆ ସାହିତ୍ୟରେ ନବ ଯୁଗର ସୂତ୍ରପାତ ହୋଇଅଛି ବୋଲି ଧରି ଯାଇଥାଏ । ଏଣୁ ଆଲୋଚନାର ସୁବିଧା ଲାଗି ୧୮୭୦ ଠାରୁ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସୂତ୍ରପାତ ହୋଇଅଛି ବୋଲି ଗ୍ରହଣ କରାଯାଇ ପାରେ ।

## ପଦ୍ୟ ବହୁଳ ସାହିତ୍ୟ କ୍ଷେତ୍ରରେ ଗଦ୍ୟର ପ୍ରତିଷ୍ଠା—

ସବୁ ଦେଶର ସାହିତ୍ୟ ଭଳି ପ୍ରାଚୀନ ଓ ମଧ୍ୟଯୁଗର ଓଡ଼ିଆ ସାହିତ୍ୟ ଥିଲା ମୁଖ୍ୟତଃ ପଦ୍ୟବହୁଳ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ରୁଦ୍ର ସୁଧାନିଧି, ବ୍ରହ୍ମଗୀତା, ଭୂଳାଭଣା, ସୋମନାଥ ବ୍ରତ କଥା, ବତିଶ ସିଂହାସନ କଥା, ମାଦଳା ପାଞ୍ଜି, ଚତୁର ବିନୋଦ, ହାସ୍ୟ-କଲ୍ଲୋଳ ପ୍ରଭୃତି ସ୍ୱଳ୍ପ ସଂଖ୍ୟକ ଗଦ୍ୟ ରଚନାର ନିଦର୍ଶନ ମିଳୁଥିଲେହେଁ ଊନବିଂଶ ଶତକର ଶେଷାର୍ଦ୍ଧରେ ବିଭିନ୍ନ ଓଡ଼ିଆ ପତ୍ର-ପତ୍ରିକା ମାଧ୍ୟମରେ ନୂତନ ରୀତିର ଗଦ୍ୟ ରଚିତ ହୋଇଥିଲା । ରାଧାନାଥ, ମଧୁସୂଦନ, ବିଶ୍ୱନାଥ କର, ଗୌରୀଶଙ୍କର, ରାମଶଙ୍କର, ପ୍ୟାରିମୋହନ, ଗୋବିନ୍ଦଚନ୍ଦ୍ର, ନୀଳମଣି ବିଦ୍ୟାରତ୍ନ, କପିଳେଶ୍ୱର, ଚତୁର୍ଭୁଜ ପଟ୍ଟନାୟକ ପ୍ରଭୃତି ବହୁ ଲେଖକ ବହୁବିଧ ବିଷୟରେ ପ୍ରବନ୍ଧ ରଚନା କରି ଗଦ୍ୟ ରଚନା କ୍ଷେତ୍ରରେ ନୂତନ ପରଂପରା ସୃଷ୍ଟି କରିଥିଲେ ।

ଊନବିଂଶ ଶତକର ଶେଷ ତ୍ରିଦଶକର ଗଦ୍ୟ ରଚନାବଳୀରେ ଦ୍ୱିବିଧ ଶୈଳୀ ପରିଲକ୍ଷିତ ହୁଏ । ସମାନ୍ତରାଳ ଭାବେ ଭକ୍ତକବି

ମଧୁସୂଦନଙ୍କ ମାର୍ଜିତ ସଂସ୍କୃତ ଶବ୍ଦବହୁଳ ଗଦ୍ୟ ଓ ଫକୀରମୋହନଙ୍କ ଗ୍ରାମ୍ୟ ଶବ୍ଦ ଓ ଓଡ଼ିଶାର କଥ୍ୟ ଭାଷାର ଆଦର୍ଶରେ ରଚିତ ଗଳ୍ପ, ଉପନ୍ୟାସ ସମୂହର ଗଦ୍ୟ ଶୈଳୀ ଓଡ଼ିଆ ସାହିତ୍ୟରେ ସ୍ପଷ୍ଟ ହୋଇ ପାଠକ ତଥା ଲେଖକମାନଙ୍କୁ ପ୍ରଭାବିତ କରିବାକୁ ସମର୍ଥ ହୋଇଥିଲା । କ୍ରମେ ସଂସ୍କୃତ ଶବ୍ଦ ବହୁଳ ଗଦ୍ୟ ପରିବର୍ତ୍ତେ ସରଳ ମାର୍ଜିତ ଗଦ୍ୟ ଅଧିକ ଜନାଦୃତ ହେଲା ଓ ଭାବର ଅଭିବ୍ୟକ୍ତି ଲାଗି ପଦ୍ୟ ଅପେକ୍ଷା ଗଦ୍ୟ ଯେ ଅଧିକ ଅନୁକୂଳ ଏହା ଅନୁଭୂତ ହେଲା । ଏହାର ପରିଣତି ସ୍ୱରୂପ କ୍ରମେ ପଦ୍ୟର ଆଦର ହ୍ରାସ ପାଇବାକୁ ଲାଗିଲା ଓ ଗଦ୍ୟରେ ବହୁ ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ ପ୍ରଭୃତି ରଚିତ ହେଲା । ବହୁ ଶତାବ୍ଦୀ ବ୍ୟାପୀ ପଦ୍ୟର ପୂର୍ଣ୍ଣ ଆଧିପତ୍ୟ ଓ ତାହାର ଧରାବନ୍ଧା ଗତିପଥ ଛାଡ଼ି ଓଡ଼ିଶାର ଲେଖକ ଓ ପାଠକ ଗଦ୍ୟର ମୁକ୍ତ ପରିସରରେ ସ୍ୱଚ୍ଛନ୍ଦ ବିହାରର ଆନନ୍ଦ ଲାଭ କଲେ ।

ଗଦ୍ୟହିଁ ଆଧୁନିକ ସାହିତ୍ୟର ପ୍ରଧାନ ବୈଶିଷ୍ଟ୍ୟ ଓ ଭାବ-ଅଭିବ୍ୟକ୍ତିର ଶ୍ରେଷ୍ଠ ମାଧ୍ୟମ । ଏଣୁ ବିଂଶ ଶତାବ୍ଦୀକୁ ଗଦ୍ୟର ଯୁଗ କୁହାଯାଇ ପାରେ । ଚଳିତ ଶତାବ୍ଦୀରେ ମୁକୁର (୧୯୦୫), ସତ୍ୟବାଦୀ (୧୯୧୪), ସହକାର (୧୯୧୯), ନବଭାରତ (୧୯୩୪), ଝଙ୍କାର ପ୍ରଭୃତି ବହୁ ପତ୍ରିକାକୁ ଆଶ୍ରୟ କରି ଗୋପାଳଚନ୍ଦ୍ର, ଗୋପବନ୍ଧୁ, ନୀଳକଣ୍ଠ, ଆର୍ତ୍ତବଲ୍ଲଭ, ଶଶିଭୂଷଣ, ଗୋପୀନାଥ ନନ୍ଦ, ରତ୍ନାକର ପତି, ମୃତ୍ୟୁଞ୍ଜୟ ରଥ, ଗୋପୀନାଥ ମହାନ୍ତି, କାଳନ୍ଦୀଚରଣ, ଚିତ୍ତରଞ୍ଜନ ଦାସ ପ୍ରଭୃତି ବହୁ ଲେଖକଙ୍କ ବିବିଧ ଗଦ୍ୟଶୈଳୀ ଦ୍ୱାରା ଓଡ଼ିଆ ସାହିତ୍ୟ ସମଲଂକୃତ ହୋଇଅଛି ଏବଂ ଗଦ୍ୟ ବ୍ୟବସ୍ଥିତ ଓ ବହୁ ଧାରାରେ ବିକଶିତ ହୋଇ ଅଛି । ଆଜିକାଲି ବହୁ

ଉପନ୍ୟାସ, କ୍ଷୁଦ୍ର ଗଳ୍ପ, ନାଟକ, ହାସ୍ୟ ଓ ବ୍ୟଙ୍ଗାତ୍ମକ ରଚନା ଏବଂ ଦାର୍ଶନିକ, ରାଜନୈତିକ ଓ ବିଜ୍ଞାନ ପ୍ରଭୃତି ନାନା ବିଷୟକ ପ୍ରବନ୍ଧ କ୍ରମଶଃ ଓଡ଼ିଆ ସାହିତ୍ୟର ଗଦ୍ୟରଚନା କ୍ଷେତ୍ରକୁ ସୁପ୍ରସାରିତ କରୁଅଛି ।

## ଆଧୁନିକ ସାହିତ୍ୟରେ ମାନବିକତା—

ପ୍ରାଚୀନ ସାହିତ୍ୟର ଅତିକଳ୍ପନା, ଆଧ୍ୟାତ୍ମିକତା, ଯୋଗାଗମ, ତନ୍ତ୍ରାଦି ଧର୍ମ ସାଧନା ସମ୍ବଳିତ ବହୁ ରଚନା ପରିବର୍ତ୍ତେ ଆଧୁନିକ ସାହିତ୍ୟରେ ମାନବିକତାର ପ୍ରକାଶ ଓ ପ୍ରତିଷ୍ଠା ହେଲା । ପ୍ରାଚୀନ ଓଡ଼ିଆ କାବ୍ୟମାନଙ୍କରେ ବିଶେଷଭାବରେ ରାଧାକୃଷ୍ଣ ଲୀଳା, ରାମାୟଣର ବିଭିନ୍ନ ଆଖ୍ୟାୟିକା, ଶୂନ୍ୟସାଧନା, ଦେବଦେବୀ, ସ୍ୱର୍ଗ ପ୍ରଭୃତି ଛଡ଼ା ଆଉ କିଛି ବର୍ଣ୍ଣିତ ହେଉ ନ ଥିଲା । ମଧ୍ୟଯୁଗର କାଳ୍ପନିକ କାବ୍ୟରେ ସେହିପରି କାଳ୍ପନିକ ନାୟକ-ନାୟିକାଙ୍କର ପ୍ରଣୟ, ବିରହ ବର୍ଣ୍ଣନାର ଆତିଶଯ୍ୟ ଓଡ଼ିଆ ସାହିତ୍ୟରେ ଏକ ଗତାନୁଗତିକତା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଜାତୀୟ ପ୍ରାଣରେ ଅରୁଚି ଆଣି ଦେଇଥିଲା । ରାଧାନାଥ ଏଇ ଗତାନୁଗତିକତା ଭାଙ୍ଗିବାକୁ ଯାଇ ସମ୍ପୂର୍ଣ୍ଣରୂପେ ସେଇ ପ୍ରଭାବରୁ ନିଜକୁ ମୁକ୍ତ କରିପାରି ନ ଥିଲେ । ରାଧାନାଥଙ୍କ କାବ୍ୟର ବିଷୟବସ୍ତୁ ଓଡ଼ିଶାର କିମ୍ବଦନ୍ତୀ, ଐତିହାସିକ ଗୌରବ ଏବଂ ପ୍ରାକୃତିକ ଓ ଭୌଗୋଳିକ ବର୍ଣ୍ଣନାସମନ୍ୱିତ ହେଲେ ମଧ୍ୟ ଏବଂ ବର୍ଣ୍ଣନା ଓ ଚରିତ୍ରଚିତ୍ରଣରେ ପ୍ରାକୃତିକତା ଆଡ଼କୁ ତାଙ୍କର ମମତା ଥିଲେ ମଧ୍ୟ 'ଚିଲିକା' ଓ 'ଦରବାର' ବ୍ୟତୀତ ତାଙ୍କର କାବ୍ୟସବୁ ନାନାପ୍ରକାର ଦୈବୀ-ପ୍ରଭାବ, ଅତିପ୍ରାକୃତ ଚରିତ୍ର ଓ ଅଲୌକିକତାରେ ଭାରାକ୍ରାନ୍ତ ।

ଆଧୁନିକ ସାହିତ୍ୟରେ ଏଇ ଦେବଦେବୀ ଓ ଉଚ୍ଚଯୁଗୀୟ ସ୍ୱର୍ଗଚ୍ୟୁତ କାଳ୍ପନିକ ନାୟକ-ନାୟିକାଙ୍କ ପରିବର୍ତ୍ତେ ସାଧାରଣ ମନୁଷ୍ୟର ସୁଖ-ଦୁଃଖ ଆଶା-ଆକାଙ୍‌କ୍ଷା, ତ୍ରୁଟି-ବିଚ୍ୟୁତି, ସମାଜର ଭଲମନ୍ଦ, ଆଚାର-ବ୍ୟବହାର ଇତ୍ୟାଦିକୁ ନେଇ ପଦ୍ୟ, ଉପନ୍ୟାସ, କ୍ଷୁଦ୍ର ଗଳ୍ପ, ପ୍ରବନ୍ଧ ପ୍ରଭୃତି ଲେଖା ହେବାକୁ ଲଗିଲା । ଅତୀତ ଯୁଗରେ ଆଧୁନିକ ଯୁଗଭଳି ବ୍ୟକ୍ତିଚୈତନ୍ୟ ଜାଗ୍ରତ ହୋଇ ନ ଥିଲା । ବିଜ୍ଞାନର ଆବିଷ୍କାର ଫଳରେ ଦେଶ ଓ କାଳର ବ୍ୟବଧାନ ଦୂର ହୋଇ ଆଧୁନିକ ଯୁଗରେ ପୃଥିବୀ କ୍ରମଶଃ ଏକତ୍ୱ ଆଡ଼କୁ ଅଗ୍ରସର ହେଉଅଛି । ପୃଥିବୀର ବିଭିନ୍ନ ଦେଶ ବ୍ୟବସାୟ, ବାଣିଜ୍ୟ, ଭାଷା, ଭାବ, ଶିକ୍ଷା ଓ ସଂସ୍କୃତିର ବିନିମୟ ମଧ୍ୟରେ ପରସ୍ପରର ନିକଟବର୍ତ୍ତୀ ହେଉଛନ୍ତି ଏବଂ ପରସ୍ପର ପ୍ରତି ସମ୍ବନ୍ଧାନ୍ୱିତ ହୋଇପଡ଼ୁଛନ୍ତି । ତେଣୁ ପୃଥିବୀର ପ୍ରତ୍ୟେକ ବ୍ୟକ୍ତି ନିଜର ଅବସ୍ଥା ବିଷୟରେ ସଚେତନ ହେବା ସଙ୍ଗେ ସଙ୍ଗେ ନିଜର ପରିବାର, ସମାଜ, ଦେଶ ଓ ଅନ୍ୟ ଦେଶର ପରିସ୍ଥିତି ବିଷୟରେ ସଚେତନ । କିନ୍ତୁ ପ୍ରାଚୀନକାଳରେ ଜୀବନଯାପନ ରୀତି ଅପ୍ରସାରିତ ଓ ସୀମାବଦ୍ଧ ଥିବାରୁ ସମ୍ଭବତଃ ଆମ ଦେଶର ଲୋକେ 'ବ୍ୟକ୍ତି'କୁ ଅତି ନଗଣ୍ୟ ଓ ହେୟ ମନେ କରୁଥିଲେ । ତେଣୁ ସାଧାରଣ ମନୁଷ୍ୟର ଇତିବୃତ୍ତ, ଜୀବନର ସୁଖଦୁଃଖକୁ ନେଇ କାବ୍ୟ ଲେଖିବା ଯେ ସମ୍ଭବ, ଏହା ସେମାନେ ଭାବିପାରୁ ନ ଥିଲେ ।

ଆଧୁନିକ ଯୁଗର ମାନବ ନିଜ ସମ୍ବନ୍ଧରେ ସଚେତନ ହେବା ଓ ନିଜକୁ ଶ୍ରଦ୍ଧା କରି ଶିଖିବା ସଙ୍ଗେ ସଙ୍ଗେ ବୁଝି-ପାରୁଛି ଯେ, ତାହାରି ଭିତରେ ମଧ୍ୟ କାବ୍ୟ ସୃଷ୍ଟିର ଯଥେଷ୍ଟ ଉପାଦାନ ପୂରି ରହିଅଛି । କାବ୍ୟର ଉପକରଣ ପାଇଁ ଇହଜଗତ ମଧ୍ୟ ପର୍ଯ୍ୟାପ୍ତ । ସେଥିପାଇଁ ସ୍ୱର୍ଗର ଦେବଦେବୀଙ୍କ ନିକଟରେ

ଉପଯୋଗିତାଭାବରେ ଦଣ୍ଡାୟମାନ ହେବା ନିଷ୍ପ୍ରୟୋଜନ । ଏଣୁ, ସାଧାରଣ ମାନବର ସୁଖଦୁଃଖ-ରଞ୍ଜିତ ବିଚିତ୍ର ଜୀବନ ଇତିବୃତ୍ତହିଁ ଆଧୁନିକ ସାହିତ୍ୟ—ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ଆଧୁନିକ ସାହିତ୍ୟର ବହୁମୁଖୀ ଧାରା—

ଆଧୁନିକ ମାନବର ଜୀବନଯାତ୍ରା ଯେପରି ଜଟିଳ, ଆଧୁନିକ ସାହିତ୍ୟର ପ୍ରକାଶଭଙ୍ଗୀ ସେହିପରି ବହୁ ବୈଚିତ୍ର୍ୟପୂର୍ଣ୍ଣ । ଅତୀତର ଜୀବନ ଯେପରି ଅପ୍ରଶସ୍ତ, ସଙ୍କୁଚିତ ଥିଲା, କାବ୍ୟକବିତାର ବିଷୟବସ୍ତୁ ମଧ୍ୟ ସେହିପରି ଥିଲା ନିତାନ୍ତ ଅଳ୍ପ । ସେଥିପାଇଁ ଏକମାତ୍ର ବିଷୟବସ୍ତୁକୁ ଅବଲମ୍ବନ କରି ବହୁ କବି କାବ୍ୟକବିତା ଲେଖୁଥିଲେ । ଏଣୁ ସେସବୁ ରଚନା ବୈଚିତ୍ର୍ୟହୀନ ହୋଇପଡ଼ୁଥିଲା । ଇଂରାଜୀ ଶିକ୍ଷାର ପ୍ରଚଳନ, ଇଂରାଜୀ ସାହିତ୍ୟ ଓ ଇଂରାଜୀ ସାହିତ୍ୟର ଆଦର୍ଶାନୁପ୍ରାଣିତ ବଙ୍ଗ ସାହିତ୍ୟ ସଙ୍ଗେ ସୁପରିଚିତ ହେବା ଫଳରେ ଓଡ଼ିଆ ଲେଖକମାନେ 'ସାହିତ୍ୟର ବହୁମୁଖୀ ବିଭାଗ ଓ ବହୁ ଉପକରଣର ସନ୍ଧାନ ଲାଭ କରିଥିଲେ । ପଦ୍ୟନିବଦ୍ଧ ଦୀର୍ଘ ଘଟନା ବା କାହାଣୀ ଗଦ୍ୟ ଉପନ୍ୟାସର ରୂପ ପରିଗ୍ରହ କଲା । ସେହିପରି ଗୀତିକାବ୍ୟ, ପ୍ରବନ୍ଧ, ନାଟକ, ଏକାଙ୍କ ନାଟିକା, କ୍ଷୁଦ୍ରଗଳ୍ପ, ବିଦ୍ରୂପାତ୍ମକ ରଚନା (satire),ସମାଲୋଚନା, ଲାଳିକା (parody) ପ୍ରଭୃତି ବହୁବିଧ ରୂପ ପରିଗ୍ରହ କରି ଆଧୁନିକ ସାହିତ୍ୟ ସମୃଦ୍ଧ ଓ ବୈଚିତ୍ର୍ୟପୂର୍ଣ୍ଣ ହୋଇଅଛି ।

## ଆଧୁନିକ ସାହିତ୍ୟର ଦେଶାତ୍ମବୋଧ ଓ ବ୍ୟଙ୍ଗବିଦ୍ରୂପର ମୂଳସୂତ୍ର—

ବିଶ୍ୱନାଥଦାସଙ୍କଠାରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର କବି କବିସୂର୍ଯ୍ୟ ବଳଦେବ ରଥଙ୍କ ପର୍ଯ୍ୟନ୍ତ ପ୍ରାୟ ସବୁ

କବିଙ୍କର କାବ୍ୟ-କବିତାର ବିଷୟବସ୍ତୁ ମୁଖ୍ୟତଃ ଧର୍ମବୋଧରୁ ଉଦ୍ଭୂତ ହୋଇଥିଲି । ଦେଶର ଜୟ-ପରାଜୟ ବା ରାଜଶକ୍ତିର ପରିବର୍ତ୍ତନରେ ମଧ ସେହି ପ୍ରାଚୀନ ଯୁଗର ସମାଜ ଓ ବ୍ୟକ୍ତି-ବିଶେଷର ଜୀବନ ଅବିକ୍ଷୁବ୍ଧ ଓ ପ୍ରଭାବମୁକ୍ତ ରହୁଥିଲି । ଧର୍ମହିଁ ସେତେବେଳେ ଜୀବନର ସମସ୍ତ ବିଭାଗ ଉପରେ ଅଖଣ୍ଡ ଆଧିପତ୍ୟ ବିସ୍ତାର କରୁଥିଲି । ମାତ୍ର ଆଧୁନିକ ଯୁଗରେ, ୧୮ଶ ଶତାବ୍ଦୀର ଶିଳ୍ପବିପ୍ଳବ ଓ ସାମ୍ରାଜ୍ୟବିସ୍ତାର ଫଳରେ,ମନୁଷ୍ୟ ମନରେ ଦେଶାତ୍ମ-ବୋଧ ଭଳିଏକ ନୂତନ ଧାରଣା ସୃଷ୍ଟି ହୋଇଅଛି । ସାରଳା ଦାସ, ବଳରାମ ଦାସ ଓ ପଞ୍ଚସଖା ପ୍ରଭୃତି ଉତ୍କଳର ଶ୍ରେଷ୍ଠତ୍ୱ ନିଜ ନିଜ କାବ୍ୟକବିତାରେ ପ୍ରତିପାଦନ କରିଯାଇଥିଲେହେଁ ଏହି ନବପ୍ରବର୍ତ୍ତିତ ଦେଶାତ୍ମବୋଧ ଏକ ନୂତନ ରୂପରେ ଆଧୁନିକ ସାହିତ୍ୟରେ ଆତ୍ମପ୍ରକାଶ କରିଅଛି ।

କବି ରାଧାନାଥ ଦେଶାତ୍ମବୋଧକୁ ସର୍ବପ୍ରଥମେ ସ୍ୱାଗତ କରି ନିଜ ରଚନାରେ ପ୍ରକାଶ କରିଥିଲେ । ଏହି ଦେଶାତ୍ମବୋଧ ପ୍ରଥମେ ଇଂରାଜୀ ସାହିତ୍ୟରୁ ଆସି ଆମ ସାହିତ୍ୟରେ ଅନୁପ୍ରବିଷ୍ଟ ହୋଇ-ଥିଲେହେଁ କ୍ରମେ ତାହା ଉତ୍କଳୀୟ ଐତିହାସିକ ଓ ସାମାଜିକ ପରିବେଶ ମଧ୍ୟରେ ଏକ ବିଶିଷ୍ଟ ରୂପ ପରିଗ୍ରହ କରିଥିଲି ଫକୀରମୋହନ, ରାଧାନାଥ, ମଧୁସୂଦନ ଓ ଗୋପବନ୍ଧୁଙ୍କର ଅପୂର୍ବ ରଚନାରେ । ତା'ଛଡ଼ା ଆଧୁନିକ ଓଡ଼ିଆ ସାହିତ୍ୟରେ ଏକ ନୂତନ ରଚନାରୀତି ଦେଖାଦେଇଥିଲି—ତାହା ହେଉଛି ବ୍ୟଙ୍ଗ ରଚନା । ବ୍ୟଙ୍ଗପ୍ରିୟତା ଓଡ଼ିଆ ସାହିତ୍ୟରେ ପ୍ରାଚୀନକାଳରୁ ଲକ୍ଷିତ ହୁଏ । କଳସା ଚଉତିଶା, ଚତୁରବିନୋଦ ଓ ଅନ୍ୟାନ୍ୟ କେତେକ ପ୍ରାଚୀନ କାବ୍ୟରେ ଇତସ୍ତତଃ ବିକ୍ଷିପ୍ତ ହାସ୍ୟରସର ସ୍ୱଳ୍ପ ବର୍ଣ୍ଣନା ଦେଖିବାକୁ

ମିଳିଲେ ମଧ୍ୟ ଆଧୁନିକ ସାହିତ୍ୟରେ ବ୍ୟଙ୍ଗ ବିଦ୍ରୂପ ସମ୍ପୂର୍ଣ୍ଣ ଭିନ୍ନ ରୀତିରେ ଅଭିବ୍ୟକ୍ତି ଲାଭ କରିଅଛି ।

ପ୍ରାଚୀନ ଲେଖକମାନଙ୍କର ହାସ୍ୟରସର ବର୍ଣ୍ଣନା ବା ବ୍ୟଙ୍ଗାତ୍ମକ ରଚନାର ଏକମାତ୍ର ଉଦ୍ଦେଶ୍ୟ ଥିଲା, ପାଠକମାନଙ୍କୁ ଶୁଦ୍ଧ ହାସ୍ୟରସ ପରିବେଷଣ କରିବା । ହାସ୍ୟ-କଲ୍ଲୋଳ, ଚତୁର-ବିନୋଦ କେବଳ ପାଠକମାନଙ୍କୁ ହସାଇବା ଅଭିପ୍ରାୟରେ ହିଁ ଲିଖିତ । ସମାଜର ଦୋଷ, ତ୍ରୁଟିର ସଂଶୋଧନ ବା ନିର୍ମମ ସମାଲୋଚନା ଲାଗି ସେଗୁଡ଼ିକ ନିର୍ଦ୍ଦିଷ୍ଟ ନ ଥିଲା । ମାତ୍ର ଆଧୁନିକ ସାହିତ୍ୟର ବ୍ୟଙ୍ଗ ବିଦ୍ରୂପାତ୍ମକ କାବ୍ୟକବିତା, ଗଦ୍ୟ-ରଚନା, ନାଟକ ପ୍ରଭୃତି ବିଶେଷ ଉଦ୍ଦେଶ୍ୟରେ ଲିଖିତ ହୋଇଥାଏ । ସମାଜର ପ୍ରଚଳିତ ବିଧିବ୍ୟବସ୍ଥା, ଦୋଷତ୍ରୁଟିର ତୀବ୍ର ସମାଲୋଚନା କରି ସମାଜର ଆଭ୍ୟନ୍ତରୀଣ ସଂଘର୍ଷ ଓ ସ୍ୱବିରୋଧର ସୂଚନାଦେବା ଏହାର ପ୍ରଧାନ ଲକ୍ଷ୍ୟ । ଏଣୁ ଦେଶାତ୍ମବୋଧ ହିଁ ଏହି ସଂସ୍କାରକାମୀ ରଚନା ସୃଷ୍ଟିର ମୂଳ କାରଣ ।

ଫକୀରମୋହନଙ୍କ ରଚନାବଳୀରେ ସର୍ବପ୍ରଥମେ ଏହି ସଂସ୍କାର-ମୂଳକ ବ୍ୟଙ୍ଗ ବିଦ୍ରୂପ ଆତ୍ମପ୍ରକାଶ କରିଥିଲା । ସମାଜର ବହୁ ବ୍ୟବସ୍ଥାର ସଂଶୋଧନ କରିବା ଉଦ୍ଦେଶ୍ୟରେ ତାଙ୍କର ଉପନ୍ୟାସ ଓ ଗଳ୍ପଗୁଡ଼ିକ ଲିଖିତ । ତାହାଙ୍କ ସମକାଳୀନ ଗୋବିନ୍ଦ ରଥ ଓ ପରବର୍ତ୍ତୀ ଗୋପାଳ ପ୍ରହରାଜ, ଲକ୍ଷ୍ମୀକାନ୍ତ ଓ ଗୋଦାବରୀଶ ମହାପାତ୍ର ଏଇ ରଚନାର ପରିପୁଷ୍ଟିସାଧନା କରିଛନ୍ତି । ତଥାପି 'ନିଆଁଖୁଣ୍ଟା' ଓ 'ଡଗର' ପ୍ରଭୃତି ପତ୍ରିକାର କେତେକ ରଚନାକୁ ଛାଡ଼ିଦେଲେ ଓଡ଼ିଆ ସାହିତ୍ୟରେ ହାସ୍ୟ ରସାତ୍ମକ ରଚନାର ଯେ ଏକାନ୍ତ ଅଭାବ ପରିଲକ୍ଷିତ ହୁଏ, ଏଥିରେ ସନ୍ଦେହ ନାହିଁ ।

## ଆଧୁନିକ ସାହିତ୍ୟରେ ଇତିହାସ ଓ ବାସ୍ତବତାର ସଂଯୋଗ—

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଐତିହାସିକ ମନୋଭାବ ଦେଖାଯାଏ ନାହିଁ । କଳିଙ୍ଗ ସେନାର ଅଦ୍ଭୁତ ଯୁଦ୍ଧ, ଖାରବେଳଙ୍କର ଦିଗ୍‌ବିଜୟ, ଓଡ଼ିଆ ନାବିକଙ୍କର ଜଳଯାତ୍ରା, ନୌବାଣିଜ୍ୟ, ଉପନିବେଶ ସ୍ଥାପନ, କେଶରୀ, ଗଙ୍ଗ ଓ ସୂର୍ଯ୍ୟବଂଶୀ ରାଜାଙ୍କର ବହୁ ମନ୍ଦିର ନିର୍ମାଣ, ଯୁଦ୍ଧ ଓ ରାଜ୍ୟଜୟ ଇତ୍ୟାଦି ଓଡ଼ିଶା ଇତିହାସର ବହୁ ଗୌରବାବହ ଘଟନା ବିଷୟରେ ପ୍ରାଚୀନ ଓଡ଼ିଆ ସାହିତ୍ୟ ସମ୍ପୂର୍ଣ୍ଣ ନୀରବ କହିଲେ ଚଳେ । ଇଂରାଜୀ ଶିକ୍ଷା, ସାହିତ୍ୟ ଓ ଇତିହାସ ଅନୁଶୀଳନ କରି ଆଧୁନିକ ଯୁଗରେ ଓଡ଼ିଶାର ଅଜ୍ଞାତ ଇତିହାସ ପ୍ରତି ଲୋକମାନଙ୍କ ମନ ଆକୃଷ୍ଟ ହୋଇଥିଲା ଏବଂ ଇଂରାଜୀ ସାହିତ୍ୟ ଅନୁକରଣରେ ଏହି ସମୟରେ ଓଡ଼ିଶାର ବହୁ ଐତିହାସିକ ଓ କିମ୍ବଦନ୍ତୀସମ୍ବଳିତ ରଚନା ଲିଖିତ ହୋଇଥିଲା । ରାମଶଙ୍କରଙ୍କର 'କାଞ୍ଚିକାବେରୀ' ନାଟକ, 'ବିବାସିନୀ' ଉପନ୍ୟାସ, ଉମେଶ ସରକାରଙ୍କର 'ପଦ୍ମମାଳି', ଫକୀରମୋହନଙ୍କର 'ଲଛମା', ରାଧାନାଥଙ୍କର 'ପାର୍ବତୀ', 'ନନ୍ଦିକେଶ୍ୱରୀ' ପ୍ରଭୃତି ରଚନାଗୁଡ଼ିକର ନାମ ଏହି ସମ୍ପର୍କରେ ଉଲ୍ଲେଖଯୋଗ୍ୟ । ରାମଶଙ୍କର, ରାଧାନାଥ, ଫକୀରମୋହନ ପ୍ରଭୃତି ଏ ଦିଗରେ ଓଡ଼ିଆ ସାହିତ୍ୟର ପଥପ୍ରଦର୍ଶକ ଭାବରେ ଚିରସ୍ମରଣୀୟ ହୋଇ ରହିବେ ।

ଭାରତୀୟ ସଭ୍ୟତା ଓ ସଂସ୍କୃତିର ଗୌରବ ଏବଂ ଭାରତ ଇତିହାସର ନାନା ଗୌରବାବହ ଘଟନାକୁ ମଧ୍ୟ ନାଟକ, ଉପନ୍ୟାସ, ପ୍ରବନ୍ଧ ପ୍ରଭୃତିରେ ରୂପଦାନ କରି ଏହା ପରେ ବହୁ ଲେଖକ ଜିଜ୍ଞାସୀୟ ପାଠକମାନଙ୍କର ଦୃଷ୍ଟିସମକ୍ଷକୁ ଆଣିଅଛନ୍ତି । ଏହିପରି

'କୋଣାର୍କ', 'ଖାରବେଳ', 'କମଳକୁମାରୀ', 'ପ୍ରିୟଦର୍ଶୀ', 'ଓଡ଼ିଆ ପୁଅ', 'ଜୟଦେବ','ରଘୁଅରକ୍ଷିତ', 'ଧର୍ମ', 'ପୁରୁଷୋତ୍ତମଦେବ', 'ପାଇକପୁଅ' ପ୍ରଭୃତି ଅସଂଖ୍ୟ ପୁସ୍ତକ ରଚିତ ହୋଇ ଆଧୁନିକ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ ଓ ବୈଚିତ୍ର୍ୟପୂର୍ଣ୍ଣ କରିଅଛି ।

## ଆଧୁନିକ ସାହିତ୍ୟର ନୂତନ କାବ୍ୟ ରୀତି ଓ ଛନ୍ଦବୈଚିତ୍ର୍ୟ—

ପ୍ରାଚୀନ ସାହିତ୍ୟରେ ବିଶେଷଭାବରେ ଅକ୍ଷରମାତ୍ରିକ ଛନ୍ଦ ବ୍ୟବହୃତ ହେଉଥିଲା । "ଅକ୍ଷର ଗଣିବ ହାତରେ, ତେବେ ସେ ଲେଖିବ ପତରେ", ଏଇଆ ଥିଲା ଏକ ପ୍ରଚଳିତ ରୀତି । ମାତ୍ର ଆଧୁନିକ ସାହିତ୍ୟର ପ୍ରବର୍ତ୍ତକ ରାଧାନାଥ, ମଧୁସୂଦନ ପ୍ରଭୃତିଙ୍କ ଦ୍ୱାରା ଛନ୍ଦର ଅନେକ ପରିବର୍ତ୍ତନ ହୋଇଥିଲା । ପ୍ରାଚୀନ ସାହିତ୍ୟରେ ବିଭିନ୍ନ ଛନ୍ଦ ଓ ଅଜସ୍ର ରାଗରାଗିଣୀ ଏବଂ ବୃତ୍ତର ପ୍ରଚଳନ ଥିଲା । ରାଧାନାଥ, ମଧୁସୂଦନ ଓ ଗଙ୍ଗାଧର ସେଥିରୁ କେତୋଟିକୁ ଗ୍ରହଣ କରି କାବ୍ୟକବିତା ଲେଖିଥିଲେ । ରାଧାନାଥ ଅମିତ୍ରାକ୍ଷର ଛନ୍ଦକୁ ସାର୍ଥକ ଭାବରେ ଓଡ଼ିଆ ସାହିତ୍ୟରେ ପ୍ରଚଳନ କରିଯାଇଛନ୍ତି । ସେଇମାନେ ହିଁ ପ୍ରଥମେ ଓଡ଼ିଆ କାବ୍ୟକ୍ଷେତ୍ରରେ ଉପଧା ମିଳନର ସୂତ୍ରପାତ କରିଥିଲେ ।

ଏହାପରେ ରାଧାନାଥ ପରବର୍ତ୍ତୀ ଯୁଗର ବହୁ କବି ଓ ସବୁଜପନ୍ଥୀ ଲେଖକ ଅକ୍ଷରମାତ୍ରିକ ଛନ୍ଦକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରି ଯୁକ୍ତାକ୍ଷରିକ ଛନ୍ଦରେ କାବ୍ୟକବିତା ଲେଖିବାର ସୂତ୍ରପାତ କରିଥିଲେ । (କେବଳ ଯୁକ୍ତାକ୍ଷରକୁ ଏହି ଛନ୍ଦରେ ଦୁଇ ମାତ୍ରିକ ଭାବରେ ଗ୍ରହଣ କରାଗଲା । ଏହା ସଂସ୍କୃତ ମାତ୍ରାବୃତ୍ତ ଛନ୍ଦର

ଆଂଶିକ ଅନୁକୃତି ମାତ୍ର ) । ସବୁଜଯୁଗରେ ଅର୍ଥାତ୍ ସ୍ଥୂଳତଃ ୧୯୩୦ ପରଠାରୁ ଓଡ଼ିଆ ସାହିତ୍ୟରେ ବହୁବିଧ ଛନ୍ଦର ବ୍ୟବହାର ଦେଖାଦେଇଥିଲା । ପ୍ରାଚୀନ ସାହିତ୍ୟର ଛନ୍ଦ ସହିତ ଏଇ ନବାନୁସୃତ ଛନ୍ଦମାନଙ୍କର କୌଣସି ମେଳ ବା ସାଦୃଶ୍ୟ ନ ଥିଲା । ନୂତନ ଛନ୍ଦ ପ୍ରବର୍ତ୍ତନ କରିବାରେ କାଳନ୍ଦୀଚରଣ, ବୈକୁଣ୍ଠନାଥ, ଗୋଦାବରୀଶ ମହାପାତ୍ର, ରାଧାମୋହନ ଗଡ଼ନାୟକ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ସଚ୍ଚିଦାନନ୍ଦ, ଅନନ୍ତ ପଟ୍ଟନାୟକ, ବିନୋଦ ନାୟକ ପ୍ରଭୃତି ଅତି ଆଧୁନିକ ଲେଖକମାନେ ଛନ୍ଦ ବିଷୟରେ ଆହୁରି ଅଗ୍ରସର ହୋଇଛନ୍ତି । 'କାବ୍ୟର ଛନ୍ଦକୁ ବାକ୍‌ଛନ୍ଦର ଅନୁଗାମୀ' କରିବାକୁ ଯାଇ ବହୁ କବି ଆଜି ଗଦ୍ୟକବିତା ପ୍ରଭୃତିର ପରୀକ୍ଷା ଓଡ଼ିଆ କାବ୍ୟକବିତାରାଜ୍ୟରେ ଆରମ୍ଭ କରିଅଛନ୍ତି । ଏହିପରି ଆଧୁନିକ କାବ୍ୟକବିତାରେ ନୂତନ ଛନ୍ଦର ବୈଚିତ୍ର୍ୟ ଯୋଗୁଁ ପ୍ରାଚୀନ ଛନ୍ଦର ଏକାଧିପତ୍ୟ ଦୂରୀଭୂତ ହୋଇଅଛି ।

## ଆଧୁନିକ ସାହିତ୍ୟର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ—

ବହୁ ଦେବଦେବୀଙ୍କ ଜୀବନ ବା କାଳ୍ପନିକ ନାୟକ-ନାୟିକାଙ୍କର ପ୍ରେମ ପ୍ରାୟ ଅଧିକାଂଶ ପ୍ରାଚୀନ କାବ୍ୟକବିତାର ବିଷୟବସ୍ତୁ ଥିଲା । ରସ ସୃଷ୍ଟି କାବ୍ୟର ଲକ୍ଷ୍ୟ ବୋଲି ଗୃହୀତ ହେଉଥିଲେହେଁ ପ୍ରାଚୀନ କାବ୍ୟଗୁଡ଼ିକ ଅଳଙ୍କାରପୂର୍ଣ୍ଣ ବା ଘଟନାବହୁଳ ଥିଲା । କାବ୍ୟକବିତାରେ ନାୟକ-ନାୟିକାଙ୍କର ମନୋଭାବର ସୂକ୍ଷ୍ମ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ଅଭାବ ଥିଲା । ମାତ୍ର ଆଧୁନିକ ସାହିତ୍ୟର ଗଦ୍ୟ ପଦ୍ୟ ସବୁ ବିଭାଗରେ ମନୋଭାବ ବିଶ୍ଳେଷଣ ସାହିତ୍ୟିକ ରଚନାର ପ୍ରଧାନ ଲକ୍ଷ୍ୟ ହୋଇଅଛି । ମନର ଭାବ, ଅନୁଭୂତି,

କଳ୍ପନା ଏବଂ ବାସ୍ତବତାର ସଂଯୋଗରେ ରସାଣିତ ହୋଇ ବହୁ ଭାବରେ ରୂପଲାଭ କରୁଅଛି । ମାନବଜୀବନରେ ଯେଉଁ ବିଷୟର ସମ୍ଭବପରତା ଅଛି, ତାହାକୁ କଳ୍ପନା ସାହାଯ୍ୟରେ ସରସ ଓ ସୁନ୍ଦର କରି ବର୍ଣ୍ଣନା କରିବା ଆଧୁନିକ ଲେଖକମାନଙ୍କର ଉଦ୍ଦେଶ୍ୟ । ସମ୍ଭବତଃ ପ୍ରାଚୀନ କବିମାନେ ଏ ବିଷୟରେ ସଚେତନ ନ ଥିବାରୁ ସେମାନଙ୍କ ରଚନାରେ ଅବାସ୍ତବତା, ଅତିରଞ୍ଜନ ବହୁଳ ପରିମାଣରେ ପରିଲକ୍ଷିତ ହୁଏ ।

ଏହିପରି ଆଧୁନିକ ଓଡ଼ିଆ ସାହିତ୍ୟର ଧାରା ବହୁ ରୂପରେ ଓ ବହୁ ଭାବରେ ପ୍ରବାହିତ ହୋଇ ଓଡ଼ିଆ ସାହିତ୍ୟକ୍ଷେତ୍ରକୁ ସମୃଦ୍ଧତର ଏବଂ ଜାତୀୟ ପ୍ରାଣକୁ ସରସ କରି ବହିଚାଲିଛି । ମାତ୍ର ଏହି ନବୀନ ଧାରାଟି ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ପ୍ରବାହିତ ହେବା ସଙ୍ଗେ ସଙ୍ଗେ ପ୍ରାଚୀନ ସାହିତ୍ୟର ଗତାନୁଗତିକ ଧାରାଟି ଅବିଳମ୍ବେ ବିଲୁପ୍ତ ହୋଇ ଯାଇ ନ ଥିଲା । ପ୍ରାଚୀନ ସଂସ୍କାରାଚ୍ଛନ୍ନ ଓଡ଼ିଶାର ଜାତୀୟ-ଜୀବନ ବହୁଦିନ ପର୍ଯ୍ୟନ୍ତ ଏହି ନବାଗତ ସଂସ୍କୃତି ସ୍ରୋତକୁ ଗ୍ରହଣ କରିବାକୁ ଯେପରି ନିଶ୍ଚେଷ୍ଟ ଓ ବୀତସ୍ପୃହ ଥିଲା, ସେହିପରି ସାହିତ୍ୟ-କ୍ଷେତ୍ରରେ ମଧ୍ୟ ଏହି ନବ୍ୟ-ରୀତିକୁ ସ୍ୱାଗତ କରି ପରମ ଆତ୍ମୀୟର ଗୌରବ ଦେବାକୁ ପଶ୍ଚାତ୍‌ପଦ ହୋଇଥିଲା ।

ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ସବୁଜପନ୍ଥୀ ଲେଖକମାନଙ୍କ ପ୍ରତିଷ୍ଠା ପର୍ଯ୍ୟନ୍ତ ପ୍ରାଚୀନ ଓ ଆଧୁନିକ ଏଇ ଦୁଇ ଧାରା ମଧ୍ୟରେ ସର୍ବଦା ଏକ ଦ୍ୱନ୍ଦ୍ୱାତ୍ମକ ପ୍ରତିକ୍ରିୟା ପରିଲକ୍ଷିତ ହେଉଥିଲା । ଇଂରାଜୀ ଶିକ୍ଷା, ସଭ୍ୟତା ପ୍ରବର୍ତ୍ତିତ ହେବାର ପ୍ରାୟ ଏକ ଶତାବ୍ଦୀ ପରେ ଏବେ ମଧ୍ୟ କେତେକଙ୍କ ମନରେ ପ୍ରାଚୀନ ସାହିତ୍ୟ ପ୍ରତି ଅହେତୁକ ପ୍ରୀତି ଅତୁଟ ରହିଛି ଏବଂ ସେହି ପ୍ରାଚୀନ ରୀତିର ଅନ୍ଧ ଅନୁକରଣରେ

ସାହିତ୍ୟ ସୃଷ୍ଟି କରିବାର ନିଷ୍ଫଳ ପ୍ରୟାସର ଦୃଷ୍ଟାନ୍ତ ଏବେ ମଧ୍ୟ ବିରଳ ନୁହେଁ । କିନ୍ତୁ ଯୁଗର ଅପ୍ରତିହତ ପ୍ରଭାବ ଫଳରେ ଆଧୁନିକତାର ହିଁ ଜୟ ହୋଇଛି । କୋଣାର୍କର ବାଲୁକା ପ୍ରାନ୍ତରରେ ଚନ୍ଦ୍ରଭାଗାର ଜଳଧାରା ବହୁଶତାବ୍ଦୀ ପୂର୍ବେ ନିଶ୍ଚିହ୍ନ ହୋଇଗଲା ପରି ପ୍ରାଚୀନତାର ଏହି କ୍ଷୟିଷ୍ଣୁ ଧାରା ଆଜି ସମ୍ପୂର୍ଣ୍ଣରୂପେ ମନ୍ଦୀଭୂତ ହୋଇ ଯାଇଅଛି ଏବଂ ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ବହୁବିଧ ସୌନ୍ଦର୍ଯ୍ୟ-ମଣ୍ଡିତ କରି ଆଧୁନିକତାର ଉଚ୍ଛଳ ଜଳଧାରା ପ୍ରବାହିତ ହେଉଅଛି । ଏହିସବୁ ପରିବର୍ତ୍ତନ, ଗତିଶୀଳତା ଓ ଜୀବନ୍ତ ବଳିଷ୍ଠ ସାହିତ୍ୟର ଲକ୍ଷଣ ସମୂହ ହିଁ ଓଡ଼ିଆ ସାହିତ୍ୟର ଉଜ୍ଜ୍ୱଳ ଭବିଷ୍ୟତ ବିଷୟରେ ଆମକୁ ଆଶାବାଦୀ କରିଅଛି ।

---

# ପ୍ରଥମ ଓଡ଼ିଆ ପ୍ରବନ୍ଧ

## ( ବିବେକୀ )

ରାଧାନାଥଙ୍କ ପଦ୍ୟ ଓ କାବ୍ୟମାନଙ୍କ ସମ୍ପର୍କରେ ବହୁ ଆଲୋଚନା ହୋଇଥିଲେହେଁ ତାଙ୍କର ଗଦ୍ୟ ରଚନାବଳୀ ସମ୍ପର୍କରେ ଆଶାନୁରୂପ ଆଲୋଚନା ହୋଇ ପାରିନାହିଁ । ସମ୍ଭବତଃ ରାଧାନାଥଙ୍କ କବି-ପ୍ରସିଦ୍ଧି ତାହାଙ୍କ ଗଦ୍ୟ ରଚନାକୁ ଛାୟାବୃତ କରି ପକାଇଛି । କବିଙ୍କର ଉତ୍କଳ-ଭାରତୀ ପୂଜାର ସେଗୁଡ଼ିକ ଯେ ଅନ୍ୟତମ ଉପାଦାନ, ଏହା ଆଲୋଚନା କଲେ ସହଜରେ ସ୍ୱୀକାର କରିହୁଏ ।

ରାଧାନାଥଙ୍କ ଗଦ୍ୟ ରଚନାବଳୀର ସଂଖ୍ୟା ଉପେକ୍ଷଣୀୟ ନୁହେଁ । ଇତାଲୀୟ ଯୁବା (ଉପନ୍ୟାସ), ବିବେକୀ (ପ୍ରବନ୍ଧ), ପାର୍ବତୀ କାବ୍ୟର ଉପସଂହାର, ଉର୍ବଶୀ କାବ୍ୟର ପାଞ୍ଚଗୋଟି ସର୍ଗ,ଭ୍ରମଣ-କାରୀର ପତ୍ର, ବାମଣ୍ଡା (ଭ୍ରମଣ ବୃତ୍ତାନ୍ତ), ସାର୍ ବାସୁଦେବ (ଜୀବନୀ), ଉତ୍କଳ ସାହିତ୍ୟର ଉନ୍ନତି (ଲିଖିତ ଭାଷଣ) ପ୍ରଭୃତି ତାହାଙ୍କର ଗଦ୍ୟରଚନାବଳୀ ଭାବେ ଉଲ୍ଲେଖ ଯୋଗ୍ୟ ।

ସେମାନଙ୍କ ମଧ୍ୟରୁ 'ଇତାଲୀୟଯୁବା' ବାଲେଶ୍ୱରରୁ ପ୍ରକାଶିତ ହେଉଥିବା ''ଉତ୍କଳ ଦର୍ପଣ'' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି ଉତ୍କଳ ଦର୍ପଣ ପତ୍ରିକାଟି ୧୮୭୩ ଖ୍ରୀଷ୍ଟାବ୍ଦ ଜାନୁୟାରି ମାସରେ ପ୍ରଥମେ ବାଲେଶ୍ୱରରୁ ପ୍ରକାଶ ପାଇଥିଲା । ଓଡ଼ିଆ ପତ୍ରିକା ସାହିତ୍ୟର

ଇତିହାସରେ ଏହା ଏକ ଉଲ୍ଲେଖଯୋଗ୍ୟ ପତ୍ରିକା । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଦ୍ୱାରା ଏହି 'ଉତ୍କଳ ଦର୍ପଣ' ହିଁ ଓଡ଼ିଆ ସାହିତ୍ୟର ଆଦ୍ୟ ଲେଖକମଣ୍ଡଳୀ ପ୍ରସ୍ତୁତ କରିଥିଲା । ରାଧାନାଥ ଓ ମଧୁସୂଦନଙ୍କ ଅନେକ ଗଦ୍ୟ ଓ ପଦ୍ୟ ରଚନା ଏଥିରେ ପ୍ରକାଶିତ ହୋଇଥିଲା । ତେରବର୍ଷ ପାଇଁ ଏହି ପତ୍ରିକା ସୁଖ୍ୟାତିର ସହିତ ଚଳିଥିଲା । ୧୮୭୩ରେ ରାଧାନାଥଙ୍କ 'ବିବେକୀ' ପ୍ରବନ୍ଧଟି ଏହି ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଏହାକୁ ରଚନା କଲାବେଳେ ରାଧାନାଥ ପଚିଶ ବର୍ଷର ଯୁବକ । ତାହାର ପୂର୍ବବର୍ଷ ସ୍କୁଲ ଶିକ୍ଷକରୁ ପଦୋନ୍ନତି ଲାଭକରି ସେ ସ୍କୁଲ ଡେପୁଟି ଇନ୍‌ସ୍‌ପେକ୍ଟର୍ ଭାବେ ନିଯୁକ୍ତି ପାଇଥାନ୍ତି । ତିନି ବର୍ଷ ପୂର୍ବେ ତାଙ୍କର ବିବାହ ହୋଇଥାଏ । ତାଙ୍କର ପ୍ରଥମ ପୁସ୍ତକ ବଙ୍ଗଳା 'କବିତାବଳୀ' ପ୍ରକାଶିତ ହୋଇ ସାରିଥାଏ । ସେତେବେଳେ ଓଡ଼ିଆ ସାହିତ୍ୟ ତଥା ଓଡ଼ିଆ ଜାତିର ଜୀବନର ନବଜାଗରଣର ଯୁଗ । ବଙ୍ଗୀୟ କର୍ମଚାରୀମାନଙ୍କର ଓଡ଼ିଆ ସାହିତ୍ୟକୁ ଓଡ଼ିଶାରୁ ବିଲୁପ୍ତ କରିବାଲାଗି ହୀନ ଚକ୍ରାନ୍ତ ଓ ନଅଙ୍କ ଦୁର୍ଭିକ୍ଷ ଉତ୍କଳୀୟମାନଙ୍କୁ ଜାତୀୟ-ଭାବରେ ଉଦ୍‌ବୁଦ୍ଧ ହେବା ଲାଗି ସଚେତନ କରିଥିଲା । ଆତ୍ମରକ୍ଷାର ବ୍ୟାକୁଳତା ସର୍ବତ୍ର ପରିଲକ୍ଷିତ ହେଉଥିଲା । ଏହା ଫଳରେ ଉତ୍କଳୀୟମାନଙ୍କ ଉଦ୍ୟମରେ କଟକ, ବାଲେଶ୍ୱରରେ ନୂତନ ପତ୍ରିକାସବୁ ସଂଗଠିତ ହେଲା । ୧୮୭୨ରେ ଗଞ୍ଜାମରେ ତେଲୁଗୁ ପରିବର୍ତ୍ତେ ଓଡ଼ିଆ ଭାଷା କଚେରୀ ବ୍ୟବହାର୍ଯ୍ୟ ଭାଷାଭାବେ ସ୍ୱୀକୃତ ହେଲା । ସେହି ବର୍ଷ ଗୌରୀଶଙ୍କରଙ୍କ ଉଦ୍ୟମରେ କଟକରେ ଓଡ଼ିଆ 'ଆସୋସିଏସନ' ଗଠିତ ହୋଇଥିଲା ।

'ବିବେକୀ' ରଚିତ ହେବା ପୂର୍ବରୁ ଓଡ଼ିଆ ଗଦ୍ୟ ସାହିତ୍ୟର ପରିସ୍ଥିତି ମଧ୍ଯ ଏଠାରେ ଆଲୋଚ୍ୟ । ଇଂରେଜମାନଙ୍କ ଆଗମନ ପୂର୍ବରୁ ଓଡ଼ିଆ ଗଦ୍ୟ ରଚନାମାନଙ୍କ ମଧ୍ୟରୁ ରୁଦ୍ରସୁଧାନିଧି, ଗଦ୍ୟରେ ଲିଖିତ ବ୍ରତକଥା ସକଳ, ମାଦଳାପାଞ୍ଜି, ଚତୁର-ବିନୋଦ, ହାସ୍ୟ-କଲ୍ଲୋଳ ପ୍ରଭୃତିର ନାମ ଉଲ୍ଲେଖ କରାଯାଇଥାଏ । ଇଂରେଜ ଅଧିକାର ପରେ ଶ୍ରୀରାମପୁର ମିସନାରି ଓ ଓଡ଼ିଶାକୁ ଆସିଥିବା ପାଦ୍ରିମାନଙ୍କ ଦ୍ୱାରା ଯେଉଁ ଗଦ୍ୟ ରଚିତ ହୋଇଥିଲା ତାହା ଓଡ଼ିଆ ଗଦ୍ୟକୁ ବିକଶିତ କରିବା ଦୂରେ ଥାଉ, ଓଡ଼ିଆ ଗଦ୍ୟ ସାହିତ୍ୟର ପ୍ରାଚୀନ ଐତିହ୍ୟକୁ ନିଶ୍ଚିତଭାବେ ଖର୍ବ କରିଥିଲା । ମିସନାରିମାନେ ବାଇବେଲର ଅନୁବାଦ, ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ କାହାଣୀ ସଂଗ୍ରହ, ବିଭିନ୍ନ ଆଇନ ଓ ନିୟମାବଳୀର ସଂଗ୍ରହ ଓ ସାହିତ୍ୟ, ଇତିହାସ ଓ ଭୂଗୋଳ ପ୍ରଭୃତି ବିଭିନ୍ନ ପାଠ୍ୟ ପୁସ୍ତକ ମାନଙ୍କରେ ଯେଉଁ ଗଦ୍ୟ ବ୍ୟବହାର କରୁଥିଲେ ତାହା କିମ୍ଭୂତ-କିମାକାର, ଦୋଷଦୁଷ୍ଟ ଓ ବଙ୍ଗ ଭାଷା ପ୍ରଭାବିତ ହୋଇ ବିକୃତ ହୋଇ ପଡ଼ିଥିଲା । ମାତ୍ର ଉତ୍କଳୀୟମାନଙ୍କ ଉଦ୍ୟମରେ ଦୀପିକା, ସମ୍ବାଦବାହିକା, ଉତ୍କଳ ଦର୍ପଣ ପ୍ରଭୃତି ପତ୍ରିକା ପ୍ରକାଶିତ ହୋଇ ତାହାର ମାଧ୍ୟମରେ ଏକ ନୂତନ ଗଦ୍ୟ-ରୀତିର ଅଭ୍ୟୁଦୟ ହେଲା ।

ଏହିପରି ସମୟରେ ରାଧାନାଥଙ୍କ 'ବିବେକୀ' ରଚିତ ଓ ପ୍ରକାଶିତ । ଓଡ଼ିଆ ସାହିତ୍ୟର ଏହା ପ୍ରଥମ ସାହିତ୍ୟିକ ପ୍ରବନ୍ଧ-ପଦବାଚ୍ୟ ରଚନା । ବିବେକୀ ରଚିତ ହେବା ପୂର୍ବରୁ ସମ୍ବାଦପତ୍ର-ମାନଙ୍କରେ ନାନା ବିବରଣୀ, ବିବୃତି ଓ ସଂକ୍ଷିପ୍ତ ଆଲୋଚନା ପ୍ରକାଶ ପାଉଥିଲେହେଁ ବିବେକୀ ଭଳି କୌଣସି ଏକ ବିଷୟରେ ଧାରାବାହିକ, ପୁଙ୍ଖାନୁପୁଙ୍ଖ ଓ ତାତ୍ତ୍ୱିକତା ପୂର୍ଣ୍ଣ ବିଚାର ସମ୍ବଳିତ

ନିବନ୍ଧ ଅନ୍ୟ କେହି ରଚନା କରିବାକୁ ସମର୍ଥ ହୋଇ ନ ଥିଲେ । ୧୮୭୩ ପୂର୍ବରୁ ଓଡ଼ିଆ ଭାଷାର ଗଦ୍ୟ ଯେ ଅନୁନ୍ନତ ଅବସ୍ଥାରେ ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ । ମାତ୍ର 'ବିବେକୀ' ରଚନାଟିରୁ ଓଡ଼ିଆ ଗଦ୍ୟ ରଚନାର ସମୁଜ୍ଜ୍ୱଳ ଭବିଷ୍ୟତର ସୂଚନା ମିଳିଥାଏ । ରାଧାନାଥ ଛାତ୍ରାବସ୍ଥାରେ ସ୍କୁଲରେ ବଙ୍ଗଳା ପାଠ୍ୟପୁସ୍ତକ ପାଠ କରିଥିଲେ । ତାହାପରେ ଇଂରାଜୀ ସାହିତ୍ୟ ତାଙ୍କର ମୁଖ୍ୟ ଅଧୀତବ୍ୟ ବିଷୟ ଥିଲା । ଏତଦ୍‌ବ୍ୟତୀତ ଓଡ଼ିଆ ଗଦ୍ୟର ବଳିଷ୍ଠ ପରମ୍ପରା ମଧ୍ୟ ନ ଥିଲା । ଏହିପରି ପରିସ୍ଥିତିରେ ରାଧାନାଥଙ୍କ ଏହି ସର୍ବ ପ୍ରଥମ ଗଦ୍ୟ ରଚନାଟି ଦୋଷଜଡ଼ିତ ହେବା ଆଶ୍ଚର୍ଯ୍ୟ କଥା ନୁହେଁ । ବରଂ ବଙ୍ଗଳାର ଅନୁବାଦ ଓ ପାଦ୍ରୀମାନଙ୍କ ବିକୃତ ଗଦ୍ୟ ରଚନା ପରେ ଏପରି ଗଦ୍ୟରେ ପ୍ରବନ୍ଧଟି ଲିଖିତ ହେବାହିଁ ଆଶ୍ଚର୍ଯ୍ୟର ବିଷୟ ।

ଏହି ସାର୍ଦ୍ଧ ପ୍ରବନ୍ଧଟି ଲେଖକଙ୍କ ତୀକ୍ଷ୍ଣ ବୁଦ୍ଧି ତଥା ସୁଗଭୀର ପାଣ୍ଡିତ୍ୟ ଓ ସୂକ୍ଷ୍ମ ମାନବ ଚରିତ୍ର ଅନୁଶୀଳନର ପରିଚାୟକ । ଏହି ରଚନାଟିରୁ କବି ରାଧାନାଥଙ୍କ ଉଦାର ବ୍ୟକ୍ତିତ୍ୱର ସ୍ପର୍ଶ ମଧ୍ୟ ପାଠକ ଲାଭ କରିଥାଏ । ସାଂସାରିକ ବିଷୟରେ ତାଙ୍କର କେତେ ପରିମାଣରେ ଅଭିଜ୍ଞତା ଥିଲା, ତାହା ମଧ୍ୟ ଏଥିରୁ ଜଣାଯାଏ । ବହୁ ସାମାଜିକ ରୀତିନୀତି, ଅଭ୍ୟାସ-ଆଚରଣ ଏଥିରେ ସ୍ପଷ୍ଟଭାବେ ପ୍ରତିଫଳିତ । 'ବିବେକୀ' ପାଠକଲେ ମାନବ ଚରିତ୍ର, ତାହାର ଦୋଷ- ତ୍ରୁଟି, ମହତ୍ତ୍ୱପୂର୍ଣ୍ଣ ଗୁଣାବଳୀ ବିଷୟରେ ପାଠକ ସମ୍ୟକ୍ ଅବହିତ ହୋଇଥାଏ ।

ଇଂରାଜୀରେ ଗୋଟିଏ କଥା ଅଛି—To understand all is to forgive all. ଜୀବନକୁ ତଥା ଜୀବନର ନାନା ସମସ୍ୟା

ଅଭିଯୋଗ ଓ ବ୍ୟର୍ଥତାକୁ ସମଗ୍ରଭାବେ ବିଚାର କଲେ ମନୁଷ୍ୟର ଦୁଃଖ ଅପସାରିତ ହୋଇପାଏ । ମନର ଅନେକ ସଙ୍କୀର୍ଣ୍ଣ ଧାରଣା ଦୂରୀଭୂତ ହୋଇଗଲେ, ନାନା ସଂଶୟ ଓ ସମସ୍ୟାର ହେତୁ ବୁଝି ପାରିଲେ ଅଶାନ୍ତିର ଅବସାନ ହୋଇଥାଏ । ତାହା ହିଁ ପ୍ରକୃତରେ ବିବେକୀର ଗୁଣ । କବି ଏହି ଦୀର୍ଘ ପ୍ରବନ୍ଧଟିରେ ସେହିପରି ବିବେକୀ ଜନୋଚିତ ଉଦାର ମନୋବୃତ୍ତିର କେତେକ ବିଷୟ ସନ୍ନିବେଶିତ କରି ଅଛନ୍ତି । ଏଗୁଡ଼ିକ ଅତ୍ୟନ୍ତ ଶିକ୍ଷାପ୍ରଦ ଏବଂ ଶୋକ-ତାପକ୍ଳିଷ୍ଟ ପ୍ରାଣରେ ଶାନ୍ତି ପ୍ରଦାୟକ । ଏଥିରେ ମନୁଷ୍ୟର ଦୁଃଖର କାରଣ ସ୍ୱରୂପ କବି ମନୁଷ୍ୟ ମନର ସଙ୍କୀର୍ଣ୍ଣତା, ଅଜ୍ଞତା ଓ ଅନୁଦାରତାକୁ ନିର୍ଦ୍ଦେଶ କରି ଅଛନ୍ତି । ତେଣୁ ମନର ଉତ୍କର୍ଷ ବିଧାନ ଓ ସଂକୀର୍ଣ୍ଣତା ଦୂର କରି ମନକୁ ସତେଜ ଓ ଦୃଢ଼ କରିବାକୁ ସେ ଉପଦେଶ ଦେଇଅଛନ୍ତି ।

ଏହି ପ୍ରବନ୍ଧଟିର ଅବତରଣିକାଟି ଅତ୍ୟନ୍ତ ଦୀର୍ଘ । ଏଣୁ ପ୍ରକୃତ ଆଲୋଚ୍ୟ ବିଷୟ ସଂପର୍କରେ ପାଠକ ବହୁ ବିଳମ୍ବରେ ହିଁ ଅବହିତ ହୋଇଥାଏ । ପ୍ରଥମରୁ ଲେଖକ ପୁସ୍ତକାବଳୀ ଯେ ମନୁଷ୍ୟର ପ୍ରଧାନ ସାଥୀ—ତାହା ବର୍ଣ୍ଣନା କରି ଅଛନ୍ତି । "ଏମାନଙ୍କ ପ୍ରାୟ ବିପଦବନ୍ଧୁ ମିଳିବାର ଦୁଷ୍କର ଅଟେ ।" ଏହି ଧରଣର ରଚନା ଯେ ଦୁଃଖ-ତାପ-କ୍ଳିଷ୍ଟ ମନୁଷ୍ୟପ୍ରାଣର ଦୁଃଖ ପ୍ରଶମିତ କରିବ—ଲେଖକଙ୍କର ଏହା ଦୃଢ଼ ବିଶ୍ୱାସ । ସେଥିପାଇଁ ସର୍ବାଦୌ ସେ ଲେଖିଛନ୍ତି—"ଏମ୍ଭ ଯେ ପ୍ରବନ୍ଧ ତାହାର ମନର ଆର୍ତ୍ତି ଫେଡ଼ି-ପାରିବ, ଏପରି ପ୍ରବନ୍ଧରେ ସମସ୍ତଙ୍କର ଆସ୍ଥା ହେବାର ଦିଶୁଅଛି ।" ଦୁଃଖ କଷ୍ଟରୁ ମନୁଷ୍ୟ ଯେ ଅମୂଲ୍ୟ ଶିକ୍ଷା ପାଏ ତାହା ସେ ସ୍ୱୀକାର କରି ଅଛନ୍ତି । ଲେଖକଙ୍କ ଭାଷାରେ "ଏଣୁ ଆପଦ ଆମ୍ଭର

ଉପକାରକ; ଏତେ ଉପକାରକ, ଏତେ ଅସ୍ଥିବାନ୍ଧ ଉପକାରକ ଆଉ ନାହିଁ । ମାତ୍ର ବିପଦରେ ପଡ଼ି ଅଧୀର ହେବା ବିବେକୀର ଧର୍ମ ନୁହେଁ । ଅନର୍ଥର ପ୍ରକୃତ କାରଣ ବୁଝି ସେ ସାନ୍ତ୍ୱନା ଲଭନ୍ତରେ, ନମ୍ର ହୋଇ ସାବଧାନରେ ଚଳେ ।"

ମନୁଷ୍ୟ ଅଜ୍ଞତା ଯୋଗୁ ଦୁଃଖ ପାଇଥାଏ । ସେଥିପାଇଁ ଲେଖକ ଲେଖିଛନ୍ତି—"ସରଳ ଅଜ୍ଞତା, ସଙ୍କୀର୍ଣ୍ଣମନସ୍କତା, ଅଥବା ଅପରିହାର୍ଯ୍ୟ ଭ୍ରମ, ଏହି ତିନି କାରଣର ଅନ୍ୟତରରୁ କୁସ୍ପାଜାତ ହେଉଥିବାର ଜଣାଯାଏ । କୁସ୍ପାକୁ ଅନ୍ୟାୟ ଉପଦ୍ରବ ନମଣି ଦୁର୍ଭାଗ୍ୟ ମଣିବାର ବିହିତ ଅଟେ ।" (ପୃ ୩୭୪)

ତା ପରେ ଲେଖକ ଦୁଃଖର ଅନ୍ୟତମ ହେତୁ ଉପେକ୍ଷା ଓ ହତାଦର ବିଷୟ ଆଲୋଚନା କରି "ଉପେକ୍ଷାର ପ୍ରକୃତ ହେତୁ ସ୍ମରଣ କଲେ ଉପେକ୍ଷାଜନିତ କ୍ଳେଶ ନିଶ୍ଚେ ଊଣା ହେବ" ବୋଲି ମତବ୍ୟକ୍ତ କରିଅଛନ୍ତି । ଅନ୍ୟାୟ ଲିପ୍‌ସା ସେହିପରି ଦୁଃଖର କାରଣ ବୋଲି ନିର୍ଦ୍ଧାରଣ କରି ଏହା ପରିତ୍ୟାଗ କରିବାକୁ ପରାମର୍ଶ ଦେଇ ଅଛନ୍ତି । ନିଜପ୍ରତି ଅନ୍ୟାୟ ଓ ଅନାଦର ହେଲେ ଲୋକେ ଦୁଃଖାନୁଭବ କରନ୍ତି । ମାତ୍ର ନ୍ୟାୟ ସମୟ ସାପେକ୍ଷ, ଶିଷ୍ଟତା ସାପେକ୍ଷ କହି ସେ ଧୈର୍ଯ୍ୟାବଲମ୍ବନ କରିବାକୁ ପରାମର୍ଶ ଦେଇ ଅଛନ୍ତି । ଲେଖକଙ୍କ ମତରେ "ବଡ଼ ବଡ଼ ଆପଦମାନଙ୍କରୁ ମନୁଷ୍ୟର ବିବେକ ବୁଦ୍ଧି ଜାଗ୍ରତ ହୁଏ । ମାତ୍ର ମନଃ କଷ୍ଟ ସର୍ବଦା ଭୋଗ କଲେ ଚିତ୍ତପ୍ରସାଦ ଅଭାବରୁ ବିବେକ ବୁଦ୍ଧି ଜାତ ହୋଇ ପାରେ ନାହିଁ । ଅଯଥା ଅସନ୍ତୋଷ ଓ ଅତୃପ୍ତି ମଧ୍ୟ ସେହିପରି ଅନେକଙ୍କର ଦୁଃଖର ହେତୁ ସ୍ୱରୂପ । ସଙ୍ଗୀତ ପ୍ରଭୃତି କଳା ସାନ ସାନ କଷ୍ଟ ଦୂର କରିବାକୁ ସମର୍ଥ, ମାତ୍ର ଦାରୁଣ ବିପଦରେ ବିବେକ ଓ ଧର୍ମହିଁ ଏକମାତ୍ର ଆଶ୍ରୟ ।"

ଏହାପରେ ଭାବେ ଲେଖକ ମନୁଷ୍ୟର ଦୁଃଖର ନାନାବିଧ କାରଣ ବର୍ଣ୍ଣନା କରିସାରି ମନୁଷ୍ୟ ଚରିତ୍ରର ତିନିଗୋଟି ପ୍ରଧାନ ଦୋଷ ବିଷୟରେ ଆଲୋଚନା କରିଅଛନ୍ତି । (ପୃ ୩୭୧ ପ୍ରଥମ ଅନୁଚ୍ଛେଦ— ଆମ୍ଭେମାନେ ଆପଣାକୁ ଯେତେ କରି ମଣ୍...ଠାରୁ) ପ୍ରଥମେ ସେ ମନୁଷ୍ୟର ପ୍ରଧାନ ଦୋଷ "ସୁଭଗମନ୍ୟତା" ବିଷୟରେ ଆଲୋଚନା କରି ଅଛନ୍ତି । ମନୁଷ୍ୟ ନିଜକୁ ଅଭ୍ରାନ୍ତ ଓ ଅନ୍ୟଠାରୁ ଶ୍ରେଷ୍ଠ, ମହତ୍ ବୋଲି ଭାବିବା ଯେ ଏକ ବିରାଟ ଭ୍ରମ ତାହା ସେ ବହୁ ଘରୋଇ ଉଦାହରଣ ଦେଇ ଦେଖାଇ ଅଛନ୍ତି । ଏହି ସମ୍ପର୍କରେ ସେ ସ୍ତ୍ରୀ, ଗାୟକ, ଧନିକ, ମୂର୍ଖ, ଲେଖକ, ଜାମାତା ପ୍ରଭୃତି ନାନା ଶ୍ରେଣୀର ଲୋକଙ୍କ ଶ୍ରେଷ୍ଠ ବୋଲି ଦେଖାଇ ହେବା ପ୍ରବୃତ୍ତି ବା "ସୁଭଗମନ୍ୟତା" (ସମ୍ଭବତଃ ଆଧୁନିକ ମନସ୍ତାତ୍ତ୍ୱିକ ପାରିଭାଷିକ ଶବ୍ଦ Superiority complex ଅର୍ଥରେ ଏହା ରାଧାନାଥ ବ୍ୟବହାର କରିଛନ୍ତି ) ବିଷୟ ବର୍ଣ୍ଣନା କରି ଅଛନ୍ତି ।

ତାପରେ ସେ ମନୁଷ୍ୟର ଅନ୍ୟତମ ଦୋଷ ଅପରିପକ୍ୱତାକୁ ନିର୍ଦ୍ଦେଶ କରି ଅଛନ୍ତି । ଲେଖକଙ୍କ ମତରେ ଏହା ଚାରି ପ୍ରକାର— ଶାରୀରିକ, ମାନସିକ, ନୈତିକ, ରୈତିକ । ଲେଖକ ଶାରୀରିକ ଅପରିପକ୍ୱତା ବିଷୟ ଅପ୍ରାସଙ୍ଗିକ ବୋଲି ମତ ପ୍ରଦାନ କରି ଶେଷୋକ୍ତ ତିନିଗୋଟି ଅପରିପକ୍ୱତା ବିଷୟ ଆଲୋଚନା କରି ଅଛନ୍ତି । ବହୁ ଘରୋଇ ଉଦାହରଣ ଦେଇ ବିଷୟଟିକୁ ପ୍ରାଞ୍ଜଳ ଓ ସୁଖବୋଧ କରିବା ସଙ୍ଗେ ସଙ୍ଗେ ବହୁଦର୍ଶିତା ବଢ଼ିଲେ ମନୁଷ୍ୟ ନିଜର ଅପରିପକ୍ୱତା ବୁଝି ଲଜ୍ଜିତ ହୁଏ ବୋଲି କହିଛନ୍ତି ।

ତୃତୀୟରେ ସେ ମନୁଷ୍ୟର ଶାରୀରିକ, ମାନସିକ ଓ ଅବସ୍ଥା-ଗତ ବିଭିନ୍ନ ଅସୁବିଧା ବା ପ୍ରତିବନ୍ଧକମାନଙ୍କୁ "ବୋଝ ବହିବା"

ପର୍ଯ୍ୟାୟଭୁକ୍ତ କରି ସେ ବିପର୍ଯ୍ୟରେ ବିସ୍ତୃତ ଆଲୋଚନା କରି ଅଛନ୍ତି । ସେହି ପ୍ରତିବନ୍ଧକମାନଙ୍କୁ ସେ ଆନ୍ତର ଓ ବାହ୍ୟ ଦୁଇ ଶ୍ରେଣୀରେ ବିଭକ୍ତ କରି ଅଛନ୍ତି । ସାଧାରଣତଃ ଲୋକମାନେ ଅନ୍ୟର ଏହି ଅକ୍ଷମତାକୁ ଦେଖି ଉପହାସ ବା ତାଚ୍ଛଲ୍ୟ କରିଥାନ୍ତି । ମାତ୍ର ଏହା ସର୍ବଦା ଅନୁଚିତ । ଅକାରଣ ଖିନ୍ନତା, ଗୃହକଳି, ଈର୍ଷା-ପରିପୂର୍ଣତା ପ୍ରଭୃତି ଆନ୍ତର ପ୍ରତିବନ୍ଧକଗୁଡ଼ିକ ଯଥାର୍ଥତଃ ଦୁରତି-କ୍ରମ୍ୟ । ତେଣୁ କବି ଏ ସବୁକୁ ସଯତ୍ନରେ ପରିହାର କରି, ମନକୁ ପ୍ରଶାନ୍ତ, ନିର୍ମଳ ଓ ସୁସଂଯତ କରି 'ବିବେକୀ' ହେବାଲାଗି ଉପଦେଶ ଦେଇ ଅଛନ୍ତି । ଲେଖକ ଏହି ଆଲୋଚନା ପ୍ରସଙ୍ଗରେ ଯଥାର୍ଥତଃ କହିଛନ୍ତି ଯେ—"ବାସ୍ତବ ଯେ ଲୋକ ଯେତେ ଦୁଷ୍ଟ ସେ ସେହି ପରିମାଣରେ ଦୟାର ଯୋଗ୍ୟ ଅଟେ" ( ପୃ ୩୯୭ ) । ଏଥିରୁ ଲେଖକଙ୍କର ଉଦାରତା, କବି-ସୁଲଭ ସ୍ବଗଭୀର ସମବେଦନା ସୂଚିତ ହୁଏ । ପରିଶେଷରେ ଲେଖକ, ଆଧୁନିକ ଯୁଗରେ ଜନ-ସାଧାରଣଙ୍କର ମାନସିକ ଅଶାନ୍ତି ବୃଦ୍ଧି ଲାଭ କରିଥିବା ଉପଲବ୍ଧି କରି ଏହି ଉଗ୍ରମନସ୍କତା, ଅପ୍ରଫୁଲ୍ଲତା ଆଧୁନିକ ଯୁଗର ଗୋଟିଏ ମହତ୍ ବିଡ଼ମ୍ବନା ବୋଲି ବର୍ଣ୍ଣନା କରି ଅଛନ୍ତି । ଏଣୁ ସମସ୍ତ ସମସ୍ୟାକୁ ସ୍ପଷ୍ଟ ଭାବରେ ଅବବୋଧ କରି ନିଜର ଅବସ୍ଥା ବିଷୟରେ ଅବହିତ ହୋଇ ଦୃଢ଼ ଓ ପ୍ରଫୁଲ୍ଲ ଭାବରେ ଜଗତରେ ବିଚରଣ କରିବା ହିଁ ପ୍ରକୃତ ବିବେକୀର ଗୁଣ । ବାସ୍ତବିକ୍ ଏହାହିଁ ଯୁଗେ ଯୁଗେ ମାନବର ଚିରନ୍ତନ ଆଦର୍ଶ ହୋଇ ଆସିଛି ।

ଏହାହିଁ ସଂକ୍ଷେପରେ ବିବେକୀ ପ୍ରବନ୍ଧର ଆଲୋଚ୍ୟ ବିଷୟ । ସ୍ଥୂଳତଃ ରଚନାଟି ଚିନ୍ତାଶୀଳ, ଭାବୋଦ୍ଦୀପକ ଓ ଉପଦେଶାତ୍ମକ । କ୍ଷୁଦ୍ର କ୍ଷୁଦ୍ର ସୁପରିଚିତ ଘଟଣା ଓ ପରିସ୍ଥିତି ବର୍ଣ୍ଣନା କରି ଲେଖକ

ଆପଣାର ବକ୍ତବ୍ୟକୁ ସୁସ୍ପଷ୍ଟ ଓ ପ୍ରାଣବନ୍ତ ଭାବେ ପାଠକମାନଙ୍କ ଆଗରେ ଉପସ୍ଥାପିତ କରାଇ ପାରିଅଛନ୍ତି । ଶବ୍ଦବିନ୍ୟାସରେ ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟ ସମ୍ପାଦନ କରି ରଚନାରେ ବହୁ ଉପମା ଓ ଅଲଂକାର ସନ୍ନିବେଶନ ଲେଖକଙ୍କ କବିପ୍ରତିଭାର ପରିଚାୟକ । ପ୍ରବନ୍ଧ କାବ୍ୟ-ଧର୍ମୀ ହେବା ଦୋଷାବହ । ମାତ୍ର ଏହାଯୋଗୁ ତାହାଙ୍କ ରଚନା ଦୋଷଦୁଷ୍ଟ ନ ହୋଇ ବରଂ ଶ୍ରୀସମ୍ପନ୍ନ ହୋଇ ପାରିଅଛି । ଉଦାହରଣ ସ୍ୱରୂପ କବିଙ୍କ ରଚନାରୁ କେତୋଟି ବାକ୍ୟ ଏଠାରେ ଉଦ୍ଧାର କଲେ ଅପ୍ରାସଙ୍ଗିକ ହେବନାହିଁ ।

"ଦୁର୍ଘଟନାରେ ମଧ୍ୟ ସେହି ବିବେକର ସାହାଯ୍ୟ ନିଅ । ଧୈର୍ଯ୍ୟଧରି ପ୍ରତୀକ୍ଷା କର, ଯାହା ସମୟରେ ଜାତ ହୋଇଅଛି, ସମୟରେ ତାହାର ଖଣ୍ଡନ ହେବ । କାଦୁଅ ଯେତେବେଳେ ଶୁଷ୍କ ହେବ, ଆପେ ଝଡ଼ିପଡ଼ିବ, ଶୁଷ୍କହେବା ଆଗେ ଝଡ଼ିପଡ଼ିବ ନାହିଁ ।" (ପୃ ୩୬୫) "ତୀକ୍ଷ୍ଣ, କର୍କଶ ବଜ୍ର-ଲେଖନ ହୃଦୟ-ଫଳକରେ ତତ୍ତ୍ୱ-ଗୁଡ଼ିକୁ ଲେଖିଦେଇଯାଏ । (ପୃ ୩୭୦) ବାସ୍ତବରେ ଅପ୍ରିୟ ସତ୍ୟ ଦଶମୂଳ ପାଚନ ପରି ଲଗେ । ଯେଉଁମାନଙ୍କୁ ମହୁପରି ଲଗେ ସେମାନେ ମହିରେ ନାହାନ୍ତି ।" (ପୃ ୩୭୧) ଦୁର୍ଭାଗ୍ୟର ଘାତ ଏହିକି, "ସେ ଅଳ୍ପ ଅନବଧାନ—ଲବ୍‌ଧ ଛିଦ୍ରଦେଇ ପୁରୁଷର ସୁଖ-କଳସରେ ପ୍ରବିଷ୍ଟ ହୁଏ, ପ୍ରବିଷ୍ଟ ହୋଇ ଫୋଟିଯାଇ ବିଷାକ୍ତ କରେ ।" (ପୃ ୩୭୭)

ତଥାପି ଲେଖକଙ୍କର ରଚନାଶୈଳୀରେ କେତେକ ତ୍ରୁଟି ପରିଲକ୍ଷିତ ହୁଏ । ୯୦ ବର୍ଷ ପୂର୍ବେ ଲିଖିତ ଲେଖକଙ୍କର ତଥା ଓଡ଼ିଆ ଗଦ୍ୟର ଏକ ପ୍ରାଥମିକ ରଚନାରେ କେତେକ ବୈଶିଷ୍ଟ୍ୟ ପରିଲକ୍ଷିତ ହେବା ଏକାନ୍ତ ସ୍ୱାଭାବିକ । ଆଧୁନିକ ଓଡ଼ିଆ

ଗଦ୍ୟ, ପ୍ରାୟ ଏକଶତ ବର୍ଷ ତଳର ଗଦ୍ୟଶୈଳୀଠାରୁ କେତେକ ପରିମାଣରେ ପରିବର୍ତ୍ତିତ ହୋଇଗଲାଣି । ଏପରିକି ରାଧାନାଥ ପରବର୍ତ୍ତୀ କାଳରେ ଲେଖିଥିବା ଗଦ୍ୟର ରୀତି 'ବିବେକୀ'ର ଗଦ୍ୟ-ଶୈଳୀ ଅପେକ୍ଷା ପରିମାର୍ଜିତ । ଏଣୁ ଓଡ଼ିଆ ପ୍ରବନ୍ଧ ରଚନାର ପ୍ରାଥମିକ ସ୍ତରରେ 'ବିବେକୀ'ର ରଚନାରୀତିରେ ତ୍ରୁଟି ପରିଲକ୍ଷିତ ହେବା ବିଚିତ୍ର ନୁହେଁ ।

ସ୍ଥାନେ ସ୍ଥାନେ ବିବେକୀର ବାକ୍ୟଗଠନ ରୀତିରେ ଇଂରାଜୀ ବାକ୍ୟଗଠନ ରୀତିର ପ୍ରଭାବ ପରିଲକ୍ଷିତ ହୁଏ । "ବାସ୍ତବରେ ଦୁଃଖ ବହୁଦର୍ଶିତାର ପରିମାପକ ଅଟଇ ।" (ପୃ ୩୬୭) ଏହିପରି ସମାପିକା କ୍ରିୟା ସ୍ଥଳରେ 'କରଇ', 'ନୁହଁଇ' ପ୍ରଭୃତିର ସେ ବହୁ ବ୍ୟବହାର କରିଅଛନ୍ତି । ବଙ୍ଗ ଭାଷାର ପ୍ରଭାବ ମଧ୍ୟ ତାହାଙ୍କ ରଚନାରେ ସ୍ଥାନେ ସ୍ଥାନେ ପରିଲକ୍ଷିତ ହୁଏ । ସେହିସବୁ ବିଚିତ୍ର ବାକ୍ୟଗଠନ ରୀତି ଶବ୍ଦ ପ୍ରୟୋଗରୁ କେତୋଟି ଏଠାରେ ଉଦାହରଣ ସ୍ୱରୂପ ପ୍ରଦାନ କରିବା ସମୀଚୀନ । କହିବା ନିଷ୍ପ୍ରୟୋଜନ ଯେ ଏହି ସବୁ ଆୟାସକୃତ ପ୍ରକାଶ ରୀତି ଯୋଗୁ ତାହାଙ୍କ ଗଦ୍ୟରଚନାର ସାବଲୀଳତା ସ୍ଥାନେ ସ୍ଥାନେ କ୍ଷୁଣ୍ଣ ହୋଇଅଛି ।

'ଆତ୍ମସମର୍ଥନ ନିମନ୍ତେ ବ୍ୟଗ୍ରହେବା ଭଲ ନୁହେଁ ।' ପୃ ୩୬୫
'ଏହିପରି ସାବଧାନ ହୋଇ ଚଳିବାର ବିଧେୟ ।' ପୃ ୩୬୪
'ପ୍ରତିବନ୍ଧକ ବୁଝି ତାହାର ପ୍ରଶଂସା କରିବାର ଉଚିତ ।'
ପୃ ୩୯୪
'ଅତ୍ୟୁକ୍ତି କରିବାର ଅପରିପକ୍ୱତାର ଚିହ୍ନ ଅଟେ ।'
ପୃ ୩୮୯

ହେବା, ଚଳିବା, କରିବା, ପରିବର୍ତ୍ତେ ରାଧାନାଥ ସର୍ବତ୍ର ହେବାର, ଚଳିବାର, କରିବାର ପ୍ରଭୃତି ବ୍ୟବହାର କରିଛନ୍ତି ।

'ଅନ୍ୟ' ବା 'ଆଉ' ପରିବର୍ତ୍ତେ ସେ ସର୍ବଦା ଆନ ଶବ୍ଦ ପ୍ରୟୋଗ କରିଥାନ୍ତି । ଆନ ଗୋଟିଏ ସ୍ତ୍ରୀଲୋକ ( ପୃ ୩୭୨ ), ଆନ-ଭାବର ସମ୍ପର୍କ ହୁଏ (ପୃ ୩୭୨) । 'ନିଶ୍ଚୟ' ଶବ୍ଦ ପରିବର୍ତ୍ତେ ସେ ସର୍ବତ୍ର ନିଷ୍ଠା ଶବ୍ଦ ବ୍ୟବହାର କରିଛନ୍ତି । ନିଷ୍ଠା ଜାଣିଥିବ (ପୃ୩୭୬) 'ଶେଷ' କରିଛୁ ସ୍ଥାନରେ 'ସାଙ୍ଗ' କରିଛୁ—ମୁଁ ମୁକ୍ତାବଳୀ ସାଙ୍ଗ କରିଛୁ (ପୃ ୩୭୨) ! ଯେପରି, ସେପରି, କପରି ପରିବର୍ତ୍ତେ ସେ ସର୍ବଦା ଯେମନ୍ତ, ତେମନ୍ତ, କେମନ୍ତ ଶବ୍ଦ ବ୍ୟବହାର କରି ଅଛନ୍ତି ।

ରାଗ ହୁଏ ବା କ୍ରୋଧ ଜାତ ହୁଏ ନ ଲେଖି ସେ 'ଚଳମାଡ଼େ' ବ୍ୟବହାର କରିଛନ୍ତି । "ଦସ୍ୟୁ ହେବା ତେଣିକି ଥାଉ ଆହୁରି ଚଳମାଡ଼େ"—ପୃ ୩୯୫ । 'କାରଣ' ପରିବର୍ତ୍ତେ ସେ ସର୍ବଦା 'ହେତୁକି' ଶବ୍ଦ ବ୍ୟବହାର କରିଅଛନ୍ତି; ଯଥା—'ହେତୁକି ଏପରି ଆଶା କେବେ ଫଳିବ ନାହିଁ'; (ପୃ ୩୭୫) ।

ଏତଦ୍ ସତ୍ତ୍ୱେ ଏହି ଭାବନାମୂଳକ ତଥା ଯୁକ୍ତିପ୍ରଧାନ ପ୍ରବନ୍ଧଟିର ସମୁଚ୍ଚ ଭାବଧାରା ଯେ ଯୁଗେ ଯୁଗେ ଓଡ଼ିଆ ପାଠକ-ମାନଙ୍କର ଆଦରଣୀୟ ଓ ବରଣୀୟ ହୋଇ ରହିବ ଏହା ଆଶା କରିବା ଏକାନ୍ତ ସ୍ୱାଭାବିକ । କବି ରାଧାନାଥ ବହୁ ତଥ୍ୟ ଓ ତତ୍ତ୍ୱର ଆଲୋଚନାରେ ଏପରି ଏକ ଭାବୁକତା ପ୍ରଦର୍ଶନ କରି ଅଛନ୍ତି, ଯାହା ଏକାନ୍ତଭାବେ ତାଙ୍କର ନିଜସ୍ୱ । କବି ରାଧାନାଥଙ୍କ ଉଦାରତା 'ବିବେକୀ'ର ସମସ୍ତ ଯୁକ୍ତି ଓ ବିଚାରର ଅନ୍ତରାଳରୁ ଆତ୍ମପ୍ରକାଶ କରି ରଚନାଟିକୁ ସରସ କରିପାରିଛି । ଐତିହାସିକ ମୂଲ୍ୟ ବ୍ୟତୀତ

ଏହି ସମସ୍ତ କାରଣରୁ 'ବିବେକୀ' ପ୍ରବନ୍ଧଟି ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ସ୍ୱତନ୍ତ୍ର ଆସନ ଦାବୀକରେ ।

ପ୍ରଥମେ ସମ୍ବାଦପତ୍ରମାନଙ୍କ ମାଧ୍ୟମରେ ଓଡ଼ିଆରେ ଗଦ୍ୟ ଲିଖିତ ହେବାର ଚାରି ପାଞ୍ଚ ବର୍ଷ ପରେ ରାଧାନାଥଙ୍କ ଦ୍ୱାରା ଏହି 'ବିବେକୀ' ରଚିତ ହୋଇ ପରବର୍ତ୍ତୀ ଉନ୍ନତ ଗଦ୍ୟ ସାହିତ୍ୟ ସୃଷ୍ଟିର ବଳିଷ୍ଠ ଭୂମିକା ପ୍ରସ୍ତୁତ କରିଅଛି—ଏହା କହିବା ବାହୁଲ୍ୟମାତ୍ର । *

---

* ଏହି ପ୍ରବନ୍ଧରେ ରାଧାନାଥ ଗ୍ରନ୍ଥାବଳୀ ୨ୟ ସଂସ୍କରଣର ପୃଷ୍ଠାଙ୍କ ବ୍ୟବହୃତ ।

# ପ୍ରଥମ ଓଡ଼ିଆ ନାଟ୍ୟକାର

## ( ଜଗନ୍ମୋହନ )

୧୮୭୭ ମସିହାରେ ଜଗନ୍ମୋହନ ଲାଲଙ୍କ 'ବାବାଜୀ ନାଟକ' କଟକ ପ୍ରିଣ୍ଟିଙ୍ଗକମ୍ପାନୀ ଯନ୍ତ୍ରାଳୟରୁ ମୁଦ୍ରିତ ହୋଇ ପ୍ରକାଶିତ ହୋଇଥିଲା । ଏହାର ୩ ବର୍ଷ ପରେ ୧୮୮୦ ମସିହାରେ ରାମଶଙ୍କର ରାୟ 'କାଞ୍ଚିକାବେରୀ' ନାଟକ ଲେଖିଥିଲେହେଁ ସେ ନିଜକୁ ପ୍ରଥମ ଓଡ଼ିଆ ନାଟ୍ୟକାର ଭାବେ ଅଭିହିତ କରିଅଛନ୍ତି । "ଓଡ଼ିଶାରେ ଆଗେ ନାଟକ ନଥିଲା । ଉଲ୍ଲିଖିତ ବାବୁ ଜଗନ୍ମୋହନ ଲାଲ ପ୍ରଥମେ ବାବାଜୀ ନାଟକ ପ୍ରକାଶ କରିଥିଲେ, ମାତ୍ର ତାହା ପ୍ରକୃତ ନାଟକ ନାମର ଯୋଗ୍ୟ ନୁହେଁ ବୋଲି ସେ ସମୟରେ ପ୍ରକାଶିତ ହୋଇଥିଲା । × × ×...ବଙ୍ଗଳା ଅଭିନୟ ଦେଖିଆସି ମନେକଲି ଓଡ଼ିଆରେ ନାଟକ ନାହିଁ ବୋଲି ସିନା ଉଦ୍ୟୋକ୍ତାମାନେ ବଙ୍ଗଳା ନାଟକର ଅଭିନୟ କଲେ । ଦିନାକେତେ ଅପେକ୍ଷା କଲି, ମାତ୍ର କେହି ଅଭିନୟୋପଯୋଗୀ ଓଡ଼ିଆ ନାଟକ ନ ଲେଖିବାରୁ ମୁଁ ତହିଁରେ ହାତ ଦେଲି ।"(୧) କାଞ୍ଚିକାବେରୀ ନାଟକର ପ୍ରସ୍ତାବନାରେ ମଧ୍ୟ ସୂତ୍ରଧାର ଓ ନଟର ଉକ୍ତି ପ୍ରତ୍ୟୁକ୍ତି ଛଳରେ ସେ କାଞ୍ଚିକାବେରୀକୁ ପ୍ରଥମ ନାଟକ ଭାବେ ଅଭିହିତ କରିଅଛନ୍ତି । ରାମଶଙ୍କରଙ୍କ ଭ୍ରାତା ଗୌରୀଶଙ୍କର ଓ ପୁତ୍ର ଗିରିଜାଶଙ୍କର ମଧ୍ୟ 'ବାବାଜୀ' ନାଟକକୁ ନାଟକ ଭାବେ ଗ୍ରହଣ ନ କରି 'କାଞ୍ଚିକାବେରୀ'କୁ ହିଁ ପ୍ରଥମ ଓଡ଼ିଆ

---

୧ । ରାମଶଙ୍କରଙ୍କ ଅଭିଭାଷଣ—ମୁକୁର ୯ମ ଭାଗ ୧୦ମ ସଂଖ୍ୟା ।

ନାଟକ ଭାବେ ଗ୍ରହଣ କରିଅଛନ୍ତି । (୨) ପରବର୍ତ୍ତୀ ଆଲୋଚକମାନେ ଯୋଗୀଶଙ୍କର ଓ ଗିରିଜାଶଙ୍କରଙ୍କ ମତାନୁଗାମୀ ହୋଇ ଯେପରି ପ୍ରମାଦ ସୃଷ୍ଟି କରିଛନ୍ତି ତାହା ଅଧ୍ୟାପକ ବେଣୁଧର ରାଉତ 'ପ୍ରଥମ ଓଡ଼ିଆ ନାଟକ' ପ୍ରବନ୍ଧରେ ଦର୍ଶାଇଅଛନ୍ତି । (୩)

କେହିକେହି ଆଲୋଚକ ୧୮୬୮ ମସିହାରେ କଟକ ପ୍ରିଣ୍ଟିଂ କମ୍ପାନୀ ପକ୍ଷରୁ ପ୍ରକାଶିତ ରଘୁନାଥ ପରିଚ୍ଛାଙ୍କ ରଚିତ 'ଗୋପୀନାଥ ବଲ୍ଲଭ'ନାଟକକୁ ପ୍ରଥମ ଓଡ଼ିଆ ନାଟକ ଭାବେ ଗ୍ରହଣ କରିଥାନ୍ତି ।(୪) ମାତ୍ର ଏହା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ଗୋପୀନାଥ ବଲ୍ଲଭ ନାଟକଟି ମୁଖ୍ୟତଃ ରାଧାକୃଷ୍ଣ ଲୀଳାତ୍ମକ ଗୀତନାଟ୍ୟ ବା ଯାତ୍ରାଜାତୀୟ ରଚନା । ଅଳ୍ପ କେତେକ ସ୍ଥାନରେ ଏଥିରେ ସଂସ୍କୃତ ଶବ୍ଦାଡ଼ମ୍ବର ପୂର୍ଣ୍ଣ ଗଦ୍ୟ ସନ୍ନିବେଶିତ ହୋଇଥିଲେ ହେଁ ଏହା ମୁଖ୍ୟତଃ ଗୁଡ଼ିଏ ଚୌପଦୀର ସମାହାର ମାତ୍ର । ଏଣୁ ଏହା ପ୍ରଥମ ଆଧୁନିକ ନାଟକ ଶ୍ରେଣୀର ହେବା ପରିବର୍ତ୍ତେ ପ୍ରାଚୀନ ଧାରାରେ ରଚିତ ଗୀତନାଟ୍ୟ ଭାବେ ହିଁ ଗଣନୀୟ । ଗୋପୀନାଥବଲ୍ଲଭ ନାଟକରେ କବିଙ୍କ ସ୍ୱରଚିତ ରଚନା ବ୍ୟତୀତ କବିସୂର୍ଯ୍ୟ, ଗୋପାଳକୃଷ୍ଣ, ପଦ୍ମନାଭ ପ୍ରଭୃତି ବହୁ କବିଙ୍କ ସଂଗୀତାବଳୀ ମଧ୍ୟ ସଂଯୋଜିତ ହୋଇଅଛି ।

ବସ୍ତୁତଃ 'ବାବାଜୀ'ହିଁ ପ୍ରଥମ ଓଡ଼ିଆ ନାଟକ ଓ ଏହାର ରଚୟିତା ଜଗନ୍ମୋହନ ଲାଲା ପ୍ରଥମ ନାଟ୍ୟକାର ଭାବେ ଓଡ଼ିଆ

୨ । ଓଡ଼ିଆ ନାଟ୍ୟକଳା—୨ୟ ପରିଚ୍ଛେଦ—'ଓଡ଼ିଆ ନାଟକର ପୂର୍ବାବସ୍ଥା' ପୃ ୩୪

୩ । ଝଙ୍କାର ୧୧ଶ ବର୍ଷ ୧ମ ସଂଖ୍ୟା ।

୪ । ଗୋପୀନାଥବଲ୍ଲଭ ନାଟକ ମୁଖବନ୍ଧ—ପ୍ରକାଶକ ଓଡ଼ିଶା ସାହିତ୍ୟ ଏକାଡେମୀ ।

ସାହିତ୍ୟରେ ଚିରସ୍ମରଣୀୟ ହୋଇ ରହିବେ । ଉତ୍କଳର ତତ୍କାଳୀନ ସାହିତ୍ୟିକ ପରିବେଶରେ ସେ କାହିଁକି ଓ କିପରି ଯେ ନାଟକ ରଚନା ପ୍ରତି ଆକୃଷ୍ଟ ହେଲେ ତାହା ଅନୁମାନ କରିହୁଏ ନାହିଁ । ତାହାଙ୍କ ସାହିତ୍ୟସାଧନାର ପ୍ରଥମୋଦ୍ୟମ ଖଣ୍ଡିଏ କାବ୍ୟ-'ଭ୍ରମ-ଭଞ୍ଜନ' । ୧୮୬୮ ମସିହାରେ ଏହା କଟକ ପ୍ରିଣ୍ଟିଂ କମ୍ପାନୀ ପକ୍ଷରୁ ପ୍ରକାଶିତ ହୋଇଥିଲା ଓ ପରେ ବହୁବର୍ଷ ପାଠ୍ୟ-ପୁସ୍ତକ ଭାବେ ପ୍ରଚଳିତଥିଲା । ଏହି କାବ୍ୟଟିର କଥାବସ୍ତୁ ଲେଖକଙ୍କର ସମ୍ପୂର୍ଣ୍ଣ ମୌଳିକ ନୁହେଁ । ଇଂରାଜୀ କବି Parnelଙ୍କ The Hermitର ବିଷୟବସ୍ତୁ ଅନୁସରଣରେ ଲେଖକ ଏହାର କଥାବସ୍ତୁ ପରିକଳ୍ପନା କରିଅଛନ୍ତି । ପ୍ରାଚୀନ ଓଡ଼ିଆ ବୃତ୍ତରେ ରଚିତ ବାଉନ ସର୍ଗ ନିବଦ୍ଧ ଏହି କାବ୍ୟଟି ଏବେ ମଧ୍ୟ ସରସ ଓ ସୁଖପାଠ୍ୟ ମନେହୁଏ । ଜଗନ୍ମୋହନଙ୍କର ପଦ୍ୟକାବ୍ୟ ରଚନାରେ ଯେ ଯଥେଷ୍ଟ ପ୍ରବୀଣତା ଥିଲା କହିବା ଅନାବଶ୍ୟକ ।

ମାତ୍ର ନାଟକରଚନା ପ୍ରତି ଲେଖକଙ୍କର ଥିଲା ଅଧିକ ମାନସିକ ପ୍ରବଣତା । ଏଣୁ ୧୮୮୭ ମସିହାରେ ସେ ପୁନଶ୍ଚ 'ସତୀ' ନାମରେ ଆଉ ଗୋଟିଏ ନାଟକ ରଚନା କରିଥିଲେ । ସେ ଯୁଗରେ ବାସ୍ତବତାକୁ ଆଦର୍ଶ ଭାବେ ଗ୍ରହଣ କରିବା ସାହିତ୍ୟର ଆଭିମୁଖ୍ୟ ନଥିଲା । ପୌରାଣିକ, କାଳ୍ପନିକ ଅଥବା ଐତିହାସିକ ବିଷୟବସ୍ତୁକୁହିଁ ଉପଜୀବ୍ୟ କରି ଲେଖକମାନେ ମୁଖ୍ୟତଃ କାବ୍ୟ ରଚନା କରୁଥିଲେ । ଊନବିଂଶ ଶତକର ଶେଷ ଦଶକରେ ଫକୀରମୋହନ ସର୍ବାଦୌ କଥା-ସାହିତ୍ୟ ଓ ଗୀତି-କବିତା ମାଧ୍ୟମରେ ବାସ୍ତବତା ଓ ସମାଜ ସଚେତନତାର ଧାରା ପ୍ରବର୍ତ୍ତନ କରିଥିଲେ । ମାତ୍ର ନାଟକ କ୍ଷେତ୍ରରେ ଏହି ବାସ୍ତବ ବାଦିତା, ସମାଜ ସଚେତନ ସଂସ୍କାରାଭିମୁଖୀ ମନୋବୃତ୍ତିର ପରିଚୟ ଆମ୍ଭେମାନେ ସର୍ବାଦୌ ଲକ୍ଷ୍ୟ କରୁ ଏହି

ପ୍ରତିଭାଶାଳୀ ଲେଖକଙ୍କର ନାଟକ ଦୁଇଟିରେ । କଟକ ଜିଲ୍ଲା ମାନାଙ୍କା ନିବାସୀ ଜଗନ୍ମୋହନ ଡେପୁଟି କଲେକ୍ଟର ଥିଲେ । ଗ୍ରାମ୍ୟ ଜୀବନ ସହିତ ତାଙ୍କର ଅଧିକ ପ୍ରତ୍ୟକ୍ଷ ଓ ଘନିଷ୍ଠ ସମ୍ପର୍କ ଥିବା ସ୍ୱାଭାବିକ । ଆର୍ଥିକ ଅସ୍ୱଚ୍ଛଳତା ତାଙ୍କର ନଥିଲା । କେତେ ବର୍ଷ ପାଇଁ ସେ କଟକ ପ୍ରିଣ୍ଟିଂ କମ୍ପାନୀର ଡିରେକ୍ଟର ମଧ୍ୟ ହୋଇଥିଲେ । ମାତ୍ର କେଉଁ ପ୍ରତିକୂଳ ପରିବେଶ ଯୋଗୁ ସେ ଏହି ପ୍ରତିଭାଶାଳୀ ଲେଖକଙ୍କ ଲେଖନୀ ହଠାତ୍ ନୀରବ ହୋଇଗଲା ତାର ବିବରଣୀ ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ଅଜ୍ଞାତ ରହିଛି ।

ମାତ୍ର ନିରବଚ୍ଛିନ୍ନ ଭାବେ ସାହିତ୍ୟ ସୃଷ୍ଟି କରିଥିଲେ ତାହାଙ୍କ ମୂଲ୍ୟବାନ ଦାନରେ ଯେ ଓଡ଼ିଆ ସାହିତ୍ୟ ଅଧିକ ସମୃଦ୍ଧ ହୋଇଥାନ୍ତା ଏହା ସୁନିଶ୍ଚିତ । ସୃଷ୍ଟିଶୀଳତାର ନିକଷରେ ବିଚାର କଲେ ଜଗନ୍ମୋହନଙ୍କର ପ୍ରତିଭା ତାହାଙ୍କ ସମକାଳୀନ ଅନ୍ୟାନ୍ୟ ଶ୍ରେଷ୍ଠ ଲେଖକଙ୍କଠାରୁ କୌଣସି ଗୁଣରେ ତ ନିକୃଷ୍ଟ ନଥିଲା । ବରଂ ବହୁ ଲେଖକଙ୍କଠାରୁ ଥିଲା ଊର୍ଦ୍ଧ୍ୱରେ । ତାହାଙ୍କ ରଚନାବଳୀ-ମାନଙ୍କରୁ ପାଠକ ତାଙ୍କର ଯେଉଁ ମୋହମୁକ୍ତ ସ୍ୱଚ୍ଛମନ, ସଂସ୍କାର-ଲିପ୍‌ସା, ଉନ୍ନତ ରସବୋଧ ଓ ଗଭୀର ଜୀବନ ଉପଲବ୍ଧିର ପରିଚୟ ପାଇଥାଏ, ତାହା ସେ ଯୁଗରେ ବିରଳ କୁହାଯାଇପାରେ ।

'ବାବାଜୀ' ପ୍ରକାଶିତ ହେବାପରେ ଓଡ଼ିଶାର ଦୁଇଟି ପ୍ରଧାନ ସମ୍ବାଦ ପତ୍ର ମଧ୍ୟରୁ ଉତ୍କଳ ଦୀପିକା 'ବାବାଜୀ' ନାଟକ ବିଷୟରେ ଆଲୋଚନା କରିବାକୁ ଯାଇ "ଇଂରାଜୀ ଓ ସଂସ୍କୃତ ନାଟକର ଲକ୍ଷଣା-ନୁସାରେ ଏହାକୁ ପ୍ରକୃତ ନାଟକ ବୋଲିବାକୁ ମନ ବଳୁନାହିଁ ।" * ଲେଖିଥିଲେହେଁ ବାଲେଶ୍ୱର ସମ୍ବାଦ ବାହିକାରେ ହିଁ ବାବାଜୀ

* ଉତ୍କଳ ଦୀପିକା—୨୦-୧୦-୭୭

ନାଟକ ସମ୍ପର୍କରେ ଅନୁକୂଳ ମତ ପ୍ରକାଶ ପାଇଥିଲା । ସେତେବେଳେ ସମ୍ବାଦ ବାହିକାର ସୁଦକ୍ଷ ସଂପାଦକ ଥିଲେ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । ସେ ଲେଖିଥିଲେ "ଓଡ଼ିଶାରେ ଓଡ଼ିଆ ଭାଷାରେ ନାଟକ ନାମ ଶୁଣିବାକୁ ଆଶ୍ଚର୍ଯ୍ୟ । ଏଥିପୂର୍ବେ ଗୋପୀନାଥ ବଲ୍ଲଭ ନାମକ ଖଣ୍ଡିଏ ନାଟକ କଟକ ପ୍ରିଣ୍ଟିଂ କମ୍ପାନୀ ଯନ୍ତ୍ରାଳୟରେ ମୁଦ୍ରିତ ହୋଇଥିଲା । ଆମ୍ଭେମାନେ ପ୍ରଥମେ ତାହା ପାଇ ଅତ୍ୟନ୍ତ ଆନନ୍ଦିତ ହେଲୁ । ତାହାର ସ୍ୱାଦୁ ପରୀକ୍ଷା କରିବା ନିମନ୍ତେ ଇଚ୍ଛା ବଳିଲା, ମାତ୍ର ତାହା 'ନା-ଟକ, ନା-ମିଷ୍ଟ', କିଛି ଜଣାଗଲା ନାହିଁ । ଆମ୍ଭମାନଙ୍କ ମାତୃଭାଷାରେ ନାଟକ ଲେଖିବାର ସମୟ ଉପସ୍ଥିତ ହୋଇଅଛି କି ନା ତାହା ଅମ୍ଭେମାନେ କହି ନପାରୁ । ତଥାପି ଯେବେ ଓଡ଼ିଆ ଭାଷାରେ ନାଟକ ଲେଖିବାକୁ କାହାରି ଇଚ୍ଛା ହୁଏ, ତେବେ ଓଡ଼ିଶାର ସମସ୍ତ ଅଞ୍ଚଳର ଗାର୍ହସ୍ଥ୍ୟ ଭାଷା ମିଶ୍ରିତ କରି ତାହା ସମ୍ପାଦନ କଲେ କଥଞ୍ଚିତ ନାଟକ ନାମ ବହନ କରିପାରିବ । ଏମନ୍ତ ସ୍ଥଳେ 'ବାବାଜୀ ନାଟକ' ପ୍ରଣେତା ବାବୁ ଜଗନ୍ମୋହନ ଲାଲ୍ ସାହସ ଉପରେ ନିର୍ଭର କରି ଖଣ୍ଡିଏ ନାଟକ ପ୍ରଣୟନ କରି ଅଛନ୍ତି । ଅତ୍ୟନ୍ତ ପ୍ରଶଂସାର ବିଷୟ ଜଗନ୍ମୋହନ ବାବୁ ପ୍ରଥମେ ଆମ୍ଭମାନଙ୍କ ଆଶାରୁ ଅଧିକ ଏହି ନାଟକ ଖଣ୍ଡିକ ପ୍ରଦାନ କଲେ । ଏହି ନିମନ୍ତେ ଆମ୍ଭେମାନେ ତାହାଙ୍କୁ ଧନ୍ୟବାଦ ଦେଉ ଅଛୁ ଯେ ଗୃହସ୍ଥର ବାଡ଼ରେ କୌଣସି ନୂତନ ଫଳ ଫଳିଲେ, ସେ ଯେମନ୍ତ ଆଗେ ତାହା ସ୍ପର୍ଶ ନ କରି ଆପଣା ଇଷ୍ଟଦେବତାଙ୍କୁ ଅର୍ପଣ କରେ ସେହିରୂପେ ଆମ୍ଭେମାନେ ପ୍ରଥମେ ପ୍ରାପ୍ତ ଉପହାର 'ବାବାଜୀ ନାଟକ'କୁ ନୂଆ ଫଳ ସ୍ୱରୂପ ବାବାଜୀ ନାଟକ ପାଠକଙ୍କ ହସ୍ତରେ ସମର୍ପଣ କଲୁ ।" (୧)

(୧) ବାଲେଶ୍ୱର ସମ୍ବାଦ-ବାହିକା ୧୦ମ ଭାଗ ୮ମ ସଂଖ୍ୟା—
୧-୧୨-୧୮୭୭

'ବାବାଜୀ ନାଟକ'ର କଥାବସ୍ତୁ ଅତ୍ୟନ୍ତ ସଂକ୍ଷିପ୍ତ । ଜଣେ ଆଦର୍ଶ ବାବାଜୀଙ୍କର ଚରିତ୍ର ଏଥିରେ ବର୍ଣ୍ଣିତ ହୋଇଅଛି । ତାଙ୍କର ନାମ ପୁସ୍ତକରେ ଉଲ୍ଲିଖିତ ନ ହୋଇ ସର୍ବତ୍ର ସେ ବାବାଜୀ, ମହାରାଜ ଭାବରେ ହିଁ ଉଲ୍ଲିଖିତ ବା ସମ୍ବୋଧିତ ହୋଇଛନ୍ତି । ବାବାଜୀ ଏକଦା ଭିକ୍ଷାଟନରେ ବହିର୍ଗତ ହୋଇ ପ୍ରଥମେ ଜଣେ ମଦ୍ୟପ ଗୃହସ୍ଥ ଓ ତତ୍ପରେ ଏକ ବ୍ୟଭିଚାରଗ୍ରସ୍ତ ମଠରେ ଅପଦସ୍ତ ଓ ପ୍ରବଞ୍ଚିତ ହୋଇଛନ୍ତି । ଅବଶେଷରେ ସେ ଏକ ଉପବନରେ ଉପବିଷ୍ଟ ହୋଇଥିବା ସମୟରେ କପରି ତାଙ୍କ ପାଖକୁ ଆସିଥିବା ଲୋକମାନଙ୍କୁ ଉପଦେଶ ଦେଇଛନ୍ତି ଓ କେତେକ ପ୍ରବଞ୍ଚନାକାରୀଙ୍କର ହୃଦୟ ପରିବର୍ତ୍ତନ ହୋଇଛି ତାହାହିଁ ଏଥିରେ ବର୍ଣ୍ଣିତ ।

ନାଟକର ମୁଖ୍ୟ ଚରିତ୍ର ବାବାଜୀର ଅତୀତ ବା ଭବିଷ୍ୟତ ଜୀବନ ଏଥିରେ ଅନୁଦ୍ଘାଟିତ—କେବଳ ସଂଳାପମାନଙ୍କରୁ ତାଙ୍କର ଧର୍ମ ମତବାଦ, ଚରିତ୍ରବତ୍ତା, ନିଷ୍ଠାପରତା, ସଂସ୍କାରଲିପସା, ଧୈର୍ଯ୍ୟ, ସହିଷ୍ଣୁତା ଓ ବିଦବତ୍ତା ପ୍ରଭୃତି ବହୁ ସଦଗୁଣାବଳୀର ପରିଚୟ ମିଳିଥାଏ । ମାତ୍ର ନାଟକଟିରେ କୌଣସି ଚରିତ୍ରର ପୂର୍ଣ୍ଣାଙ୍ଗ ବିକାଶ ପରିଲକ୍ଷିତ ହୁଏନାହିଁ । ନାଟକୀୟ ପ୍ରବଳ ଦ୍ୱନ୍ଦ୍ୱ, ସଂଘର୍ଷ ବା ଉତ୍କଣ୍ଠାର ସନ୍ଧାନ ଏଥିରେ ମିଳେନାହିଁ । କଥାବସ୍ତୁ ଉପସ୍ଥାପନାରେ ଦ୍ରୁତ ଗତିଶୀଳତା ମଧ୍ୟ ପରିଲକ୍ଷିତ ହୁଏନାହିଁ । ବାବାଜୀ ଜୀବନର ଗୋଟିଏ ମାତ୍ର ଘଟଣା ଏଥିରେ ମୁଖ୍ୟତଃ ବର୍ଣ୍ଣିତ ହୋଇଥିବାରୁ ଏହାକୁ ଏକ ଦୀର୍ଘ ଏକାଙ୍କିକା ଭାବେ ଗ୍ରହଣ କରିବା ବରଂ ସମୀଚୀନ । ମାତ୍ର ଏହାକୁ ଗୀତିନାଟ୍ୟ, ଫାର୍ସ ବା ସ୍କେଚ କହି ଏହାର ନାଟ୍ୟ-ମୂଲ୍ୟକୁ ଅସ୍ୱୀକାର କରିବାକୁ ଯିବା ସମ୍ପୂର୍ଣ୍ଣ ଭ୍ରମାତ୍ମକ ଓ ଲେଖକଙ୍କ ପ୍ରତି ଘୋର ଅବିଚାର ମାତ୍ର । ସେହିପରି ଏହି ପୁସ୍ତକକୁ ନ ପଢ଼ି, ନ ଦେଖି ଏଥିରେ ଯାତ୍ରା ଭଳି ବହୁ ସଙ୍ଗୀତଓ

ଲଗ୍ନ ହାସ୍ୟରସବହୁଳ ପରିମାଣରେ ଅଛି କହିବା ମଧ୍ୟ ଚରମ ମୂର୍ଖତା ମାତ୍ର । (୧)

ପ୍ରକୃତରେ ନାଟକଟିରେ ପ୍ରାସଙ୍ଗିକ ଭାବେ ସର୍ବମୋଟ ମାତ୍ର ଦୁଇଗୋଟି ଅତି କ୍ଷୁଦ୍ର ସଙ୍ଗୀତ ସଂଯୋଜିତ ହୋଇଅଛି । ଏହା ଏକ ସାମାଜିକ ଶିକ୍ଷାପ୍ରଦ ନାଟକ । ଭଣ୍ଡ ବାବାଜୀମାନଙ୍କର ଅଲୌକିକ ଶକ୍ତି ଓ ଗୁଣି ଗାରେଡ଼ି, ଭୌତିକ କାର୍ଯ୍ୟାବଳୀର ଅଳୀକତା ଅବାସ୍ତବତା ପ୍ରତିପାଦନ, ମଦ୍ୟପାନର କୁପରିଣାମ ଚିତ୍ରଣ ଲାଗି ଏହି ନାଟକଟି ରଚିତ ହେଲା ଭଳି ମନେହୁଏ ।

ସମସାମୟିକ ସମାଜ ଚିତ୍ରରେ ନାଟକଟି ପରିପୂର୍ଣ୍ଣ । ସେହି ସମୟରେ ନବଶିକ୍ଷାପ୍ରାପ୍ତ ଯୁବକମାନେ କିପରି ମଦ୍ୟପାନରେ ପ୍ରମତ୍ତ ହେଉଥିଲେ ସେଥିପାଇଁ ପ୍ରମାଣ ବା ଉଦ୍ଧୃତି ଅନାବଶ୍ୟକ । ଅଧିକାଂଶ ମଠ ବହୁ ଦିନୁ ବ୍ୟଭିଚାରର ପୀଠ ହୋଇ ଆସିଛି— ଲୋକମାନଙ୍କର ଧର୍ମ ବିଶ୍ୱାସର ସୁଯୋଗ ନେଇ ବହୁ ପ୍ରତାରକ ସନ୍ନ୍ୟାସୀ ଏ ଦେଶର ବହୁ ସରଳ, ଅଜ୍ଞ ଜନସାଧାରଣଙ୍କୁ ପ୍ରତାରିତ କରି ଆସି ଅଛନ୍ତି । ଏଣୁ ଏପରି ବାସ୍ତବ ବିଷୟକୁ ଉପଜୀବ୍ୟ କରି ରଚିତ ନାଟକର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ ।

୧୮୮୬ ମସିହାରେ ଜଗନ୍ମୋହନଙ୍କ ସର୍ବଶେଷ ନାଟକ 'ସତୀ' ପ୍ରକାଶିତ ହୋଇଥିଲା । ଏହାକୁ ଉପହାର ସ୍ୱରୂପ ପାଇ ୧୮୮୭ ମସିହା ଜାନୁଆରୀ ୬ ତାରିଖରେ ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ଅନୁକୂଳ ଅଭିମତ ପ୍ରକାଶ କରି ଲେଖିଥିଲେ—'ତୁମେ ନାଟକ

(୧) Modern Oriya Literature by P. R. Sen ଓ Oriya Literature by J. B. Mohanty (Chapter XIX) ଦ୍ରଷ୍ଟବ୍ୟ

ଲେଖାର ଉନ୍ନତି ହେଉଥିବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ଅଛୁ ।' ରାମଶଙ୍କରଙ୍କ 'କାଞ୍ଚିକାବେରୀ' ପ୍ରକାଶିତ ହେବାର ଛଅବର୍ଷ ପରେ ଏହି ନାଟକଟି ଲିଖିତ ହୋଇଥିଲେହେଁ, ବିଷୟବସ୍ତୁ ବା ରଚନାରୀତି-କ୍ଷେତ୍ରରେ ଜଗନ୍ମୋହନ ରାମଶଙ୍କରଙ୍କ ରୀତି ଅନୁକରଣ କରିବା ଦୂରେ ଥାଉ, ଆପଣାର ବୈଶିଷ୍ଟ୍ୟ ଓ ମୌଳିକତା ସମ୍ପୂର୍ଣ୍ଣଭାବେ ରକ୍ଷା କରି ଅଛନ୍ତି ।

ଓଡ଼ିଶାର ସେତେବେଳର ଏକ ସାମାଜିକ ବାସ୍ତବ ଓ ସମସ୍ୟା-ମୂଳକ ବିଷୟବସ୍ତୁକୁ ନେଇ ଏହି 'ସତୀ' ଉପନ୍ୟାସଟି ରଚିତ । ଏହି ନାଟକରେ ଜନୈକ ରାଜା ସାଧୁ ଚମ୍ପତିରିଙ୍କ ରୂପବତୀ ସ୍ତ୍ରୀ ଲାବଣ୍ୟଙ୍କୁ ପାଇବା ଲାଗି ପାର୍ଶ୍ୱଚରମାନଙ୍କ କୁପରାମର୍ଶରେ କପଟରେ ବହୁ ଅର୍ଥ ବ୍ୟୟ କରିବା ସତ୍ତ୍ୱେ ଅପମାନିତ ଓ ଅପଦସ୍ଥ ହୋଇଛନ୍ତି ତାହାହିଁ ଉତ୍ତମ ରୂପେ ଚିତ୍ରିତ ହୋଇଅଛି । ଏହାର ଭାଷା ମଧ୍ୟ ପୂର୍ବୋକ୍ତ ନାଟକ ଭଳି ଅକୃତ୍ରିମ ସରଳ ଓ ସ୍ୱାଭାବିକ । ଗଡ଼ଜାତ ଶାସନକାଳରେ ବହୁ ଦେବ ପ୍ରତିମ ରାଜ ଚରିତ୍ର ସହିତ ବହୁ ଦୁଶ୍ଚରିତ୍ର, ନାରୀଧର୍ଷଣକାରୀ ପ୍ରଜାପୀଡ଼କ ରାଜ ଚରିତ୍ର ବିଷୟ ମଧ୍ୟ ଆମେ ଜାଣିବାକୁ ପାଉଥାଉ । 'ସତୀ' ନାଟକରେ ଏହିପରି ଏକ ରାଜ ଚରିତ୍ରର ଦୋଷ ତ୍ରୁଟି ପ୍ରଦର୍ଶନ କରି ଲେଖକ ଆପଣାର ଅସୀମ ସାହସିକତାର ପରିଚୟ ଦେଇ ଅଛନ୍ତି । ସେ ଯୁଗରେ ରାଜ ଚରିତ୍ରର କଳଙ୍କ କାଳିମାକୁ ସତ୍ୟ ରୂପରେ ପ୍ରକଟନ କରିବା ଯେ ଏକ ଦୁଃସାହସିକତା ଏହା କହିବା ବାହୁଲ୍ୟ ମାତ୍ର ।

'ସତୀ' ନାଟକ ପ୍ରସଙ୍ଗରେ ଆଲୋଚନା କରିବାକୁ ଯାଇ ଗୋବିନ୍ଦଚନ୍ଦ୍ର ଯଥାର୍ଥତଃ ଲେଖିଥିଲେ— *

---

* ବାଲେଶ୍ୱର ସମ୍ବାଦ ବାହିକା—୨୦ଶ ଭାଗ ୧୩ଶ ସଂଖ୍ୟା (୩୧ ମାର୍ଚ୍ଚ ୧୮୮୭)

"ଅନେକ ଦିନୁ ଆମ୍ଭେମାନେ ଗଡ଼ଜାଂଖମାନଙ୍କୁ କୌଣସି କୌଣସି ଅସଭ୍ୟ ଓ ମୂର୍ଖ ବଜାମାନଙ୍କ ସମ୍ବନ୍ଧରେ ଏହିପରି ଜନରବ ଶୁଣି ଆସୁଅଛୁ; ମାତ୍ର ତାହା ନିବାରଣର ଅପର କୌଣସି ଉପାୟ ନ ଦେଖି ଲଲା ସାହେବ ଯେ ନାଟକ ପ୍ରଣୟନ ଛଳରେ ସେହି କୁଅଭ୍ୟାସମାନ ନିବାରଣର ବାଟ ଫିଟାଇଲେ ଏଥି ସକାଶେ ତାଙ୍କୁ ଆମ୍ଭେମାନେ ଧନ୍ୟବାଦ ପ୍ରଦାନ କରୁଅଛୁଁ । ଅସଭ୍ୟ ନରାଧମ, ସ୍ୱେଚ୍ଛାଚାରୀ ରଜା ଏହି ନାଟକ ପାଠକଲେ ଆପଣା ମୂର୍ଖତା ଓ କୁରୁଚିର ଉତ୍ତମ ପ୍ରତିବିମ୍ବ ପାଇ ପାରିବେ । ବର୍ତ୍ତମାନ ଊନବିଂଶ ଶତାବ୍ଦୀ; ଏହି ସମୟରେ ଚତୁର୍ଦ୍ଦିଗରେ ସଭ୍ୟତାର ସୂର୍ଯ୍ୟ ଉଦୟ ହୋଇଛନ୍ତି । ମାତ୍ର କି ଦୁଃଖ ଓ ପରିତାପର ବିଷୟ ! ବୃହତ୍ ଉତ୍କଳ ଖଣ୍ଡ ଗଡ଼ଜାତର କୌଣସି କୌଣସି ରଜା ପର୍ବବତ ପାଶବ ପ୍ରବୃତ୍ତିର ଅଧୀନ ହୋଇ ଆପଣାକୁ ନରକର କୀଟଠାରୁ ଅଧିକ ଦୂରରେ ପକାଉ ଅଛନ୍ତି !!"

ଏହାପରେ ନାଟକର ଚରିତ୍ର ଚିତ୍ରଣ ଅନ୍ୟାନ୍ୟ ବିଷୟର ଆଲୋଚନା ପ୍ରସଙ୍ଗରେ ଯାହା ଉକ୍ତ ହୋଇଅଛି, ତାହା ପ୍ରଣିଧାନ ଯୋଗ୍ୟ ।

"ଲାବଣ୍ୟ ଆପଣା ସତୀତ୍ୱ ରକ୍ଷା କରିବାରେ ଯେତେଦୂର ଚତୁରତା ଦେଖାଇଥିଲା ଓ ପଦ୍ମ କୁଟୁଣୀକୁ ଯେପରି ହଟହଟାରେ ପକାଇଥିଲା ସେଥିରେ ମଧ୍ୟ ସୁନ୍ଦର ରୂପେ ଚିତ୍ରିତ କରାଯାଇଅଛି । ପୋଲିସ କି ରୂପେ ଅର୍ଥର ବଶ ହୋଇ ନିର୍ଦ୍ଦୋଷୀଠାରେ ଦୋଷ ଦେଇ ମୋକଦ୍ଦମା ସଜାଡ଼ି କରନ୍ତି ସେଥିରେ ଚିତ୍ର ଦିଆଯାଇଅଛି । ଲାଞ୍ଚ ଖାଇ ନିର୍ଦ୍ଦୋଷିକୁ ଦୋଷଦେଇ, ହରିକାଠରେ ପାକାଇ, ହାତକଡ଼ିଦେଇ ଲାବଣ୍ୟର ସତୀତ୍ୱ ନଷ୍ଟ କରିବା ପକ୍ଷରେ ଆଦୌ ତ୍ରୁଟି ତା ଆମ୍ଭେମାନେ ଦେଖିଲୁ ନାହିଁ । ସେହି ଅଂଶ ପାଠକଲେ

ହୃଦୟର ଭାବ ଉତ୍ତେଜିତ ଓ ପୋଲିସ ପ୍ରତି କ୍ରୋଧ ଓ ବୈରିତା ଏବଂ ଘୃଣା ଆସି ହୃଦୟକୁ ଅବସନ୍ନ କରିବ । ଲାଲ୍ ସାହେବଙ୍କ ପୋଲିସ ଚରିତ୍ର ଅତି ପରିପାଟୀ ହୋଇଅଛି । ପଦ୍ମାକୁ ଯେଉଁଠାରେ ବଳୀବାହାବଳେନ୍ଦ୍ର (ରାଜାଙ୍କ ପାଂଶଲୋକ) ପଚାରୁଅଛି—"ମାଉସି କେତେଦିନକୁ ଆସି ତୋତେ ଗୃହକ ପରି ରହିଛି, କ'ଣ ହେଲା କହନ ?"

ପଦ୍ମା କୁଟୁଣୀ କହୁଅଛି—କ'ଣ କହିବରେ ପୁତ ମୋର ମୁଣ୍ଡ କହିବ ।

ବଳୀ—ପଢିଲା ନାହିଁ କରେ ମାଉସୀ ?

ପଦ୍ମା—ହିଁରେ ପୁତ ପଢିଲା ନାହିଁ ।

ବଳୀ—ପୁତ ତୋ'ର ବଡ଼ ଭରସା କରିଥିଲା; ତୁ କହୁନୁ ପଢିଲା ନାହିଁ । ତୋ ପାରୁପର୍ଯ୍ୟନ୍ତ କରିନୁ ନା—ତାକୁ ଟଙ୍କା ଯାଚିଥିଲୁ ତ ?

× × × ×

ଚକ୍ରଧରରେ ଦେଓ୍ୱାନଙ୍କ ଚରିତ୍ର ଯେପରି ଚିତ୍ରିତ ହୋଇଅଛି ତାହା ମରହଟ୍ଟୀ ଦେବାନମାନଙ୍କର ଥିଲା ବୋଲି ଶୁଣାଯାଏ । ସେମାନେ ଶାସନଭାର ବା ରାଜ୍ୟର ଭଲମନ୍ଦ କିଛି ବିଚାର ନ କରି କୌଣସି ରୂପେ ରାଜାଙ୍କ ମନ ଭୁଲାଇ ଭୟ ଦେଖାଇ, ନାମ ବଜାଇ ଉତ୍ତମରୂପେ ବଞ୍ଚୟ କରିଥିଲେ । ନରବଳୀ କଥା ଯାହା ବର୍ଣ୍ଣିତ ହୋଇଅଛି; ତାହା ଗଡ଼ଜାତ ଅଞ୍ଚଳରେ କୌଣସି କୌଣସିଠାରେ ଥିଲା ବୋଲି ଶୁଣାଯାଏ । ମାତ୍ର ଇଂରେଜ ସିଂହଙ୍କ ପ୍ରତାପରୁ ସେ ସବୁ ଅଧିକ ଦିନ ଗୋପନ ରହେ ନାହିଁ । ଧରା ପଡ଼ିଲେ ରାଜାଙ୍କୁ ଯେଣ ଟଣା ଓଟରା ପଡ଼େ । ଲାବଣ୍ୟ ଆପଣା ସତୀତ୍ୱ କପରି ରକ୍ଷା କରିଛି

ତାହା ଅତି ସୁନ୍ଦର ରୂପେ ଅଙ୍କିତ ହୋଇଅଛି । ଏହି ନାଟକ ଖଣ୍ଡି ସ୍ତ୍ରୀଲୋକମାନଙ୍କର ପାଠ୍ୟ ମଧ୍ୟରେ ପରିଗଣିତ ହେଲେ କର୍ତ୍ତୃପକ୍ଷୀୟ-ମାନଙ୍କୁ କେହି ଦୂଷିବେ ନାହିଁ । ଏହି କ୍ଷୁଦ୍ର ନାଟକରେ ଅନେକ ଗୁଡ଼ିଏ ଚରିତ୍ର ଚିତ୍ରିତ ହୋଇଅଛି । ଗଡ଼ଜାଣି ଓ ଦମୟଣୀ ଭାଷା ଯଥାଯୋଗ୍ୟ ରୂପେ ସଂଯୋଜିତ ହୋଇଅଛି । ତେବେ ଯେଉଁ ଦୁଇ ଏକ ସ୍ଥଳରେ ତ୍ରୁଟି ଲକ୍ଷିତ ହୋଇଛି ତାହା ଆମ୍ଭେମାନେ ଓଡ଼ିଶାର ଅବସ୍ଥାକୁ ଗୃହି ମାର୍ଜନା କରୁଅଛୁଁ । ନାଟକ ଖଣ୍ଡିକ ଅଭିନୟ ଯୋଗ୍ୟ ହୋଇଅଛି । ମଧ୍ୟେ ମଧ୍ୟେ ଗୀତର ଅଭାବ ନାହିଁ । ଗ୍ରନ୍ଥକାର ବନକୁବନ ଉତ୍କଳର ଅଭାବ ବୁଝି ଏହିପରି ସାମାଜିକ ସଂସ୍କାରକ ନାଟକ ରଚନା କରି ଦେଶର ଅଭାବ ମୋଚନ କରନ୍ତୁ, ଏହା ଆମ୍ଭମାନଙ୍କ ଇଚ୍ଛା ।"

ଏହି ଅଭିମତହିଁ 'ସଣ୍ଡ' ନାଟକର ମହତ୍ତ୍ୱର ପରିଚୟମୂଳକ । ଏତଦ୍‌ବ୍ୟତୀତ ଜଗନ୍ମୋହନଙ୍କ ଅନ୍ୟତମ କୃତି ହେଉଛି 'ଓଡ଼ିଶା ବିଜୟ' । ଏହା ଷ୍ଟର୍ଲିଙ୍ଗଙ୍କ ଓଡ଼ିଶା ଇତିହାସର ଆଂଶିକ ଅନୁବାଦ । ୧୮୦୩ରୁ ୧୮୨୮ ପର୍ଯ୍ୟନ୍ତ ଓଡ଼ିଶାର ବନ୍ଦୋବସ୍ତ ବିବରଣୀ ଏଥିରେ ପ୍ରଦତ୍ତ ହୋଇଅଛି । ୧୮୭୭ ମସିହାରେ ଏହା ପ୍ରକାଶିତ ହୋଇଥିଲା । ଏହି ଅନୂଦିତ ଗ୍ରନ୍ଥର ଭାଷା ମାର୍ଜିତ ଯୁଗୋପଯୋଗୀ ଓ ଅନୁବାଦରେ ପ୍ରାଞ୍ଜଳତା ଏବଂ ସ୍ୱଚ୍ଛନ୍ଦତା ପରିଲକ୍ଷିତ ହୁଏ । ଏହିପରି କେତେକ ଉପାଦେୟ ପୁସ୍ତକ ରଚନା କରି ଜଗନ୍ମୋହନ ଓଡ଼ିଆ ସାହିତ୍ୟରେ ଯଶସ୍ୱୀ ହୋଇ ଅଛନ୍ତି ଓ ତାହାଙ୍କ ବାସ୍ତବବାଦୀ ଦୃଷ୍ଟିକୋଣ ପରବର୍ତ୍ତୀ ଲେଖକମାନଙ୍କୁ ସମାଜ ସମସ୍ୟାମୂଳକ ସାହିତ୍ୟ ସୃଷ୍ଟି ଲାଗି ପ୍ରଭୂତ ପ୍ରେରଣା ଯୋଗାଇଅଛି ।

---

# ପ୍ରଥମ ଓଡ଼ିଆ ଉପନ୍ୟାସ

## ( ପଦ୍ମମାଳୀ )

ଉମେଶଚନ୍ଦ୍ର ସରକାରଙ୍କ ଲିଖିତ ଓ ୧୮୮୮ ମସିହାରେ ପ୍ରକାଶିତ 'ପଦ୍ମମାଳୀ' ପ୍ରଥମ ଓଡ଼ିଆ ଉପନ୍ୟାସ ରୂପେ ଅବିସମ୍ବାଦିତ ଭାବେ ସ୍ୱୀକୃତ । ରାମଶଙ୍କର ରାୟ 'ପଦ୍ମମାଳୀ' ପୂର୍ବରୁ 'ସୌଦାମିନୀ' ନାମକ ଏକ ଉପନ୍ୟାସ ରଚନା କରିଥିଲେ ଓ ତାହାର କିୟଦଂଶ 'ଉତ୍କଳ ମଧୁପ' ମାସିକ ପତ୍ରରେ ୧୮୭୭-୭୮ ମସିହାରେ ପ୍ରକାଶ ପାଇଥିଲା ।

ରାମଶଙ୍କର ଏହି ଉପନ୍ୟାସ ସମ୍ପର୍କରେ ଲେଖିଛନ୍ତି—"ମୁଁ 'ଉତ୍କଳ-ମଧୁପ' ନାମକ ମାସିକ ପତ୍ର ବାହାର କଲାବେଳେ 'ସୌଦାମିନୀ' ନାମକ ଉପନ୍ୟାସ ଲେଖୁଥିଲି । ସେ ଉପନ୍ୟାସ ଶେଷ ହେବା ପୂର୍ବେ ଦେଶର ସ୍ୱାଭାବିକ ଗତିରେ ଗ୍ରାହକମାନେ ମୂଲ୍ୟ ନ ଦେବାରୁ କାଗଜ ଖଣ୍ଡିକ ବନ୍ଦ ହୋଇଗଲା । ମୁଁ କ୍ଷୁବ୍ଧ ହୋଇ ରହିଲି—ସେହି ଉପନ୍ୟାସର ହସ୍ତଲିପି ମୁଁ ତତ୍କାଳୀନ ଶିକ୍ଷା ବିଭାଗର ଡେପୋଟି ଇନ୍‌ସ୍‌ପେକ୍ଟର ଉମାଚରଣ ବାବୁଙ୍କୁ ଦେଖାଇ ଥିଲି । ସେ ତାହା ପଢ଼ି ତହିଁର ବିସ୍ତର ପ୍ରଶଂସା କଲେ । ମାତ୍ର ଉପନ୍ୟାସ ବିଦ୍ୟାଳୟର ପାଠ୍ୟ ପୁସ୍ତକର ଅନୁପଯୁକ୍ତ ବୋଲି ମତ ଦେବାରୁ ମୁଁ କ୍ଷାନ୍ତ ହୋଇ ରହିଲି ।"

(ରାମଶଙ୍କରଙ୍କ ଅଭିଭାଷଣ—ମୁକୁର ୯ମଭାଗ—୧୦ମ ସଂଖ୍ୟା)

ଠିକ୍ ତାହାହିଁ ସ୍ୱୀକାର କରିଛନ୍ତି ମୃତ୍ୟୁଞ୍ଜୟ ରଥ ୧୮୭୮ ମସିହାରେ ପ୍ରକାଶିତ 'ଉତ୍କଳ-ମଧୁପ' ପତ୍ରିକାର ଆଲୋଚନା କରି । ସେ ରାମଶଙ୍କରଙ୍କ ପ୍ରସଙ୍ଗରେ ଲେଖିଥିଲେ—"ତତ୍‌କୃତ'ସୌଦାମିନୀ' ଉପନ୍ୟାସ ଏଥିରେ କ୍ରମଶଃ ପ୍ରକାଶିତ ହୋଇଥିଲା ।"

(ଉତ୍କଳ ପତ୍ରିକା ୧୯ଶ ଶତାବ୍ଦୀ )

ଫକୀରମୋହନ ମଧ୍ୟ ରାମଶଙ୍କରଙ୍କୁ ପ୍ରଥମ ଉପନ୍ୟାସ ରଚୟିତାର ଗୌରବ ଦେଇଅଛନ୍ତି—

ହେ ରାମଶଙ୍କର ମୋର ମାନୁଛି ମନକୁ<br>
ହୋଇପାର ଯାଇ ତୁମ୍ଭେ ଗଉଣି ପଛକୁ<br>
ପ୍ରଥମ ନାଟକ ଆଉ ନଭେଲର ଲେଖା<br>
ପ୍ରଥମରେ ତୁମ୍ଭଠାରେ ହେଲା ସିନା ଦେଖା

(ଉତ୍କଳ ଭ୍ରମଣ ୧୮୯୨)

ଉପର୍ଯ୍ୟୁକ୍ତ ଉଦ୍ଧୃତମାନଙ୍କରୁ ଏହାହିଁ ପ୍ରତିପନ୍ନ ହୁଏ ଯେ ଉକ୍ତ ସୌଦାମିନୀ ଉପନ୍ୟାସଟିର କିୟଦଂଶ ରଚିତ ଓ ମୁଦ୍ରିତ ହୋଇଥିଲେହେଁ ଏହା ପୂର୍ଣ୍ଣାଙ୍ଗ ରୂପ ଲାଭ କରିପାରି ନ ଥିଲା । ଏହି ଉପନ୍ୟାସ ଏକ ଐତିହାସିକ ଉପନ୍ୟାସ । ଆଲ୍ଲାଉଦ୍ଦିନ ଖିଲଜିଙ୍କ ଚିତୋର-ଆକ୍ରମଣ ବିଷୟକୁ ଉପଜୀବ୍ୟ କରି ଏହା ଲିଖିତ । ରାଣାଙ୍କର ପୁତ୍ର ଜୟସିଂହ ଓ ତାଙ୍କର ବାଲ୍ୟ ସଙ୍ଗିନୀ 'ସୌଦାମିନୀ' ଏହି ଉପନ୍ୟାସର ନାୟକ ନାୟିକା ଥିବା ଜଣାଯାଏ । ଏହି ଉପନ୍ୟାସଟି ଅସମାପ୍ତ ଓ ଏହାର ଶେଷାଂଶ କାଳକ୍ରମେ ନଷ୍ଟ ହୋଇଯିବାରୁ ସମ୍ଭବତଃ ରାମଶଙ୍କର ତାହାଙ୍କ ଜୀବଦ୍ଦଶାରେ ପ୍ରକାଶିତ ସ୍ୱୀୟ ଗ୍ରନ୍ଥାବଳୀରେ ଉକ୍ତ ସୌଦାମିନୀର ପ୍ରକାଶିତ ବା

ଅପ୍ରକାଶିତ ଅଂଶକୁ ସନ୍ନିବେଶିତ କରଯାଇ ନାହାନ୍ତି । ଏଣୁ 'ପଦ୍ମମାଳୀ'ହିଁ ଯଥାର୍ଥତଃ ପ୍ରଥମ ପ୍ରକାଶିତ ପୂର୍ଣ୍ଣାଙ୍ଗ ଉପନ୍ୟାସଭାବେ ପରିଗଣିତ ହୋଇ ଆସୁଅଛି ।

ଏଠାରେ ଅବଶ୍ୟ ଉଲ୍ଲେଖଯୋଗ୍ୟ ଯେ ଊନବିଂଶ ଶତାବ୍ଦୀ ଶେଷ ଦୁଇଦଶକ ମଧ୍ୟରେ ପ୍ରକାଶିତ ବହୁ ଓଡ଼ିଆ ପତ୍ରିକାରେ ଅନେକ ଉପନ୍ୟାସ ଧାରାବାହିକ ଭାବେ ମୁଦ୍ରିତ ହୋଇଛି । ମାତ୍ର ସମ୍ପୃକ୍ତ ପତ୍ରିକା ଅଚିରେ ବନ୍ଦ ହୋଇଯିବାରୁ ବହୁ ଉପନ୍ୟାସ ସୃଷ୍ଟିର ପ୍ରୟାସ ମୁକୁଳ ଅବସ୍ଥାରୁହିଁ ବିନଷ୍ଟ ହୋଇଯାଇଛି । ଉଦାହରଣ ସ୍ୱରୂପ ୧୮୮୫ ମସିହାରେ ଶରତଚନ୍ଦ୍ର ମୁଖୋପାଧ୍ୟାୟଙ୍କ ସମ୍ପାଦିତ ଓ କଟକ ପ୍ରିଣ୍ଟିଂ କୋମ୍ପାନୀପକ୍ଷରୁ ମୁଦ୍ରିତ ପ୍ରଦୀପ ପତ୍ରିକାରେ ମଠର ସମ୍ବାଦ ଓ ଅନାଥିନୀ ନାମକ ଦୁଇଟି ଉପନ୍ୟାସ ଧାରାବାହିକ ଭାବେ ମୁଦ୍ରିତ ହେଉଥିବା ପରିଲକ୍ଷିତ ହୁଏ । ଦୁଇଟିଯାକ ଉପନ୍ୟାସ 'ଶ୍ରୀ' ଛଦ୍ମନାମରେ ଲିଖିତ ଥିବାରୁ ଏହାର ପ୍ରକୃତ ଲେଖକ କିଏ ତାହା ଅବଧାରଣ କରିବା କଷ୍ଟକର । 'ପ୍ରଦୀପ' ୧ମ ବର୍ଷର ୧୨ଟି ସଂଖ୍ୟା ମଧ୍ୟରେ 'ମଠର ସମ୍ବାଦ' ଉପନ୍ୟାସର ଛଅଟି ପରିଚ୍ଛେଦରେ ଓକିଲବାବୁ, ଡାକ୍ତରବାବୁ, ଇଂରାଜୀ ଶିକ୍ଷାପ୍ରାପ୍ତ ଯୁବକ, ଡେପୁଟି ସର୍କାରୀ କର୍ମଚାରୀ ସବ୍‌ଜାନ୍‌ତା ଶିକ୍ଷିତବାବୁ, ପ୍ରଭୃତି ଚରିତ୍ରଚିତ୍ରିତ ହୋଇଅଛି ଏବଂ ଅନାଥିନୀ ଉପନ୍ୟାସର ପଞ୍ଚମ ପରିଚ୍ଛେଦ ପର୍ଯ୍ୟନ୍ତ ମୁଦ୍ରିତ ହୋଇଅଛି । ଏହି ପତ୍ରିକାଟି ୨ୟ ବର୍ଷରେ ପଦାର୍ପଣ କରିଥିଲା କି ନାହିଁ ଓ ପ୍ରଥମ ବର୍ଷ ମଧ୍ୟରେ ପ୍ରକାଶିତ ଉପନ୍ୟାସ ଦୁଇଟିର ପରିଣତି କଣ ହେଲା ତାହା ଜାଣିବା ସମ୍ଭବ ହୋଇପାରିନାହିଁ ।

'ପଦ୍ମମାଳୀ' ଏକ ଐତିହାସିକ ଉପନ୍ୟାସ । ଐତିହାସିକ ବୋଇଲେ, ପୂର୍ବତନ ଗଡ଼ଜାତ ମାଳଗିରିରେ ୧୮୩୫ ମସିହାରେ

ସଙ୍ଘଟିତ ହୋଇଥିବା ଏକ ସତ୍ୟଘଟଣା ଅବଲମ୍ବନରେ ଏହା ଲିଖିତ । ଏହି ଘଟଣା ଓଡ଼ିଶା ଇତିହାସର ଏକ ଉଲ୍ଲେଖଯୋଗ୍ୟ ସ୍ମରଣୀୟ ଘଟଣା ନୁହେଁ ବା ଓଡ଼ିଶାର ଇତିହାସ ପ୍ରସିଦ୍ଧ କୌଣସି ଚରିତ୍ରକୁ ନେଇ ଉପନ୍ୟାସଟି ଲିଖିତ ହୋଇନାହିଁ । ତଥାପି ମାଲଗିର ପାଞ୍ଚଗଡ଼ର ମେଳି, ବିଦ୍ରୋହ ଓ ନାରୀ ଅପହରଣ ଜନିତ ଘଟଣାବଳୀ ଯେ ଅତ୍ୟନ୍ତ ରୋମାଞ୍ଚକର ଓ ତତ୍କାଳୀନ ଓଡ଼ିଶା ଗଡ଼ଜାତର ଏକ ମଳିନ ଦୃଷ୍ଟା ଏଥିରେ କୌଣସି ସନ୍ଦେହ ନାହିଁ ।

ଇଂରେଜୀ ଆଲୋଚକମାନେ ରିଚାର୍ଡ଼ସନଙ୍କ ରଚିତ ୧୭୪୦ ମସିହାରେ ପ୍ରକାଶିତ 'ପାମେଲା' ଉପନ୍ୟାସକୁ ପ୍ରଥମ ଇଂରାଜୀ ଉପନ୍ୟାସ ଭାବେ ଗ୍ରହଣ କରିଥାନ୍ତି । ଏହାର ପ୍ରାୟ ଏକ ଶତାବ୍ଦୀ ପରେ ଭାରତୀୟ ସାହିତ୍ୟମାନଙ୍କରେ ଉପନ୍ୟାସ ରଚନାର ସୂତ୍ରପାତ ହୋଇଥିଲା । ଏହି ସମ୍ପର୍କରେ କିପରି ସମକାଳରେ ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ଉପନ୍ୟାସ ରଚିତ ହୋଇଥିଲା ତାହା ବିବେଚ୍ୟ ।

ମରହଟ୍ଟୀ ଭାଷାରେ ପ୍ରଥମ ଉପନ୍ୟାସ 'ଯମୁନା ପର୍ଯ୍ୟଟନ' ବାବା ପଦ୍ମନଜୀଙ୍କଦ୍ୱାରା ରଚିତ ହୋଇ ୧୮୫୭ ମସିହାରେ ପ୍ରକାଶିତ ହୋଇଥିଲା । ମାଲୟଲମ୍ ଭାଷାରେ ପ୍ରଥମ ଉପନ୍ୟାସ 'କୁନ୍ଦଲତା', ଅପ୍ପୁନେଦୁଙ୍ଗଡ଼ିଙ୍କଦ୍ୱାରା ରଚିତ ହୋଇ ୧୮୮୭ ମସିହାରେ ପ୍ରକାଶିତ ହୋଇଥିଲା । ୧୯ଶ ଶତାବ୍ଦୀର ଶେଷାର୍ଦ୍ଧରେ କନ୍ଦୁକୁରି ବୀରେଶ-ଲିଙ୍ଗମ୍ ପାନ୍ତୁଲୁଙ୍କ ଦ୍ୱାରା ରଚିତ 'ରାଜଶେଖର ଚରିତମ୍' ପ୍ରଥମ ତେଲୁଗୁ ଉପନ୍ୟାସଭାବେ ଗୃହୀତ ହୋଇଥାଏ । ତାମିଲ ସାହିତ୍ୟରେ ସେହିପରି ୧୮୮୦ରୁ ୧୮୯୦ ମଧ୍ୟରେ ଭେଦନାୟକମ୍ ପିଲଇ ଓ ରାଜମଆୟାର ପ୍ରଥମେ ଉପନ୍ୟାସ ରଚନାରେ ମନୋନିବେଶ କରି-

ଥିଲେ । ଶ୍ରୀ ପିଲାଇଙ୍କ ପ୍ରତାପ୍ ମୁଦାଲିଅର ଚରିତମ୍ ଏବଂ ଶ୍ରୀ ଆପ୍ପାରଙ୍କ କମଲମ୍ବଲ ଚରିତ୍ରମ୍ ପ୍ରଥମ ଉପନ୍ୟାସଭାବେ ସ୍ୱୀକୃତ ହୁଏ । ସିନ୍ଧି ସାହିତ୍ୟରେ ପ୍ରଥମ ମୌଳିକ ଉପନ୍ୟାସ 'ପିଲାଗାମ' ୧୮୮୯ ମସିହାରେ ପ୍ରକାଶ ପାଇଥିଲା । ଏହାର ଲେଖକ ମିର୍ଜ୍ଜା କାଲିଚ ବେଗ୍ ।

ବଙ୍ଗଦେଶରେ ସର୍ବାଦୌ ଇଂରାଜୀଶିକ୍ଷା ପ୍ରବର୍ତ୍ତିତ ହୋଇଥିବାରୁ ଭାରତୀୟ ଭାଷାମାନଙ୍କ ମଧ୍ୟରୁ ପ୍ରଥମେ ବଙ୍ଗଳାରେ ଉପନ୍ୟାସ ରଚିତ ହୋଇଥିଲା । ୧୮୨୩ ମସିହାରେ ପ୍ରକାଶିତ ପ୍ରମଥନାଥ ଶର୍ମାଙ୍କ ରଚିତ 'ନବବାବୁ ବିଳାସ' ପୁସ୍ତକ ବଙ୍ଗ ସାହିତ୍ୟର ପ୍ରଥମ ଉପନ୍ୟାସଭାବେ ପରିଗଣିତ ହୁଏ । ଏହାର ୩୫ବର୍ଷ ପରେ ୧୮୫୭ ମସିହାରେ ପ୍ୟାରୀଚାନ୍ଦ ମିତ୍ର ବଙ୍ଗ ସାହିତ୍ୟର ଦ୍ୱିତୀୟ ଉପନ୍ୟାସ 'ଆଲାଲେର ଘରେ ଦୁଲାଲ' ରଚନା କରନ୍ତି ।

ଊନବିଂଶ ଶତକର ମଧ୍ୟଭାଗ ପରେ ବିଶେଷତଃ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ସିପାହୀ ବିଦ୍ରୋହ (୧୮୫୭) ଓ ନଅଙ୍କ ଦୁର୍ଭିକ୍ଷ ୧୮୬୬) ପରେ ଏ ଦେଶରେ ଯେଉଁ ଇତିହାସ ସଚେତନତା ଦେଖା ଦେଇଥିଲା, ତାହାହିଁ ରାଧାନାଥଙ୍କ କାବ୍ୟ କବିତାରେ ଯେପରି ପ୍ରତିଫଳିତ ସେହିପରି ଉପନ୍ୟାସ କ୍ଷେତ୍ରରେ ମଧ୍ୟ ତାହାର ନିଦର୍ଶନ ପରିଲକ୍ଷିତ ହୁଏ, ଏଣୁ ଉମେଶଚନ୍ଦ୍ର ରାମଶଙ୍କର ପ୍ରଭୃତି ସର୍ବାଦୌ ଐତିହାସିକ ଉପନ୍ୟାସ ପ୍ରଣୟନ କରିବାକୁ ଅଭିଳାଷୀ ହୋଇଥିଲେ । ଏହି ସମୟରେ ବଙ୍ଗଭାଷାରେ ମଧ୍ୟ ଐତିହାସିକ ବିଷୟବସ୍ତୁକୁ ଅବଲମ୍ବନ କରି ବହୁ ଉପନ୍ୟାସ ରଚିତ ହୋଇଥିଲା । ବଙ୍କିମଚନ୍ଦ୍ରଙ୍କ ସୁପ୍ରସିଦ୍ଧ ଐତିହାସିକ ଉପନ୍ୟାସ ଦୁର୍ଗେଶ ନନ୍ଦିନୀ (୧୮୬୫) ମୃଣାଳିନୀ (୧୮୬୯) ରାଜସିଂହ (୧୮୮୨)

ଚନ୍ଦ୍ରଶେଖର (୧୮୮୧) ଓ ରମେଶଚନ୍ଦ୍ର ଦତ୍ତଙ୍କ 'ବଙ୍ଗବିଜେତା' (୧୮୭୩) ମାଧବୀ କଙ୍କଣେ (୧୮୭୪) ପ୍ରଭୃତି ପୁସ୍ତକଗୁଡ଼ିକ ଏହି ସମୟର ସୃଷ୍ଟି । ସମ୍ଭବତଃ ଉମେଶଚନ୍ଦ୍ର ଏହିସବୁ ତତ୍କାଳୀନ ଜନପ୍ରିୟ ଉପନ୍ୟାସ ପାଠକରିବାର ସୁଯୋଗ ଲାଭ କରି ଐତିହାସିକ ଉପନ୍ୟାସ ରଚନା କରିବାକୁ ଅନୁପ୍ରେରିତ ହୋଇଥିବେ । ତା'ଛଡ଼ା ଓଡ଼ିଆ ସାହିତ୍ୟରେ ସର୍ବାଦୌ ଉପନ୍ୟାସର ଆବିର୍ଭାବ ଏହି ସମୟରେ ହୋଇଥିବାରୁ ଏହା ସମ୍ପୂର୍ଣ୍ଣ ବୈଦେଶିକ ଆଦର୍ଶରେ ଅନୁକରଣରେ ମଧ୍ୟ ରଚିତ ହୋଇଥିବା ସମ୍ଭବପର ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ କାବ୍ୟ, କବିତା, ଗଳ୍ପ, ପ୍ରବନ୍ଧ ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗରେ ଯେପରି ଇଂରାଜୀ ସାହିତ୍ୟର ପ୍ରଭାବ ପ୍ରତ୍ୟକ୍ଷ ତଥା ପରୋକ୍ଷ ଭାବରେ ଉପଲବ୍ଧ ହୁଏ, ଉପନ୍ୟାସ କ୍ଷେତ୍ରରେ ମଧ୍ୟ ତାହାହିଁ ସଙ୍ଘଟିତ ହୋଇଥିଲା । ପୂର୍ବରୁ ଓଡ଼ିଆରେ ବ୍ରତକଥା, ବତ୍ରିଶ ସିଂହାସନ, ଚତୁର ବିନୋଦ, ହାସ୍ୟ କଲ୍ଲୋଳ ଭଳି ଯେଉଁ ସାମାନ୍ୟ କଥା ସାହିତ୍ୟ ଲିଖିତ ହୋଇଥିଲେ ହେଁ 'ପଦ୍ମମାଳୀ' ଯେ ସେହି ପରଂପରାର ଦାୟାଦ ଏହା କୁହାଯାଇ ନ ପାରେ । ବରଂ ଉଚ୍ଚ ଇଂରାଜୀଶିକ୍ଷା ପ୍ରାପ୍ତ ଉମେଶଚନ୍ଦ୍ର ସ୍କଟ୍, ଡିକେନ୍ସ ପ୍ରଭୃତି ଇଂରାଜୀ ଔପନ୍ୟାସିକଙ୍କ ଉପନ୍ୟାସ ଅଥବା ବଙ୍ଗୀୟ ଉପନ୍ୟାସାଦି ପାଠକରି ଗଦ୍ୟରେ କଥାଗ୍ରନ୍ଥ ଲେଖିବାର ପ୍ରେରଣା ଲାଭ କରିଥିବା ଅଧିକ ବିଶ୍ୱାସଯୋଗ୍ୟ ମନେହୁଏ । ମାତ୍ର ଏହା ନିଶ୍ଚିତ ଭାବେ କୁହାଯାଇପାରେ ଯେ ପଦ୍ମମାଳୀ କୌଣସି ପାଶ୍ଚାତ୍ୟ ଅଥବା ବଙ୍ଗୀୟ ଉପନ୍ୟାସ ନିକଟରେ ପ୍ରତ୍ୟକ୍ଷଭାବେ ଋଣୀନୁହେଁ । ଏହାର କଥାବସ୍ତୁ ତଥା ରଚନା ରୀତିରେ ଏପରି କେତେକ ମୌଳିକତା ପରିଲକ୍ଷିତ ହୁଏ ଯାହା ଏକାନ୍ତଭାବେ ଉତ୍କଳୀୟ ପରମ୍ପରା ଓ ପରିବେଶରୁ ଉଦ୍ଭୁତ ହୋଇଅଛି । ପ୍ରାଚୀନ ଭାରତୀୟ

ପରମ୍ପରା ସହିତ ନବାଗତ ସାହିତ୍ୟିକ ରୂପାଭିବ୍ୟକ୍ତିର ସଂଘର୍ଷାତ୍ମକ ପରିଚୟ ଏହି ଉପନ୍ୟାସରେ ପ୍ରତିଫଳିତ ।

ଇଂରାଜୀ ଶାସନ ପ୍ରତିଷ୍ଠାର ୩୦ ବର୍ଷ ପରବର୍ତ୍ତୀ ଉତ୍କଳୀୟ ସମାଜ ଜୀବନର ଏକ ଚିତ୍ର ଲେଖକ ଏହି ଉପନ୍ୟାରେ ଉଦ୍‌ଘାଟନ କରିଛନ୍ତି । ଗଡ଼ଜାତ ଅଞ୍ଚଳରେ କପଟ ଅରାଜକତା, ନାରୀଧର୍ଷଣ, ଶାସନଗତ ବିଶୃଙ୍ଖଳା ଓ ବିଦ୍ରୋହାଦିର ପରିପୂର୍ଣ୍ଣ ଥିଲି ତାହାର ସମ୍ୟକ ଚିତ୍ର ଏହି ଉପନ୍ୟାସରୁ ମିଳିଥାଏ । ମରହଟ୍ଟା ଶାସନ ଏ ଦେଶରୁ ବହୁ ପୂର୍ବରୁ ନିଶ୍ଚିହ୍ନ ହୋଇଥିଲେ ମଧ୍ୟ କେତେକ ସଦାଶୟ ମହାରାଷ୍ଟ୍ରୀୟ ଏ ଦେଶରେ ରହି ଯାଇଥିଲେ । ଇଂରାଜମାନଙ୍କ ପ୍ରତି ଗଡ଼ଜାତ ରାଜା ତଥା ଜନସାଧାରଣଙ୍କର ଅତ୍ୟନ୍ତ ଭୟ ଥିଲି । ଏ ଦେଶବାସୀଙ୍କ ପକ୍ଷେ ସେପର୍ଯ୍ୟନ୍ତ ଇଂରାଜୀଶିକ୍ଷା ପାଇବାର ସୁଯୋଗ ଘଟି ନଥିଲି । ଏଣୁ ଗଡ଼ଜାତି ଅଦ୍ଧାଗିମୂଳକର ଏକ ସତ୍ୟଘଟଣାକୁ ବର୍ଣ୍ଣନା କରି ଲେଖକ ଯେ ମୌଳିକତାର ପରିଚୟ ଦେଇଛନ୍ତି ତାହା କହିବା ଅନାବଶ୍ୟକ । ତତ୍‌କାଳୀନ ସମ୍ବାଦପତ୍ର ଉତ୍କଳ-ଦୀପିକା (ପ୍ରଥମ ପ୍ରକାଶ ୧୮୬୬), ବାଲେଶ୍ୱର ସମ୍ବାଦବାହିକା (୧୮୬୮), ଉତ୍କଳଦର୍ପଣ (୧୮୭୫), ଉତ୍କଳମଧୁପ (୧୮୭୮), ପ୍ରଦୀପ (୧୮୮୫), ନବସମ୍ବାଦ (୧୮୮୬) ପ୍ରଭୃତି ପତ୍ରିକାରେ ବହୁ-ଘଟଣା ସେତେବେଳେ ପ୍ରକାଶପାଇଛି । ସମ୍ଭବତଃ ସେହିଗୁଡ଼ିକୁ ରସସମୃଦ୍ଧ କରି ଉପନ୍ୟାସ ରଚନା କରିବାକୁ ଲେଖକଙ୍କ ମନରେ ଆଗ୍ରହ ଜାତ ହୋଇଛି । ପଦ୍ମମାଳୀ ଉପନ୍ୟାସ କଥାବସ୍ତୁର ସଂଘଟନ କାଳ ସୁଦୂର ଅତୀତର ଇତିବୃତ୍ତ ବା ପୁରାତତ୍ତ୍ୱର ବିଷୟ ନୁହେଁ । ସମ୍ଭବତଃ ଏହାର କଥାବସ୍ତୁର ଅନେକ ବିଷୟ ଲେଖକ ତତ୍‌କାଳୀନ ଜନଶ୍ରୁତି ଓ ସରକାରୀ କାଗଜପତ୍ରରୁ ଅବଗତ ହୋଇଥିବେ । ଢେଙ୍କାନାଳ ପ୍ରଭୃତି ଗଡ଼ଜାତର ରାଜକର୍ମଚାରୀ ଭାବରେ ତାଙ୍କର

ଗଡ଼ଜାତ ସମ୍ପର୍କରେ ମଧ୍ୟ ପ୍ରତ୍ୟକ୍ଷ ଅଭିଜ୍ଞତା ଯଥେଷ୍ଟ ଥିଲା । ଏଣୁ ଏପରି ଏକ ସହଜ ଲଭ୍ୟ କଥାବସ୍ତୁକୁ ଉପନ୍ୟାସ ରୂପ ଦେବାକୁ ଲେଖକ ସ୍ୱତଃ ଆଗ୍ରହୀ ହୋଇଅଛନ୍ତି । ସୁତରାଂ ଇଂରାଜମାନଙ୍କ ଉତ୍କଳ ଅଧିକାର, ପାଇକ ବିଦ୍ରୋହ, ନଅଙ୍କ ଦୁର୍ଭିକ୍ଷ ବା ଇଂରାଜ ଅଧିକାରର ପୂର୍ବବର୍ତ୍ତୀ ମରହଟ୍ଟା ବା ମୋଗଲଶାସନ କାଳୀନ ଓଡ଼ିଶାର ଐତିହାସିକ ଅବସ୍ଥା ବିଷୟ ସମ୍ବନ୍ଧିତ କୌଣସି ଓଡ଼ିଶା ଇତିହାସ ପ୍ରସିଦ୍ଧ ବିଷୟକୁ ଉପନ୍ୟାସର କଥାବସ୍ତୁ ଭାବରେ ଗ୍ରହଣ ନ କରି ଲେଖକ ଏହିପରି ଏକ ଗଡ଼ଜାତ ରାଜକର୍ମଚାରୀଙ୍କଦ୍ୱାରା ସଂଘଟିତ ନାରୀନିର୍ଯ୍ୟାତନାମୂଳକ ବିଷୟକୁ ଉପନ୍ୟାସର କଥାବସ୍ତୁ ଭାବେ ଗ୍ରହଣ କରିଅଛନ୍ତି । ଏହା ବସ୍ତୁତଃ ସେ ଯୁଗର ଏକ ସତ୍ୟ ଓ ବାସ୍ତବ ଘଟଣା ।

**ବିଷୟ ବସ୍ତୁ**—ନୀଳଗିରିର ପାଞ୍ଚଗଡ଼ ନିବାସୀ [illegible] ଜଗବନ୍ଧୁ ପଟ୍ଟନାୟକ ସ୍ୱୀୟ ପତ୍ନୀ ଓ ରୂପବତୀ କନ୍ୟା ପଦ୍ମମାଳୀ ସହ ମୟୂରଭଞ୍ଜ ମାଣତ୍ରୀକୁ ଜାଗର ଯାତ୍ରା ଦେଖିବାକୁ ଯାଉଥିଲେ । ସେଠାରେ ନୀଳଗିରିର ଉଚ୍ଚପଦସ୍ଥ କର୍ମଚାରୀ ଭ୍ରଷ୍ଟଚରିତ୍ର ଦୁର୍ଯ୍ୟୋଧନ ଦାସ, ବାଞ୍ଛାନିଧି ବଳବନ୍ତରାୟଙ୍କ ସହାୟତାରେ ପଦ୍ମମାଳୀକୁ ଅପହରଣ କରି ନେଇଅଛି । ମାତ୍ର ସୌଭାଗ୍ୟ [illegible] ସାହସୀ ଓ ମହାନୁଭବ ରାଜା ପରୀକ୍ଷିତ ସିଂହ ପଦ୍ମମାଳୀକୁ ଦୁର୍ଯ୍ୟୋଧନ କବଳରୁ ରକ୍ଷାକରି ତାହାକୁ ମହନ୍ତ ହରିହର ରାମାନୁଜ ଦାସଙ୍କ ମଠରେ ରଖିଅଛନ୍ତି । ରୂପ-ଗୁଣ-ମୁଗ୍ଧ ପରୀକ୍ଷିତ ଓ ପଦ୍ମମାଳୀ ପରସ୍ପର ପ୍ରତି ଆକୃଷ୍ଟ ହୋଇ ଅନନ୍ତ ଓ ମହନ୍ତଙ୍କ ମଧ୍ୟସ୍ଥତାରେ ଉଭୟଙ୍କର ବିବାହ ସ୍ଥିରୀକୃତ ହୋଇଅଛି । ଦୁର୍ଯ୍ୟୋଧନ ପଦ୍ମମାଳୀକୁ ବିବାହ କରିବାକୁ ତାହାଙ୍କ ପିତାଙ୍କ ନିକଟରେ ପ୍ରସ୍ତାବ କରିଥିଲା । ମାତ୍ର ପଦ୍ମମାଳୀ ଓ ପରୀକ୍ଷିତଙ୍କର ବିବାହ

ହେବା ସ୍ଥିରୀକୃତ ହୋଇଛି ଏହା ଶୁଣିପାରି ସେ କୌଶଳରେ ମାଳଗିରି ରାଣୀ ଶଶୀଦେବୀ (ଶଶିକଳା)ଙ୍କ ପରାମର୍ଶକ୍ରମେ ଜଗବନ୍ଧୁଙ୍କୁ ବନ୍ଦୀ ଓ ପଦ୍ମମାଳୀଙ୍କୁ ଅପହରଣ କରି ନେଇଛି । ଏହାଛଡ଼ା ଘଣ୍ଟଶୀଳା ଗଡନାୟକଙ୍କ କନ୍ୟା ଜୟନ୍ତୀକୁ ମଧ୍ୟ ସେ ଅପହରଣ କରି ପଦ୍ମମାଳୀ ଓ ଜୟନ୍ତୀଙ୍କୁ ଏକ ଗୋପନୀୟ ସ୍ଥାନରେ ବନ୍ଦୀକରି ରଖିଛି । ଜୟନ୍ତୀ ଓ ବାଞ୍ଛାନିଧି ପରସ୍ପର ପ୍ରତି ଆକୃଷ୍ଟଥିଲେ । ମାତ୍ର ଦୁର୍ଯ୍ୟୋଧନ ଜୟନ୍ତୀକୁ ବନ୍ଦୀ କରିଥିବାରୁ ବାଞ୍ଛାନିଧି ଓ ଦୁର୍ଯ୍ୟୋଧନ ମଧ୍ୟରେ ଶତ୍ରୁତା ସୃଷ୍ଟି ହୋଇଛି । ଏହି ସମୟରେ ମାଳଗିରିର ସିଂହାସନ ପାଇବାକୁ ରାଜବଂଶୀୟ ହରିହର ଭ୍ରମରବର ମାଳଗିରି ବିରୁଦ୍ଧରେ ବିଦ୍ରୋହର ଆୟୋଜନ କରୁଥିଲେ । ପଦ୍ମମାଳୀ ଅପହୃତା ଓ ବନ୍ଦୀ ହେବା ଶୁଣିପାରି, ପଣ୍ଡିତ ସିଂହ ସଦଳବଳେ ହରିହର ଭ୍ରମରବରଙ୍କ ସୈନ୍ୟଙ୍କ ସହ ମିଳିତ ହୋଇ ମାଳଗିରି ଆକ୍ରମଣ କରିଅଛନ୍ତି । ରାଣୀ ଭୟରେ ବାଲେଶ୍ୱର ପଳାଇଯାଇ କଲେକ୍ଟରଙ୍କ ଆଶ୍ରୟ ଭିକ୍ଷା କରିଛନ୍ତି । ପଣ୍ଡିତ ପଦ୍ମମାଳୀ ଓ ଜୟନ୍ତୀଙ୍କ ଉଦ୍ଧାର କରି, ଦୁର୍ଯ୍ୟୋଧନକୁ କପିପଦା କାରାଗାରକୁ ପ୍ରେରଣ କରିଛନ୍ତି । ଇତ୍ୟବସରରେ ବାଲେଶ୍ୱର କଲେକ୍ଟର ସଦଳବଳେ ଆସି ମାଳଗିରିର ଏହି ବିଦ୍ରୋହକୁ ଦମନ କରିଅଛନ୍ତି । ମାଳଗିରି ଆକ୍ରମଣ କରିଥିବା ଯୋଗୁ ବିଗ୍ରହରେ ହରିହର, ବନ୍ଧୁ-ବାବୁ ଓ ପଣ୍ଡିତ ପ୍ରଭୃତିଙ୍କୁ କାରାଦଣ୍ଡାଦେଶ ମିଳିଛି । ମାତ୍ର ମହନ୍ତ ହରିହର ଦାସ ସାହେବଙ୍କୁ ମାଳଗିରି ଆକ୍ରମଣର ପ୍ରକୃତ ବିଷୟ ବୁଝାଇଦେବାରୁ ପଣ୍ଡିତଙ୍କ ଦଣ୍ଡାଦେଶ ରହିତ ହୋଇଛି । ପଦ୍ମମାଳୀର ଓ ପଣ୍ଡିତଙ୍କ ମଙ୍ଗଳକୃତ୍ୟ ସମ୍ପାଦିତ ହୋଇଅଛି । ପଦମାଳୀ ଅନୁରୋଧରେ ବାଞ୍ଛାନିଧି ଓ ଜୟନ୍ତୀର ବିବାହ ମଧ୍ୟ

ଅନୁଷ୍ଠିତ ହୋଇଛି । କପ୍ତିପଦା କାରାଗାରରେ ଦୁର୍ଯ୍ୟୋଧନର ଅକାଳ ମୃତ୍ୟୁ ସଂଘଟିତ ହୋଇଅଛି ।

ଏହାପରେ ଏକ ଗଡ଼ଜାତ ଇତିବୃତ୍ତକୁ ଉପନ୍ୟାସ ରୂପଦେବାକୁ ଯାଇ ଲେଖକ ଅତ୍ୟନ୍ତ ସନ୍ତର୍ପଣରେ ସ୍ୱୀକାର କରି ଯଥାର୍ଥତଃ ଲେଖିଥିଲେ—"ଉତ୍କଳ ସାହିତ୍ୟର ବର୍ତ୍ତମାନ ଅବସ୍ଥାରେ ସ୍ୱକପୋଳ-କଳ୍ପିତ ଗ୍ରନ୍ଥ ରଚନା କରିବାର ଉଦ୍ୟମକୁ ଅସୀମ ସାହସିକତାର କାର୍ଯ୍ୟ ବୋଲିବାକୁ ହେବ । ଉତ୍କଳଭାଷାନଭିଜ୍ଞ ଆମ୍ଭେ ହାସ୍ୟାସ୍ପଦ ହେବୁ ଜାଣିସୁଦ୍ଧା ଏ ଅନୁଷ୍ଠାନରେ ବ୍ରତୀ ହୋଇଅଛୁ । × × × ଐତିହାସିକ ଘଟଣାବଳୀ ଅବଲମ୍ବିତ ହୋଇ କୌଣସି ଉପନ୍ୟାସ ଉତ୍କଳ ଭାଷାରେ ରଚିତ ହୋଇଥିବାର ଆମକୁ ଜଣାନାହିଁ । × × × ଆମ୍ଭେମାନେ ଏହି କ୍ଷୁଦ୍ର ଆୟତନ ଓ ଅପେକ୍ଷାକୃତ ଅଖ୍ୟାତନାମା ରାଜ୍ୟର ସ୍ୱଳ୍ପବ୍ୟାପୀ ଘଟଣାକୁ ଅବଲମ୍ବନ କରି ଏ ଗ୍ରନ୍ଥ ରଚନା କରିଅଛୁ ।"

(ପଦ୍ମମାଳୀ ୧ମ ସଂସ୍କରଣର ଭୂମିକା)

୧୮୩୫ ମସିହା ମାର୍ଚ୍ଚ ମାସର ଶିବ ଚତୁର୍ଦ୍ଦଶୀଠାରୁ ଜୁଲାଇ ମାସ ଶେଷ ସୁଦ୍ଧା ବାଲେଶ୍ୱରର ତତ୍କାଳୀନ ମାଜିଷ୍ଟ୍ରେଟଙ୍କଦ୍ୱାରା ମାଳଗିରି ବିଦ୍ରୋହ ଦମନ ପର୍ଯ୍ୟନ୍ତ ଘଟଣାସମୂହ ଏହି ଉପନ୍ୟାସରେ ରଚିତ । ସେତେବେଳେ ମାଳଗିରିରେ ପୂର୍ଣ୍ଣ ଅରାଜକତା—ରାଣୀ ଚନ୍ଦ୍ରାଦେବୀ ନାବାଳକ ରାଜାଙ୍କ ମହାପ୍ରତିନିଧି ରୂପେ ରାଜ୍ୟଭାର ଗ୍ରହଣ କରିଥିଲେ ଏବଂ ତାହାଙ୍କ ଭାଇ ଶିବଚରଣ ପଟ୍ଟନାୟକ ଦେୱାନ ଭାବରେ ଓ ପିଉସୀ ପୁଅ ଭାଇ ଦୁର୍ଯ୍ୟୋଧନ କାର୍ଯ୍ୟତଃ ଦେୱାନ ଭାବରେ ପ୍ରଜାମାନଙ୍କ ଉପରେ ପ୍ରବଳ ଅତ୍ୟାଚାର କରୁଥିଲେ କପ୍ତିପଦା ରାଜା ପଦ୍ମନିଧିଙ୍କ ଭଉଣୀପତି

ହରିହର ଭ୍ରମରବର ମଧ୍ୟ ନୀଳଗିରି ରାଜ୍ୟ ଅଧିକାର କରିବାରେ ବିଫଳମନୋରଥ ହୋଇ ନୀଳଗିରି ରାଜ୍ୟରେ ଲୁଣ୍ଠନ ଓ ଉତ୍ପୀଡ଼ନ କରୁଥିଲେ । ଇତ୍ୟବସରରେ ଦୁର୍ଯ୍ୟୋଧନ ୨୦୦ ପାଇକ ନେଇ ପାଞ୍ଚଗଡ଼ ଆକ୍ରମଣ କରି ପଦ୍ମମାଳୀକୁ ଅପହରଣ କରିନେଲେ । ଏହାର ପ୍ରତିଶୋଧ ନେବାଲାଗି ପରୀକ୍ଷିତ ଓ ହରିହର ନୀଳଗିରି ଆକ୍ରମଣ କରିଥିଲେ । ଏହାପରେ ବାଲେଶ୍ୱର ମାଜିଷ୍ଟ୍ରେଟ ହେନେରୀ ରିକେଟ୍‌ସ ଏହି ରାଜ୍ୟ ଆକ୍ରମଣକାରୀମାନଙ୍କୁ ଦମନ କରି ସେମାନଙ୍କର ବିଚାର କରିଥିଲେ । ଲେଖକ ଏହି ସମ୍ପର୍କରେ ଲେଖିଛନ୍ତି—"ଏ ସକଳ ବର୍ଣ୍ଣନାରେ ଏକ ପକ୍ଷରେ ଯେପରି ଇତିହାସର ଏକ ବର୍ଣ୍ଣର ଅପଳାପ କରିନାହୁଁ, ଅନ୍ୟ ପକ୍ଷରେ ପାଠକଙ୍କର ଚିତ୍ତରଞ୍ଜନ କରିବାକୁ ସମଧିକ ଯତ୍ନବାନ ହୋଇଅଛୁ ।"

(ପଦ୍ମମାଳୀ ୨ୟ ସଂସ୍କରଣର ଭୂମିକା)

ଏଣୁ ଏଇ ଉପନ୍ୟାସର ବର୍ଣ୍ଣିତ ହୋଇଥିବା ଢେଙ୍କାଣୀଳ ଗଡ଼ନାୟକଙ୍କ କନ୍ୟା ଜୟନ୍ତୀ ଅପହରଣ ଓ ତା ସହିତ ବଳବନ୍ତର ପ୍ରଣୟ ଉପାଖ୍ୟାନଟି ଲେଖକଙ୍କ କଳ୍ପନା ପ୍ରସୂତ ବିଷୟ ମନେହୁଏ । ଉପନ୍ୟାସ ବର୍ଣ୍ଣିତ ସ୍ଥାନଗୁଡ଼ିକ ବିଷୟରେ ଲେଖକଙ୍କ ପ୍ରତ୍ୟକ୍ଷ ଅଭିଜ୍ଞତା ଥିଲା । ତେଣୁ ମାଣିକୀର କଖାରୁଆ ବୈଦ୍ୟନାଥଙ୍କ ମନ୍ଦିର, କପ୍ତିପଦା ଗଡ଼, ନୀଳଗିରି ଉଆସ, ପାଞ୍ଚଗଡ଼ ଢେଙ୍କାଣୀଳ ଗଡ଼ନାୟକଙ୍କ ଘର, ଦୁର୍ଯ୍ୟୋଧନର ପ୍ରମୋଦ ଉଦ୍ୟାନ ପ୍ରଭୃତି ଲେଖକ ସଜୀବଭାବେ ବର୍ଣ୍ଣନା କରିଅଛନ୍ତି । ଦେଉଳସାହି ମଠ ଲେଖକଙ୍କ କଳ୍ପନା ପ୍ରସୂତ କି କୌଣସି ଏକ ବାସ୍ତବ ସ୍ଥାନ ତାହା ଜାଣିବା କଷ୍ଟକର । ଶ୍ରୀଯୁକ୍ତ ଗୋକୁଳଚନ୍ଦ୍ର ଶତପଥୀ ଏହା ଦେଉଳିଆ ଗ୍ରାମ ବୋଲି ଅନୁମାନ କରିଛନ୍ତି । "ମାଣିକିରୁ କଇଁସାରି ଅଭିମୁଖେ ଦେଉଳିଆ ବୋଲି ଗୋଟିଏ ଗାଁ ବର୍ତ୍ତମାନ ମଧ୍ୟ ଅଛି । ମାତ୍ର ଏଠାରେ

କୌଣସି ମଠନାହିଁ । ଦେଉଳମାହାର ପ୍ରକୃତ ପରିଚୟ ନ ମିଳିବା ପର୍ଯ୍ୟନ୍ତ ଏହି ଦେଉଳଆକୁ ଦେଉଳମାହା ବୋଲି ଅନୁମାନ କରି-ଯାଇପାରେ ।

(ନବଦ୍ୱାରତ କନ୍ୟା ୧୩୪୮---ଓଡ଼ିଆ ଉପନ୍ୟାସ)

ଉପନ୍ୟାସଟିରୁ ଏକ ଶତାବ୍ଦୀ ପୂର୍ବର ଉତ୍କଳ ସମାଜ ଜୀବନର ସମ୍ୟକ ପରିଚୟ ମିଳିଥାଏ । ରାଜା, ରାଣୀ, ରାଜଅନ୍ତଃପୁର, ନାରୀ ଅବରୋଧ ପ୍ରଥା, କ୍ଷମତାମତ୍ତ ରାଜକର୍ମଚାରୀଙ୍କ ଅଧାର୍ମିକତା, ମୂର୍ଖ କବିରାଜଙ୍କ କାର୍ଯ୍ୟକଳାପ, ନବାଗତ ଡାକ୍ତରୀ ଚିକିତ୍ସା ପ୍ରତି ବିରାଗ, ସିଆରି ଲଇ ଅଗରେ ଅଙ୍ଗାର ବନ୍ଧା ହୋଇଥିବା 'ଗଣ୍ଡି'ଦ୍ୱାରା ପାଇକ ସଂଗ୍ରହ ପ୍ରଥା, 'ଭେଣ୍ଡିଆ ଠାଙ୍ଗର' ପ୍ରଭୃତି ଶବ୍ଦ, ଯୁଦ୍ଧ ସମ୍ପର୍କୀୟ ସାଙ୍କେତିକ ଧ୍ୱନି, ତତ୍କାଳୀନ ସମରସଜ୍ଜା, ବାଉଁଶ ବାଡ଼ଦ୍ୱାରା ଦୁର୍ଗ ଗଡ଼ରେ ଯିବା ପ୍ରଭୃତି ଅନେକ ବିଷୟ ଜଣା-ପଡ଼େ । ସମ୍ଭ୍ରାନ୍ତ ଗୃହର କନ୍ୟାମାନେ ସେତେବେଳେ ଉପଯୁକ୍ତ ଭାବେ ଶିକ୍ଷାପ୍ରାପ୍ତ ହେଉଥିଲେ । 'ଦଶମ ବର୍ଷ ଉତ୍ତୀର୍ଣ୍ଣ ହେବା ପୂର୍ବରୁ ପଦ୍ମମାଳୀ କୋଇଲି, ଗୋପୀଭାଷା, ରାହାସ, ଭାଗବତ ଇତ୍ୟାଦି ଗ୍ରନ୍ଥ ସମାପ୍ତ କରିଥିଲି ।' ତାହାର ବୁଦ୍ଧିର ବିଚକ୍ଷଣତା ଦେଖି ପାଟଦେଈଙ୍କ କୁଳପୁରୋହିତ ପୁରୁଷୋତ୍ତମ ବିଦ୍ୟାରତ୍ନଙ୍କ ବିଶେଷ ଅନୁରୋଧରେ ପାଟଦେଈ ପଦ୍ମମାଳୀକୁ କୌମୁଦୀ, ଅମର, କାବ୍ୟ ନାଟକ ପ୍ରଭୃତି ପଠନ କରାଇଥିଲେ । (୩ୟ ପରିଚ୍ଛେଦ)

ସେଇ ପଦ୍ମମାଳୀର କଠିନ ପୀଡ଼ାବେଳେ ସିଭିଲ ସର୍ଜନଙ୍କୁ ଡକାଇବାର ପ୍ରସ୍ତାବ ହେବାରୁ ମତ ପ୍ରକାଶ ପାଇଲା ଯେ—"କିନ୍ତୁ ତାହା କିପରି ହୋଇପାରେ ? ଗୋ ଶୂକର ଖାଦକ ମ୍ଳେଚ୍ଛ ସାହେବ ଚର୍ମପାଦୁକା ସହିତ ହିନ୍ଦୁ ଗୃହସ୍ଥର ପବିତ୍ର ଅନ୍ତଃପୁର ମଧ୍ୟରେ ପ୍ରବେଶ କରି କୁଳକନ୍ୟାକୁ ତାହାର ବଳିତ ଚକ୍ଷୁରେ ଦେଖି ମଧ୍ୟ

ଓ ମାଂସର ବ୍ୟବସ୍ଥା ଦେବ; ଏହାକ କେବେହେଁ ମଞ୍ଜୁର କରା-ଯାଇପାରେ ।" (୧୩ଶ ପରିଚ୍ଛେଦ)

ଉପନ୍ୟାସଟିରେ ବହୁ ଚରିତ୍ରର ଅବତାରଣା ହୋଇ ଥିଲେହେଁ ଅଳ୍ପ କେତୋଟି ମାତ୍ର ଚରିତ୍ର ଜୀବନ୍ତଭାବେ ଚିତ୍ରିତ । ପଦ୍ମମାଳୀ ଓ ପରୀକ୍ଷିତ ସିଂହହିଁ ଏହି ଉପନ୍ୟାସର ଯଥାକ୍ରମେ ନାୟକ ନାୟିକା । ଏଥିରେ ପାଠକ ପଦ୍ମମାଳୀକୁ ରୂପବତୀ, ନିର୍ଭିକା, ସାହସିନୀ, ବୁଦ୍ଧିମତୀ ଭାବେ; ପରୀକ୍ଷିତଙ୍କୁ ବୀର, ସାହସୀ, ସୁପୁରୁଷ, କ୍ଷାତ୍ର ତେଜୋଦୀପ୍ତ, ଧୈର୍ଯ୍ୟଶୀଳ, ରାଜନୀତିକୁଶଳ, ସୁଶାସକ ଭାବେ ଓ ଦୁର୍ଯ୍ୟୋଧନଙ୍କୁ ଦୁର୍ବୃତ୍ତ, ଚକ୍ରାନ୍ତକାରୀ, ପ୍ରଜାପୀଡ଼କ, ସ୍ୱାର୍ଥପର, କାମୁକ, ନାରୀ-ଧର୍ଷଣକାରୀ ରୂପେ ଓ ମଦନ ହରିହର ରାମାନୁଜ ଦାସଙ୍କୁ ସଦାଶୟ, ପରୋପକାରୀ, ଆଦର୍ଶୋଚିତନିଷ୍ଠ ମାନନୀୟ ବ୍ୟକ୍ତି ଭାବେ ଦେଖିବାକୁ ପାଇଥାଏ । ଅନ୍ୟତମ ପ୍ରେମିକା ଓ ସାହସିନୀ ଜୟନ୍ତୀ ଓ ତାର ମାତୃଜ୍ଞାନ ଧର୍ମାନ୍ଧ ପ୍ରଣୟୀ ବଳବନ୍ତରାୟ ବ୍ୟଙ୍ଗିତ ଲୌହକାର ପୁରୁଷୋତ୍ତମ ସେନାପତି, ରମିଆମା, ଚିତ୍ରଲେଖା, ଜଗବନ୍ଧୁ, ଲକ୍ଷ୍ମଣ ପଣ୍ଡା ପ୍ରଭୃତି ଚରିତ୍ରଗୁଡ଼ିକ ଅତ୍ୟନ୍ତ ନିର୍ଜୀବ, ନିଷ୍ପ୍ରଭଭାବେ ଅଙ୍କିତ । ଲେଖକ ନାରୀ ଚରିତ୍ର ଚିତ୍ରଣରେ ନିଜର ନିପୁଣତାହିଁ ଦେଖାଇ ଅଛନ୍ତି । ଉପନ୍ୟାସଟିରେ ଲେଖକ କଥାବସ୍ତୁର ସ୍ଥୂଳ ବିବରଣୀ ଦେବାକୁ ଯେତେ ଚେଷ୍ଟା କରିଛନ୍ତି, ଚରିତ୍ର ଚିତ୍ରଣ ଆଡ଼କୁ ସେତେ ଦୃଷ୍ଟି ଦେଇ ଥିଲାପରି ମନେ ହୁଏ ନାହିଁ । ସ୍ଥୂଳତଃ ଏହା ଏକ ଘଟଣା ପ୍ରଧାନ ଉପନ୍ୟାସ । ପ୍ରେମିକ ପ୍ରେମିକାଙ୍କ ଚରିତ୍ର ଚିତ୍ରଣରେ ଲେଖକଙ୍କ ଉପରେ ମଧ୍ୟଯୁଗର ଭଞ୍ଜୀୟ କାଳ୍ପନିକ କାବ୍ୟର ପ୍ରଭାବ ପଡ଼ିଅଛି । ଏଥିରେ ଲେଖକ ଚରିତ୍ର ଚିତ୍ରଣ ବା ଚରିତ୍ରମାନଙ୍କ ସୂକ୍ଷ୍ମ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପରିବର୍ତ୍ତେ ଘଟଣା ବହୁଳତା ଓ ତାହାର ରୋମାଞ୍ଚକର ବୈଚିତ୍ର୍ୟ ସମ୍ପାଦନ ଲାଗି

ଅଧିକ ମନୋଯୋଗୀ । ପଦ୍ମମାଳୀ ପଣ୍ଡିତଙ୍କ ପ୍ରେମ, ସେମାନଙ୍କର ଅନ୍ତର୍ଦ୍ୱନ୍ଦ୍ୱ, ବିରହଜନିତ ତୀବ୍ର ବେଦନାବୋଧ; ପଦ୍ମମାଳୀର ସଖି ନିକଟରେ ଆପଣାର ମନୋଭାବ ଜ୍ଞାପନ ପ୍ରାଚୀନ ପ୍ରଣୟ-ପ୍ରଧାନ କାବ୍ୟଗ୍ରନ୍ଥରେ ଲେଖକ ଚିତ୍ରଣ କରିଛନ୍ତି । ଏଣୁ ଏହା କିଞ୍ଚିତ୍ ଅସ୍ୱାଭାବିକ ମନେହୁଏ । ସେ ଯାହାହେଉ ଏକ ଐତିହାସିକ ଘଟଣା ସହିତ ବ୍ୟକ୍ତିଗତ ଜୀବନର ସମ୍ପର୍କ ସ୍ଥାପନ କରି ଓ କେତୋଟି ଚରିତ୍ରର ଅନ୍ତର ରହସ୍ୟ ଉଦ୍‌ଘାଟନ ଲାଗି ମନୋଯୋଗୀ ହୋଇ ଲେଖକ ଉପନ୍ୟାସଟିକୁ ସୁଖପାଠ୍ୟ କରି ପାରିଅଛନ୍ତି । ପଦ୍ମମାଳୀର ଉଦ୍ଧାରକର୍ତ୍ତା, ଉପନ୍ୟାସର ନାୟକଙ୍କୁ 'ଯୁବକ', 'ଅପରିଚିତ ଯୁବକ' ବୋଲି କେବଳ ଅଭିହିତ କରି ଓ ତାଙ୍କ ପରିଚୟ ବିଷୟରେ ପାଠକମାନଙ୍କୁ ଉପନ୍ୟାସର ବହୁ ପରିଚ୍ଛେଦ ପର୍ଯ୍ୟନ୍ତ କୌଣସି ସମ୍ବାଦ ନ ଦେଇ ଲେଖକ ପାଠକମାନଙ୍କ ମନରେ କୌତୁହଳ ଓ ଉତ୍କଣ୍ଠା ଜାତ କରାଇବାକୁ ସମର୍ଥ ହୋଇ ପାରିଛନ୍ତି । ସ୍କଟ୍ ଓ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସରେ ଏହିପରି ନାୟକଙ୍କ ବିଷଦ ପରିଚୟ ସମ୍ପର୍କରେ ହଠାତ୍ ପାଠକମାନଙ୍କୁ ନ ଜଣାଇବା ରୀତି ପରିଲକ୍ଷିତ ହୋଇଥାଏ ।

ଉପନ୍ୟାସଟିରୁ ଲେଖକଙ୍କର ଆଦର୍ଶବାଦିତାର ପରିଚୟ ମିଳିଥାଏ । ଅନ୍ୟାୟକାରୀ ସମୁଚିତ ଦଣ୍ଡ ଲାଭ କରିଛି ଓ ନୀତିନିଷ୍ଠ ବ୍ୟକ୍ତି ଜୀବନରେ ସାଫଲ୍ୟ ମଣ୍ଡିତ ହୋଇଛି ।

"ଯା ମନ ଯେପରି ତା ପାଇଁ ସେପରି ଫଳ ରଖିଥାଏ ବିଧି,
ଉଚ୍ଚମନା ଭବେ ଅମୃତ ଲଭଇ ନୀଚମନା ଲଭେ ବିଷ ।"

(ଗଙ୍ଗାଧର)

ଏହାଙ୍କ ସେ ଯେପରି ବିଭିନ୍ନ ଚରିତ୍ରର ଅନୁପମ ପରିଣତିରୁ ଦେଖାଇ ଦେଇ ଅଛନ୍ତି । ଦୁଷ୍କର୍ମକାରୀ ଦୁର୍ଯ୍ୟୋଧନର ଗୃହ ଦାହ

ହୋଇଛନ୍ତି ଓ ସେ ଅକାଳରେ କାରାଗାରରେ ମୃତ୍ୟୁ ବରଣ କରିଛନ୍ତି । ଦୁର୍ଯ୍ୟୋଧନର ଭୃତ୍ୟ ଏବଂ ଉଦ୍ୟାନବାଟିକାର ରକ୍ଷିକା ତଥା ନାରୀ ନିର୍ଯ୍ୟାତନାର ସହାୟତାକାରିଣୀ ରମିଆମା ମଧ୍ୟ ପୋଡ଼ି ହୋଇ ମରିଛନ୍ତି । ମାତଙ୍ଗିଣୀ ଜୟନ୍ତୀ ଓ ବଳବନ୍ତରଙ୍କ ମିଳନ ସଙ୍ଘଟିତ ହୋଇଛି । ମାତ୍ର ନିର୍ଦ୍ଦୋଷରେ ଦଣ୍ଡିତ ହୋଇଥିବା ପଦ୍ମମାଳୀ ଓ ଜୟନ୍ତୀର ପିତାଙ୍କର କ'ଣ ହେଲା, ତାହା ଉପନ୍ୟାସରେ ବର୍ଣ୍ଣିତ ହୋଇନାହିଁ । ଲେଖକ ତେଣୁ ଘଣ୍ଟଶିଳା ଗଡନାୟକଙ୍କ ମୁହଁରେ କୁହାଇଛନ୍ତି—"ଅତି ସର୍ବତ୍ର ବାଧତେ । ପ୍ରଜା ନେଇ ରାଜା । ଯେଉଁ ରାଜ୍ୟରେ ପ୍ରଜାମାନଙ୍କର ଧନ, ପ୍ରାଣ, ମାନ ମହତ୍ତ୍ୱର ରକ୍ଷାନାହିଁ, ଈଶ୍ୱର କେବେହେଁ ସେ ରାଜ୍ୟର ମଙ୍ଗଳ କରିବେ ନାହିଁ । ଆଉ ଯେଉଁ ଦୁଷ୍ଟ ସେ ସବୁର ମୂଳ ତାହା ମୁଣ୍ଡରେ ରାଧାଚକ୍ର ପଡ଼ିବ ।" (୨୭ଶ ପରିଚ୍ଛେଦର ଉପସଂହାର)

ଔପନ୍ୟାସିକ ଅପେକ୍ଷାକୃତ ଶୁଦ୍ଧ ଓ ମାର୍ଜିତ ଭାଷାରେ ଏହି ଉପନ୍ୟାସଟି ରଚନା କରିଅଛନ୍ତି । ତଥାପି ଲେଖକ ବଙ୍ଗୀୟ ଥିବା ଯୋଗୁ ହେଉ କିମ୍ବା ବଙ୍ଗସାହିତ୍ୟ ପ୍ରଭାବରୁ ହେଉ ଉପନ୍ୟାସର ବାକ୍ୟ ଗଠନ ରୀତିରେ ତଥା ଶବ୍ଦ ପ୍ରୟୋଗରେ ବଙ୍ଗ ଭାଷାର ପ୍ରଭାବ ପରିଲକ୍ଷିତ ହୁଏ । ଗଦ୍ୟରେ ବାରେ ବାରେ, ନିମ୍ନେ, ହାସ୍ୟକାଳେ, ଭୂତଳେ ଏକଶେଷ, ଦଳେ, ଖଣ୍ଡେ, ଜଣେପରିବର୍ତ୍ତେ ଏକଦଳ, ଏକଖଣ୍ଡ, ଏକଜଣ, ବାକ୍ୟବ୍ୟୟ ପ୍ରଭୃତି ଏତାଦୃଶ ବହୁ ଉଦାହରଣ ମିଳିଆପାଇପାରେ । କଥୋପକଥନରେ ମଧ୍ୟ ସର୍ବତ୍ର ସ୍ୱାଭାବିକତା ପରିଲକ୍ଷିତ ହୁଏନାହିଁ । ଯେଉଁଠାରେ ଆବେଗ ପ୍ରକାଶିତ ହେବା କଥା ସେଠାରେ ଭାଷା ମାର୍ଜିତ ଯୁକ୍ତିପୂର୍ଣ୍ଣ ବା କବିତ୍ୱପୂର୍ଣ୍ଣ ହୋଇଅଛି । ଉପନ୍ୟାସର ସ୍ଥାନେ ସ୍ଥାନେ ରଚନାରେ ଅଳଙ୍କାର ଧର୍ମୀ, କାବ୍ୟକଭାଷାର ପ୍ରୟୋଗ ମଧ୍ୟ ପରିଲକ୍ଷିତ

ହୁଏ । ବନ୍ଦିନୀ, ସସ୍ତା ପଦ୍ମମାଳୀ ଚେତନା ଲାଭ କଲାପରେ ଦୁର୍ଯୋଧନ ସହିତ ତର୍କ କରିଛି । ସେପରି ପଦ୍ମମାଳୀ ଦୁର୍ଯ୍ୟୋଧନର ଉଦ୍ୟାନବାଟିକାରେ ବନ୍ଦିନୀ ଥିଲାବେଳେ ସେ ଦୁର୍ଯୋଧନ ସହ ଅନୁତ୍ତେଜିତ ଭାବେ ପ୍ରଥମରୁ ତର୍କ କରିବାରେ ଲାଗିଛି । ଏଣୁ ଏହା ଅସ୍ୱାଭାବିକ ମନେହୁଏ ।

ତଥାପି ଲେଖକଙ୍କର ବର୍ଣ୍ଣନାଶୈଳୀକୁ ପ୍ରଶଂସା ନ କରି ରହି-ହୁଏନାହିଁ । ତତ୍‌କାଳୀନ ଓଡ଼ିଆ ଉପନ୍ୟାସ ରଚନାର ଶୈଶବା-ବସ୍ଥାରେ ସେ ଯେପରି ସୁକୌଶଳରେ ଏକ କଥାବସ୍ତୁକୁ କଳ୍ପନାରେ ଅନୁରଞ୍ଜିତ କରି ପୂର୍ବାପର ସଂଗତି ନେଇ ସରସଭାବେ ବର୍ଣ୍ଣନା କରିଛନ୍ତି ତାହା ପ୍ରକୃତରେ ଲେଖକଙ୍କ ପକ୍ଷେ ଗୌରବର ବିଷୟ । ଉପନ୍ୟାସଟିରେ କୌଣସି ପ୍ରକାର ଅଲୌକିକତା ବା ଦୈବୀ ପ୍ରଭାବ ବା ବିସ୍ମୟକର ଘଟଣା ଉଲ୍ଲିଖିତ ହୋଇନାହିଁ । ପରନ୍ତୁ ବିଷୟ-ବସ୍ତୁର ବାସ୍ତବତାହିଁ ଲେଖକଙ୍କ ଏକମାତ୍ର ଧ୍ୟେୟ ହୋଇଛି । ପଦ୍ମମାଳୀ ସାମ୍ପ୍ରତିକ ଗଳ୍ପାମୋଦୀ ପାଠକମାନଙ୍କୁ ଯେ ପ୍ରଭୂତ ଆନନ୍ଦ ଦେବ ଏଥିରେ ସନ୍ଦେହ ନାହିଁ । ଏଥିରେ ଅତୀତ ଇତିବୃତ୍ତ ବା ସମାଜ ଜୀବନର ଚିତ୍ରାଙ୍କନ ଲେଖକଙ୍କର ଗୌଣ ଅଭିପ୍ରାୟ । ରୋମାଞ୍ଚକର ପ୍ରଣୟ-ପ୍ରଧାନ କାବ୍ୟ କଳ୍ପନା ଓ ଜାତିଗୋଷ୍ଠୀର ଗୌରବ ପ୍ରତିପାଦନହିଁ ଲେଖକଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟ ସାଧନରେ ଉମେଶଚନ୍ଦ୍ର ଯେ ସଫଳତାଲାଭ କରିଛନ୍ତି କହିବା ବାହୁଲ୍ୟମାତ୍ର । ଏକ ଶତାବ୍ଦୀ ପୂର୍ବର ପରିବେଶ ଚିତ୍ରଣରେ ସେ ଯଥେଷ୍ଟ ଦକ୍ଷତା ପ୍ରଦର୍ଶନ କରିବାକୁ ସମର୍ଥ ହୋଇ ନଥିଲେହେଁ ତାଙ୍କର ଏହି ପଦ୍ମମାଳୀହିଁ ପରବର୍ତ୍ତୀମାନଙ୍କୁ ଓଡ଼ିଆ ସାହିତ୍ୟରେ ଦ୍ୱିତୀୟ ଐତିହାସିକ ଉପନ୍ୟାସ ରଚନା କରିବାକୁ ଅନୁପ୍ରେରିତ କରିଅଛି ।

———

# ଫକୀର ମୋହନଙ୍କ କ୍ଷୁଦ୍ର ଗଳ୍ପ

( ୧ )

୧୮୪୩ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସ ମକର ସଂକ୍ରାନ୍ତି ଦିନ ଫକୀର ମୋହନ ବାଲେଶ୍ୱର ସହର ମଧ୍ୟସ୍ଥ ମଲ୍ଲୀକାଶପୁରର ଏକ ହୃତ-ଗୌରବ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେତେବେଳକୁ ଅର୍ଦ୍ଧ ଶତାବ୍ଦୀର ମରହଟ୍ଟା ଶାସନ ଓ ଶୋଷଣର ଅବସାନ ପରେ ଇଂରେଜମାନଙ୍କ ଓଡ଼ିଶା ଅଧିକାର କରିବା ଚାଳିଶ ବର୍ଷ ହୋଇଥାଏ । ଶୋଷଣ, ପୀଡ଼ନ, କୁଶାସନ ଓ ଦୁର୍ବ୍ୟବସ୍ଥା ଯୋଗୁଁ ଓଡ଼ିଶାର ଯାହାକିଛି ମହତ୍ତ୍ୱ, କଲ୍ୟାଣମୟ ତାହା ଜରାଜୀର୍ଣ୍ଣ ଓ ଶ୍ରୀହୀନ ହୋଇ ପଡ଼ିଥିଲା । ପରାଧୀନତା, ଅଜ୍ଞତା, ଅବସାଦ ଓ ଜଡ଼ତା ଯୋଗୁ ସମାଜ ଜୀବନ ହୋଇ ପଡ଼ିଥିଲା ପତନଶୀଳ ଓ କୁସଂସ୍କାର ପୂର୍ଣ୍ଣ । ଠିକ୍ ସେହି ସମୟକୁ ନୂଆକରି ଇଂରେଜୀ ଶିକ୍ଷାର ପ୍ରବର୍ତ୍ତନ ହେଉଥାଏ । କୁଶାସନର ସୁଯୋଗ ନେଇ ଶିକ୍ଷାନୁଷ୍ଠାନମାନଙ୍କରୁ ଓଡ଼ିଆ ସାହିତ୍ୟର ଉଚ୍ଛେଦ ଲାଗି ହୀନତମ ଚକ୍ରାନ୍ତ ମଧ୍ୟ ଚାଲୁଥାଏ । ଓଡ଼ିଆ ଜାତିର ଏହିପରି ଏକ ବିପନ୍ନ ମୁହୂର୍ତ୍ତରେ ଫକୀର ମୋହନଙ୍କ ସାହିତ୍ୟ ସାଧନା ।

ସୁଦୀର୍ଘ ଅର୍ଦ୍ଧଶତାବ୍ଦୀ ବ୍ୟାପି (୧୮୬୮ ରୁ ୧୯୧୮) ସାହିତ୍ୟ ସାଧନାରେ ସଫଳକାମ ସାହିତ୍ୟ-ରଥୀ ସେନାପତି ଫକୀରମୋହନଙ୍କ ଜୀବନ ଓଡ଼ିଆ ସାହିତ୍ୟର ଆତ୍ମରକ୍ଷା ତଥା ଆତ୍ମ-ପ୍ରତିଷ୍ଠାର ଏକ ଗୌରବୋଜ୍ଜ୍ୱଳ ଇତିହାସ କହିଲେ ଚଳେ । ମୃତ୍ୟୁ ବିଜୟୀ ବହୁମୁଖୀ ପ୍ରତିଭା ବଳରେ ସେ ଓଡ଼ିଆ ସାହିତ୍ୟର ଉପନ୍ୟାସ, ଗଳ୍ପ ପ୍ରବନ୍ଧ,

କାବ୍ୟ, କବିତା ଅନୁବାଦ ପ୍ରଭୃତି ପ୍ରତ୍ୟେକ ବିଭାଗରେ ସ୍ୱୀକାଯ୍ୟ ତାଙ୍କ ଅମର ସ୍ୱାକ୍ଷର ରଖିଯାଇ ଅଛନ୍ତି । ସିଦ୍ଧିର ସାର୍ଥକ ପ୍ରକାଶ ସ୍ୱରୂପ ତାଙ୍କର କ୍ଷୁଦ୍ର ଗଳ୍ପଗୁଡ଼ିକର ସ୍ଥାନ ସର୍ବାଗ୍ରେ ନିରୂପିତ ହେବା ସମୀଚୀନ ।

ଫକୀରମୋହନଙ୍କ ପୂର୍ବରୁ ଠିକ୍ ଆଧୁନିକ ଅର୍ଥରେ କ୍ଷୁଦ୍ର ଗଳ୍ପ ଓଡ଼ିଆ ସାହିତ୍ୟରେ ନଥିଲା । ଲୋକମୁଖରେ ପରମ୍ପରା କ୍ରମେ ଚଳି ଆସୁଥିବା କଳ୍ପିତ ରାଜା ରାଣୀ କଥା, ଅଲୌକିକ, ଭୌତିକ, ପୌରାଣିକ ଉପାଖ୍ୟାନ ଓ କିମ୍ବଦନ୍ତୀରୂପରେହିଁ କ୍ଷୁଦ୍ରଗଳ୍ପ ବିଦ୍ୟମାନ ଥିଲା । ଫକୀରମୋହନ ସର୍ବପ୍ରଥମ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ପ୍ରବର୍ତ୍ତକ । ତେଣୁ ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସରେ ଫକୀରମୋହନ ଅନାଦିପୁରୁଷ । ସେ ସର୍ବମୋଟ କୋଡ଼ିଏ ଗୋଟି ଗଳ୍ପରଚନା କରି ଓଡ଼ିଆ ସାହିତ୍ୟରେ ଆଧୁନିକ କ୍ଷୁଦ୍ରଗଳ୍ପର ମାର୍ଗ ନିର୍ଦ୍ଧାରଣ କରି ଯାଇଅଛନ୍ତି । ତାହାଙ୍କ ଲିଖିତ 'ଲଛମନିଆ' ଗଳ୍ପଟି ୧୮୬୮ ମସିହାରେ ବାଲେଶ୍ୱରରୁ ପ୍ରକାଶିତ 'ବୋଧଦାୟିନୀ' ପତ୍ରିକାରେ ପ୍ରକାଶିତ ହୋଇଥିବା ବିଷୟ ସେ ଆତ୍ମଜୀବନୀରେ ଉଲ୍ଲେଖ କରି ଅଛନ୍ତି । ଦୁଃଖର କଥା ଗଳ୍ପଟି ଏ ପର୍ଯ୍ୟନ୍ତ କାହାରି ଗୋଚରୀଭୂତ ହୋଇ ପାରିନାହିଁ । ତାପରେ ଦୀର୍ଘ ତିରିଶ ବର୍ଷ ପରେ ଅର୍ଥାତ୍ ୧୮୯୮ ଖ୍ରୀଷ୍ଟାବ୍ଦରେ ତାଙ୍କର ପ୍ରଥମ ଗଳ୍ପ 'ରେବତୀ' ଉତ୍କଳସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେହିଦିନଠୁ ମୃତ୍ୟୁର ଅବ୍ୟବହିତ ପର୍ଯ୍ୟନ୍ତ କୋଡ଼ିଏ ବର୍ଷ ମଧ୍ୟରେ ତାଙ୍କର ଗଳ୍ପଗୁଡ଼ିକ ରଚିତ । ଉକ୍ତ ଗଳ୍ପଗୁଡ଼ିକ କବିଙ୍କ ଜୀବଦ୍ଦଶାରେ 'ଗଳ୍ପ ସ୍ୱଳ୍ପ' ଶୀର୍ଷକ, ୧ମ ଓ ୨ୟ ଭାଗରେ ବିଭକ୍ତ ହୋଇ ଉତ୍କଳସାହିତ୍ୟ ପ୍ରେସରୁ ୧୯୧୭ରେ ପ୍ରକାଶିତ ହୋଇଥିଲା । ଗଳ୍ପସ୍ୱଳ୍ପର ପ୍ରଥମଭାଗରେ ରେବତୀ, ପେଟେଣ୍ଟ ମେଡିସିନ, ଘେଣ୍ଟାପୁଅ ଅନନ୍ତା, ଗାରୁଡ଼ି ମନ୍ତ୍ର, ଅଧର୍ମ

ବଡ଼, ସଭ୍ୟ ଜମିଦାର, ବଗେଇ ବଣାଳ, ଡାକମୁନ୍‌ସି, ସୁନାବୋହୂ, ଧୂଳିଆ ବାବା ଗଳ୍ପ ସ୍ଥାନ ପାଇଥିଲା ଓ ଅବଶିଷ୍ଟ ୧୦ଟି ଗଳ୍ପ ଗଳ୍ପସ୍ୱଳ୍ପ ୨ୟ ଭାଗର ଅନ୍ତର୍ଭୁକ୍ତ ଥିଲା । ନିମ୍ନରେ କାଳାନୁକ୍ରମେ ଗଳ୍ପଗୁଡ଼ିକର ପ୍ରକାଶନ ବର୍ଷ ପ୍ରଦତ୍ତହେଲା । ଗଳ୍ପ-ସ୍ୱଳ୍ପ ୨ୟ ଭାଗରେ ସନ୍ନିବେଶିତ 'ବାଲେଶ୍ୱରୀ ପଙ୍ଗାଲୁଣ' ରଚନାଟି ଗୋଟିଏ ପ୍ରବନ୍ଧ ମାତ୍ର । ଅନବଧାନତାବଶତଃ ଏହା ହୁଏତ ଏହି ଗଳ୍ପସଂଗ୍ରହର ଅନ୍ତର୍ଭୁକ୍ତ ହୋଇଥିଲା ।

| ଗଳ୍ପର ନାମ | କେଉଁପତ୍ରିକାରେ ପ୍ରଥମେ ପ୍ରକାଶିତ | ସମୟ |
|---|---|---|
| ୧ । ଲଛମନିଆ | ବୋଧଦାୟିନୀ | ୧୮୬୮ (?) |
| ୨ । ରେବତୀ | ଉତ୍କଳ ସାହିତ୍ୟ ୨ୟ ଭାଗ ୧୦ମ ସଂଖ୍ୟା (ଧୂର୍ଜଟୀ ଛଦ୍ମନାମରେ) | ୧୮୯୮ ମସିହା |
| ୩ । ବାଲେଶ୍ୱରୀ ଗହାଜାମା | ମୁକୁର ୨ୟ ଭାଗ ୪ର୍ଥସଂଖ୍ୟା ('ଶ୍ରୀ' ଛଦ୍ମ ନାମରେ) | ୧୯୦୫ ,, |
| ୪ । ମୌନାମୌନୀ | ମୁକୁର ୨ୟ ଭାଗ ୨ୟ ସଂଖ୍ୟା | ୧୯୦୫ ,, |
| ୫ । ବାଲେଶ୍ୱରୀ ପଙ୍ଗାଲୁଣ | ମୁକୁର ୨ୟ ଭାଗ ୬ଷ୍ଠ ସଂଖ୍ୟା | ,, |
| ୬ । ପୁନର୍ମୂଷିକୋଭବ | ମୁକୁର ୭ମ ଭାଗ ,, ୧୨ଶ ସଂଖ୍ୟା | ୧୯୧୦ ,, |

୭ । ଡାକମୁନ୍‌ସି ମୁକୁର ୧୯ସାଲ
୭ମ ସଂଖ୍ୟା ୧୯୧୨ ,,
୮ । ଗଣ୍ଡି ପୁଅ ଅନନ୍ତା ୧୯୧୩ ,,
୯ । କମଳାପ୍ରସାଦ ଗୋଖପ ଉତ୍କଳସାହିତ୍ୟ
୧୭ଶ ଭାଗ ୧୯୧୪ ,,
୧୦ । କାଳକାପ୍ରସାଦ ଗୋଖପ ,, ,, ,,
୧୧ । ବିରେଇ ବିଶାଳ ,, ,, ,,
୧୨ । ସଭ୍ୟ ଜମିଦାର ,, ,, ,,
୧୩ । ପେଟେଣ୍ଟ ମେଡ଼ିସିନ ,, ,, ,,
୧୪ । ବଗୁଲି ବଗୁଲି ,, ୧୮ଶ ଭାଗ
୧ମ ସଂଖ୍ୟା ୧୯୧୬ ,,
୧୫ । ପାଟେଠାଇ ବୋହୂ ମୁକୁର ୧୩୨୨ ସାଲ ବା ୧୯୧୬ ,,
୧୬ । ଅଜାନାଙ୍କ କଥା ଉତ୍କଳସାହିତ୍ୟ ୧୯ ଭାଗ
୧ମ ସଂଖ୍ୟା ୧୯୧୭ ,,
୧୭ । ଅଧର୍ମ ବିତ୍ତ ,, ୧୯ଶଭାଗ ୫ମ ସଂଖ୍ୟା ,, ,,
୧୮ । ମାଧମହାନ୍ତିଙ୍କ କନ୍ୟାସୁନା ,, ,, ୭ମ ,, ,, ,,
୧୯ । ଗାରୁଡ଼ ମନ୍ତ୍ର ,, ୨୦ଶଭାଗ ୮ମ ,, ,, ,,
୨୦ । ସୁନାବୋହୂ
୨୧ । ଧୂଳିଆ ବାବା

ଏତଦ୍‌ବ୍ୟତୀତ ଫକୀରମୋହନ ଆଉ କେତୋଟି ଗଳ୍ପ ଲେଖିଥିବା ସମ୍ଭବ । ତା ୪।୪।୧୭ ଖରେ ବାଲେଶ୍ୱରରୁ ଫକୀରମୋହନ ଖଣ୍ଡିଏ ପତ୍ର 'ଉତ୍କଳସାହିତ୍ୟ' ସମ୍ପାଦକ ଶ୍ରୀ ବିଶ୍ୱନାଥ କରଙ୍କୁ ଲେଖିଥିଲେ । ସେଥିରୁ ସେ 'ବିଷମଞ୍ଜି' ନାମକ ଗୋଟିଏ ଗଳ୍ପ ୨୫ ପୃଷ୍ଠା ପର୍ଯ୍ୟନ୍ତ ଲେଖି ସାରିଛନ୍ତି ଓ ଉକ୍ତ ଗଳ୍ପଟି ପ୍ରାୟ

୫୦ ପୃଷ୍ଠା ପର୍ଯ୍ୟନ୍ତ ହୋଇପାରେ ବୋଲି ଉଲ୍ଲେଖ କରିଛନ୍ତି । ସେହି ଗଳ୍ପଟିକୁ ସେ ଉପନ୍ୟାସରେ ରୂପାୟିତ କରିଥିଲେ କି ନାହିଁ ଓ ତାହାର ପାଣ୍ଡୁଲିପିର କି ପରିଣତି ଘଟିଲା ତାହା ମଧ୍ୟ ଏ ଯାବତ ଅଜ୍ଞାତ । *

ଗଳ୍ପ, ଉପନ୍ୟାସ ରଚନାହିଁ ଫକୀରମୋହନଙ୍କ ସ୍ୱଧର୍ମ । ମାତ୍ର ଏହାର ସୃଷ୍ଟି ବହୁ ବିଳମ୍ବରେ ଘଟିଛି । ଘଟଣାବହୁଳ ଜୀବନର ପରିପକ୍ୱ ଅଭିଜ୍ଞତା ନେଇ ୫୦ ବର୍ଷ ବୟସ ପରେ ଫକୀରମୋହନ ଗଳ୍ପ ରଚନାରେ ବ୍ରତୀ ହୋଇଥିଲେ । ତେଣୁ ସେଗୁଡ଼ିକରେ ଫକୀର-ମୋହନଙ୍କର ମାନବ ଚରିତ୍ର ସମ୍ପର୍କରେ ସୁଗଭୀର ନିପୁଣ ଅଭିଜ୍ଞତା ଓ ତାହାର ଅନୁପମ ପ୍ରକାଶ ଭଙ୍ଗୀର ପରାକାଷ୍ଠା ପ୍ରତିଫଳିତ । ଗଳ୍ପଗୁଡ଼ିକ କବିଙ୍କ ସାହିତ୍ୟ ସେବାର ସର୍ବୋଚ୍ଚ ନିଦର୍ଶନ ଓ ଓଡ଼ିଆ ସାରସ୍ୱତ ପୀଠରେ କବିଙ୍କ ସର୍ବୋତ୍କୃଷ୍ଟ ଅଞ୍ଜଳି ଭଳି ମନେହୁଏ । ଗଳ୍ପଗୁଡ଼ିକ ସ୍ୱକୀୟତାସମ୍ପନ୍ନ ଓ କଥାବସ୍ତୁ, ଚରିତ୍ର ସୃଷ୍ଟି ଓ ରଚନା ଶୈଳୀ ଦୃଷ୍ଟିରୁ ପ୍ରତ୍ୟେକଟି ଗଳ୍ପ ଅନ୍ୟ ଗଳ୍ପଠାରୁ ସ୍ୱତନ୍ତ୍ର ।

ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ କ୍ଷୁଦ୍ରଗଳ୍ପର ରଚନା ରୀତି, ଆଙ୍ଗିକ ବିଷୟରେ ବହୁ ଆଲୋଚନା ହୋଇଗଲାଣି; କ୍ଷୁଦ୍ରଗଳ୍ପର ସ୍ୱରୂପ ଓ ତତ୍ତ୍ୱ ବିଷୟରେ ଓଡ଼ିଆ ଲେଖକ ଓ ପାଠକ ବୃନ୍ଦ ଆଜି ସଚେତନ । ମାତ୍ର ଫକୀରମୋହନ ଯେଉଁ ସମୟରେ ଗଳ୍ପରଚନାରେ ମନୋନିବେଶ କରିଥିଲେ ସେତେବେଳେ କ୍ଷୁଦ୍ରଗଳ୍ପ ବିଷୟରେ କୌଣସି ଧାରଣା ଓଡ଼ିଆ କାହିଁକି ସମଗ୍ର ଭାରତୀୟ ପ୍ରାଦେଶିକ ସାହିତ୍ୟିକମାନଙ୍କ ମଧ୍ୟରେ ପ୍ରାୟ ଜାତ ହୋଇ ନଥିଲା କହିଲେ

---

*ଫକୀରମୋହନ ସମୀକ୍ଷା—ପରିଶିଷ୍ଟ ପୃ ୧୭୪ ଦ୍ରଷ୍ଟବ୍ୟ ।

ଚଳେ । ସେଥିପାଇଁ ଫକୀରମୋହନଙ୍କ ଗଳ୍ପଗୁଡ଼ିକରେ ସ୍ଥାନେ ସ୍ଥାନେ ଉପନ୍ୟାସ ସୁଲଭ ବିସ୍ତୃତ, ପୁଙ୍ଖାନୁପୁଙ୍ଖ ଚିତ୍ରଣଧର୍ମୀ ବର୍ଣ୍ଣନା, ବହୁ ଅପ୍ରଧାନ ଚରିତ୍ରର ଅନୁପ୍ରବେଶ ଦେଖିବାକୁ ମିଳିଥାଏ । ତା ଛଡ଼ା ପ୍ରବନ୍ଧ ଓ ଗଳ୍ପର ସୀମାରେଖା ମଧ୍ୟ ଫକୀରମୋହନଙ୍କ ଅନେକ ଗଳ୍ପରେ ସୁସ୍ପଷ୍ଟ ହୋଇପାରି ନାହିଁ; ଅର୍ଥାତ୍ ଗଳ୍ପର ଭାଷା ଓ ବର୍ଣ୍ଣନା ଭଙ୍ଗୀ ମଧ୍ୟରେ ସ୍ଥାନେ ସ୍ଥାନେ ପ୍ରବନ୍ଧସୁଲଭ ତଥ୍ୟ-ବିଜ୍ଞପ୍ତି ମଧ୍ୟ ଦେଖିବାକୁ ମିଳିଥାଏ ।

ରବୀନ୍ଦ୍ରନାଥଙ୍କ ସୁପ୍ରସିଦ୍ଧ କଥା ସଂଗ୍ରହ 'ଗଳ୍ପଗୁଚ୍ଛ' (୧ମଭାଗ-ପ୍ରଥମ ପ୍ରକାଶ ୧୩୦୭ ସାଲ) ଓ 'ରେବତୀ' ପ୍ରାୟ ସମକାଳରେ ପ୍ରକାଶିତ । ତଥାପି ଫକୀରମୋହନଙ୍କ ଗଳ୍ପଗୁଡ଼ିକ ସମସ୍ତ ପ୍ରକାର ପ୍ରଭାବମୁକ୍ତ ଓ ଭାଷା, ଭାବ, ରଚନାଶୈଳୀ ଓ କଥାବସ୍ତୁ ଦୃଷ୍ଟିରୁ ଏକାନ୍ତ ଭାବେ ନିଜସ୍ୱ ଓ ତାଙ୍କର ମୌଳିକ ପ୍ରତିଭାର ବିଶେଷ ଧର୍ମରେ ଅନୁରଞ୍ଜିତ । ନିଜ ଗଳ୍ପ ଲେଖାର ହେତୁ, ଉଦ୍ଦେଶ୍ୟ ଓ ଆଦର୍ଶ ସମ୍ପର୍କରେ ତାଙ୍କର 'ଅଜା ନାତି କଥା'ଟି ଉଲ୍ଲେଖ ଯୋଗ୍ୟ ।

ଅଜା ରାମ ହରିବେଣୀ ଓ ନାତି ଗଣପତି ମଧ୍ୟରେ କଥୋପ-କଥନ ଛଳରେ ଏହି ଗଳ୍ପଟି ଲିଖିତ । 'ମୌନାମୌନୀ' ଗଳ୍ପଟି ଉତ୍କଳ ସାହିତ୍ୟରେ ପ୍ରକାଶିତ ହେଲା ପରେ ଏହା ଲିଖିତ । ସେତେବେଳେ ପତ୍ରିକାରେ ପ୍ରକାଶିତ ଗଳ୍ପଗୁଡ଼ିକୁ ବହୁପୁରୁଣା-କାଳିଆ ପାଠକ ସତ୍ୟ ଘଟଣା ବୋଲି ଗ୍ରହଣ କରୁଥିଲେ । ସେହି ଭ୍ରାନ୍ତ ଦୂର କରିବା ଅଭିପ୍ରାୟରେ ଏହି ଗଳ୍ପଟି ଲିଖିତ । ଗଣପତି ମୁଖରେ କ୍ଷୁଦ୍ରଗଳ୍ପ ପ୍ରସଙ୍ଗରେ ତେଣୁ ଫକୀରମୋହନ କୁହାଇଛନ୍ତି-"ନାହିଁ ଅଜା, ସେଗୁଡ଼ାକ ମିଛନୁହେଁ, ମନୁଷ୍ୟ ଯେତେ ରକମ କାର୍ଯ୍ୟ କରିପାରେ, କଥା ଛଳରେ ସେଇ ଚରିତ୍ର ବର୍ଣ୍ଣନା କରାଯାଉଛି ।

× × × ×

ଜାଣିଥ ଅଜା ପୁରାଣ ବୋଲ, କି 'ଉପନ୍ୟାସ ବୋଲ, କି ଗଳ୍ପ ବୋଲ, ଲୋକ ଶିକ୍ଷାଲାଗି କବିମାନେ ଏହିପରି ଲେଖି ଯାଇଛନ୍ତି ।" ଏହି ରଚନାଟି ଗଳ୍ପାକାରରେ ରଚିତ କ୍ଷୁଦ୍ର ଗଳ୍ପ ସୃଷ୍ଟି ସମ୍ପର୍କୀୟ ଏକ ତାତ୍ତ୍ୱିକ ଆଲୋଚନା ମାତ୍ର । ଏହାକୁ ସରସ କରିବାଲାଗି ଲେଖକ ଗଣପତି ମୁଖରେ କେତେକ ପୌରାଣିକ, ଅଲୌକିକ ଘଟଣା ଓ ଚରିତ୍ରର ଉଲ୍ଲେଖ କରାଇ ଅଛନ୍ତି ।

( ୨ )

ବର୍ତ୍ତମାନ ପ୍ରସଙ୍ଗ କ୍ରମେ ତାଙ୍କର ଅନ୍ୟାନ୍ୟ ଗଳ୍ପଗୁଡ଼ିକର ସଂକ୍ଷିପ୍ତ କଥାବସ୍ତୁ ବିଷୟ ଏଠାରେ ଆଲୋଚ୍ୟ ।

**ରେବତୀ**--ଗଳ୍ପଟି ସମାଜର ଏକ ନିମ୍ନ ମଧ୍ୟବିତ୍ତ ପରିବାରର ଦୁଃଖ-ସୁଖ, ଆସକ୍ତି ଅନୁରାଗ ଏବଂ ଆକସ୍ମିକ ଦୁର୍ଘଟଣାରେ ମ୍ରିୟମାନ ଅନାଥ ଅବସ୍ଥାର ଜୀବନ୍ତ ଅଭିବ୍ୟକ୍ତି । ଗଳ୍ପଟିରେ ଏକ ପ୍ରଚଣ୍ଡ ବ୍ୟର୍ଥତା ମୂର୍ତ୍ତିମନ୍ତ ହୋଇଉଠିଛି । ରେବତୀର ଯୁବକ ବାସୁଦେବ ପ୍ରତି ଆକର୍ଷଣ ଓ ଶିକ୍ଷାନୁରାଗ ବିକଶିତ ନ ହେବା ପୂର୍ବରୁହିଁ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇ-ଯାଇଛି । ରେବତୀରୂପକ ପଲ୍ଲୀପୁଷ୍ପଟି ବିକଶିତ ହେବା ପୂର୍ବରୁହିଁ ଅକାଳରେ ଝଡ଼ିଯାଇଛି । ଶ୍ୟାମବନ୍ଧୁଙ୍କ ପାରିବାରିକ ଶାନ୍ତିମୟ ଜୀବନ ମଧ୍ୟ ସକରୁଣ ଅସହାୟତାରେ ପରିଣତ । ରେବତୀର ଅନ୍ତିମ ଅସହାୟତାକୁ ଆହୁରି ସଜୀବ କରିବା ଲାଗି ଲେଖକ ଗଳ୍ପ ଆରମ୍ଭରେ ଶ୍ୟାମବନ୍ଧୁର ଶାନ୍ତିମୟ ପାରିବାରିକ ଜୀବନର ଚିତ୍ର

ଦେଇ ଅଛନ୍ତି—ଏହି ବୈପରୀତ୍ୟହିଁ ଗଳ୍ପଟିକୁ ଉଚ୍ଚାଙ୍ଗ ଶିଳ୍ପରେ ପରିଣତ କରିଛି । ଗଳ୍ପଟିର ରସୋତ୍ତୀର୍ଣ୍ଣତା ସମ୍ବନ୍ଧେ ସମସ୍ତେ ପ୍ରାୟ ଏକମତ । ଗଳ୍ପଟିର ଅନ୍ୟତମ ଚରିତ୍ର ବୃଦ୍ଧ ସେଯିମା ଚରିତ୍ରା-ଙ୍କନରେ କବିଙ୍କର ସ୍ୱୀୟ ଠାକୁରମା କୋଚିଲ୍ଙ୍କ ଜୀବନସ୍ମୃତି ବିଜଡ଼ିତ ଥିଲାପରି ମନେହୁଏ । "ଠାକୁମା ତ ଏକପ୍ରକାର ସନ୍ୟାସିନୀ, ଉଦାସୀନା । × × × ତାଙ୍କର ଗୋଟିଏ କଥା—ପାଠ କଣ ହେବରେ, ବଣ୍ଟ ବର୍ତ୍ତି ପଢ଼ିଆ" (ସେନାପତିଙ୍କ ଆତ୍ମଚରିତ—ଉତ୍କଳ ସାହିତ୍ୟ ୨୨ଶ ଭାଗ ୯ମ ସଂଖ୍ୟା) ତା'ଛଡ଼ା ଫକୀର-ମୋହନଙ୍କ କନ୍ୟା ସରୋଜମାହିଁ ବାଲେଶ୍ୱରର ପ୍ରଥମ ସ୍କୁଲ୍ ଶିକ୍ଷା-ପ୍ରାପ୍ତା ନାରୀ ।

**ପେଟେଣ୍ଟ ମେଡ଼ିସିନ**—ସାନ୍ତାଣୀ ସୁଲୋଚନା ଏହି ଗଳ୍ପଟିର ପ୍ରଧାନ ଚରିତ୍ର । ତାଙ୍କର ଚରିତ୍ର ଉପରେହିଁ ଲେଖକ ଅଧିକ ଆଲୋକ ସମ୍ପାତ କରିଛନ୍ତି । ଆଶ୍ଚର୍ଯ୍ୟ ତାଙ୍କର ସହିଷ୍ଣୁତା, ଅସୀମ ତାଙ୍କର ଧୈର୍ଯ୍ୟ ! ସ୍ୱାମୀ ଚନ୍ଦ୍ରମଣିବାବୁଙ୍କ ସବୁ ଅବଗୁଣ କୁଅଭ୍ୟାସ ଓ ବାରାଙ୍ଗନାସକ୍ତିକୁ ସେ ସହ୍ୟ କରିଛନ୍ତି । ଅଥଚ ସ୍ୱାମୀଙ୍କ ଲାଗି କେତେ ମମତା ତାଙ୍କ ହୃଦ ତଳରେ ସଞ୍ଚିତ ! ତାଙ୍କୁ ସୁପଥକୁ ଆଣିବାଲାଗି ତାଙ୍କର କି ସାଧନା, କି ଆକୁଳତା ! "ନିଶା ଗୁଡ଼ାକର କ'ଣ ଜଣା ଗୁଣ ? ପୃଥିବୀଯାକ ବେମାର ଦେହରେ । ଏଣେ ତିନ ତିନ ଯାଗା ଗୃହଦାହ ହେଲା—ଗଲା । ଲୋକେ କେତେ ଛି ଛିକର କରୁଛନ୍ତି—କେତେ ଟଙ୍କା ବରବାଦ କରିଦେଲ ! ଗଲା ଯାଉ ଗୃହକରି—ଯାଉ ଟଙ୍କା, ଯାହା ହେବାର ତ ହୋଇଗଲା, ଏଣିକି ଦେହଟା ଭଲ ସୁଧୁରିଯାଉ । ଗୃହମାସ କାଳ ଜଗି ଜଗି ଟିକିଏ ଭଲ କରିଥିଲି—ନିଶାଗୁଡ଼ାକ ଛାଡ଼ିବାରୁ ଟିକିଏ ଭଲଥିଲ—ପୁଣି ତା'ହାରି କଣ ପୁରୁଣା ଫିସାଦଟାଏ ବାହାରିଲାଣି !"

ଅଥଚ ଏପରି ସ୍ୱାଭିମାନିଣୀ, ଅନୁଗତା ସ୍ତ୍ରୀକୁ ଉପେକ୍ଷା କରି ଚନ୍ଦ୍ରମଣିବାବୁ ଯାଇଛନ୍ତି ବାରାଙ୍ଗନା ଊଷମାନତାର ନିକଟକୁ । ଅନ୍ତରିକ୍ତ ସ୍ୱାମୀ ଆନୁଗତ୍ୟହିଁ ବୁଦ୍ଧିମତୀ ସୁଲୋଚନାଙ୍କର ପ୍ରତାରିତା ହେବାର ହେତୁ । ତା'ପରେ ଏକ ହାସ୍ୟକର ଅଥଚ ସୁଲୋଚନାଙ୍କ ପକ୍ଷେ ମର୍ମାନ୍ତକ କରୁଣ ଆକସ୍ମିକ ପରିସ୍ଥିତି ମଧ୍ୟରେ ତାଙ୍କର ଭ୍ରମଭଞ୍ଜନ ହୋଇଛି । ତତୋଧିକ ଆକସ୍ମିକ ଭାବରେ ସେ ଆବିଷ୍କାର କରିଛନ୍ତି 'ପେଟେଣ୍ଟ ମେଡ଼ିସିନ' । ଧୈର୍ଯ୍ୟ, ସହିଷ୍ଣୁତାର ବନ୍ଧ ଭାଙ୍ଗିଯାଇଛି; ନାରୀର ଆଦିମ ହିଂସ୍ର ରୂପରେ ଦେଖା ଦେଇଛନ୍ତି ପ୍ରହାରିଣୀ ସମ୍ମାର୍ଜ୍ଜନୀହସ୍ତା ସୁଲୋଚନା··· । ତା'ପରେ ପୁଣି ନିଜ କୃତ କର୍ମଲାଗି କେତେ ଅନୁଶୋଚନା – "ହେ ଠାକୁର ଦେବତା-ମାନେ ! ମୋତେ କ୍ଷମାକର, ମୋ ଦେବତା ସ୍ୱାମୀକୁ ବାଡ଼େଇଛି, ବଡ଼ ଅପରାଧ କରିଛି, ଦୋଷ କ୍ଷମାକର, ଆଉ ମୋ ସ୍ୱାମୀକୁ ସୁବୁଦ୍ଧି ଦିଅ ।" ତା'ପରେ ଚନ୍ଦ୍ରମଣିବାବୁଙ୍କର ଯଥାର୍ଥତଃ ସୁବୁଦ୍ଧି ଜାତ ହୋଇଛି । ଗଳ୍ପଟି ହାସ୍ୟରସବହୁଳ ଓ ରଚନାରୀତି ଦୃଷ୍ଟିରୁ ନିର୍ଦ୍ଦୋଷ । ଏକ ପରିଣାମ ସଂପନ୍ନ କଥାବସ୍ତୁ ଏବଂ ତହିଁର ଉଦ୍ଦେଶ୍ୟ ଓ ଭାବ (effect)ରେ ନିବିଡ଼ ଐକ୍ୟ ଗଳ୍ପଟିରେ ବିଦ୍ୟମାନ ।

**ରାଣ୍ଡୀପୁଅ ଅନନ୍ତା**—ଭାର୍ଗବୀ କୂଳ ବିନୋଦବିହାରୀପୁର ଗାଁର ସୁବଳ ମହାକୁଡ଼ ମଇଁଷି ଚରାଏ । ତା'ର ପ୍ରାତ୍ୟହିକ ଜୀବନ-ଯାପନ ପ୍ରଣାଳୀ ବଡ଼ ଅଦ୍‌ଭୁତ, ଆଦିମ, ବନ୍ୟ ଓ ଅମାର୍ଜିତ । ତା'ର ପତ୍ନୀ ମହାକୁଡ଼ାଣୀ ଓରଫ ସଂହାରୀ ମଧ୍ୟ ଅନୁରୂପ । ଉଭୟଙ୍କ ଶକ୍ତି ସାମର୍ଥ୍ୟ ଓ ସାହସିକତାର ପଟାନ୍ତର ନାହିଁ । ସେମାନଙ୍କ ଏକମାତ୍ର ସନ୍ତାନ 'ଅନ୍ତୁ' ବା ଅନନ୍ତା ପିତାମାତାଙ୍କ ଉପଯୁକ୍ତ ଗୁଣ ଧର୍ମ ଉତ୍ତରାଧିକାର ସୂତ୍ରେ ଲାଭ କରିବା ଏକାନ୍ତ

ସ୍ୱାଭାବିକ । ଅନନ୍ତା ସମସ୍ତ ସଂସ୍କାର ମୁକ୍ତ, ଶାନ୍ତ-ଶୃଙ୍ଖଳାହୀନ ଓ ଭାର୍ଗବୀ ବଢ଼ିର ପାଣି ସୁଅଭଳି ସ୍ୱାଧୀନ ପ୍ରଚଣ୍ଡ ଓ ଦୁର୍ଦ୍ଦମନୀୟ । ଗ୍ରାମର ଅବଧାନ ତାକୁ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରି ବ୍ୟର୍ଥ, ଉପହସିତ ହୋଇଛନ୍ତି । ଶେଷରେ ଭାର୍ଗବୀର ଉଦ୍ଦାମ ଜଳଧାରା ମଧ୍ୟ ରାଣ୍ଡିପୁଅ ଅନନ୍ତା ନିକଟରେ ପରାଜୟ ସ୍ୱୀକାର କରିଛି । ବନ୍ୟା ପ୍ଲାବନର ନିଶ୍ଚିତ ବିପଦରୁ ରକ୍ଷା ପାଇଛି ବିନୋଦବିହାରୀପୁର । 'ସମସ୍ତେ କହୁଛନ୍ତି ଧନ୍ୟ ଧନ୍ୟ ରାଣ୍ଡୀପୁଅ ଅନନ୍ତା ।' ଏହି ଛୋଟିଆ ଅନୁପମ ବାଳକ୍ତ ଚରିତ୍ର ଓ ସେମାନଙ୍କ ଜୀବନର ବହୁ ବିଚିତ୍ର ଘଟଣାର ପରିକଳ୍ପନା କରି ଫକୀରମୋହନ ଅପୂର୍ବ ସୃଜନ ଶକ୍ତିର ପରିଚୟ ଦେଇଯାଇ ଅଛନ୍ତି । ଫକୀରମୋହନଙ୍କ ଗଳ୍ପମାନଙ୍କ ମଧ୍ୟରେ ଏହି ଗଳ୍ପଟି ପ୍ରସିଦ୍ଧତମ । ଗଳ୍ପଟିର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପାଠକ କୌତୁହଳ, ବିସ୍ମୟ, ଲଘୁହାସ୍ୟ ଓ ମର୍ମସ୍ପର୍ଶୀ କାରୁଣ୍ୟର ତରଙ୍ଗଦୋଳାରେ ନିୟତ ଦୋଳାୟିତ ହୋଇ ଗ୍ଳୁଥାଏ । ଏହାହିଁ ଗଳ୍ପଟିର ପରମ ବିଶେଷତ୍ୱ ।

**ଗାରୁଡ଼ମନ୍ତ୍ର**—ନବ ବିବାହିତ ଶିକ୍ଷିତ, ଲଜ୍ଜାଶୀଳ ଯୁବକ ମଦନଙ୍କ ଭାରି ଇଚ୍ଛା ବୋହୂ ମୋହିନୀକୁ ଭଲକରି ପଢ଼ାଇବେ; ସବୁବେଳେ ଦୁଇଜଣ ବସି କଥାଭାଷା ହେବେ—ସଞ୍ଜବେଳେ ତୋଟାରେ ବୁଲିବେ—ମାତ୍ର ସେ ନିରୁପାୟ । ବୋହୂ ସାଙ୍ଗରେ ଆସିଥିବା ପଦ୍ମା ନାମ୍ନୀ ଦାସୀଟି ସର୍ବଦା ବୋହୂ ସାଙ୍ଗେ ସାଙ୍ଗେ ଲାଗି ରହିଛି, କ'ଣ ମନ୍ତ୍ର ପଢ଼ାଉଛି, ସେହି ମୂର୍ଖ ବୋହୂଟା ବି ଆଖି ଫିଟାଉନାହିଁ କି କଥା କହୁନାହିଁ । କଲେଜ ଶିକ୍ଷାପ୍ରାପ୍ତ ଯୁବକ ମଦନ ଏହି ଅଶିକ୍ଷିତାଙ୍କ ବିରୁଦ୍ଧରେ ଗାରୁଡ଼ମନ୍ତ୍ର ପ୍ରୟୋଗ କରିଛନ୍ତି । ଫଳରେ ପଦ୍ମା ତାର ସ୍ୱଗ୍ରାମକୁ ପ୍ରତ୍ୟାଗମନ କରିଛି,

ମୋହିମାର କୃତ୍ରିମ ଅନ୍ତ-ଲଜ୍ଜାଶୀଳତା ଅପସାରିତ ହୋଇଯାଇଛି । ଗଳ୍ପଟିର ପ୍ରାରମ୍ଭରେ ଅଜାଙ୍କ ଉପସ୍ଥିତି ଅନାବଶ୍ୟକ । ବିଶଦଭାବେ ବର୍ଣ୍ଣିତ ଅଜା ନାତି ପ୍ରସଙ୍ଗଟିକ ବାଦ୍ ଦେଇଥିଲେ ବି ଗଳ୍ପଟିର ଅଙ୍ଗହାନି ହୋଇ ନଥାନ୍ତା । ତଥାପି ଲେଖକଙ୍କ ସରସ ସ୍ୱାଭାବିକ ବର୍ଣ୍ଣନା ଭଙ୍ଗୀଯୋଗୁ ଏହି ଅନାବଶ୍ୟକ ପର୍ଯ୍ୟାୟଟି ମଧ୍ୟ ସୁଖ ପାଠ୍ୟ ଓ ମନୋରମ ହୋଇପାରିଛି ।

**ଅଧର୍ମବିତ୍ତ**—ଗଠନଗତ ଦୃଷ୍ଟିରୁ ଗଳ୍ପଟି ତ୍ରୁଟିପୂର୍ଣ୍ଣ । କୁବେର ସାହୁଙ୍କ ସମ୍ପର୍କରେ ବୁଢ଼ା ହନେଇ ମହାପାତ୍ରେ କହିଛନ୍ତି, 'ଅଧର୍ମବିତ୍ତ ବଢ଼େ ବହୁତ ଗଲବେଳେ ଯାଏ ମୂଳ ସହିତ,' ଆଉ ତା'ପରେ ପଇତା ଛୁଇଁ କହିଛନ୍ତି—'ଆଜିଠୁଁ ୩ ପକ୍ଷ, ୩ ମାସ, ୩ ବର୍ଷ ମଧ୍ୟରେ ତା'ର ସର୍ବନାଶ ହେବ ।' ଆକସ୍ମିକଭାବେ ଏହା ସତ୍ୟରେ ପରିଣତ ହୋଇଛି । କୁବେର ସାହୁର ସୁଯୋଗ୍ୟ ଗୁଣବନ୍ତ ପୁତ୍ର ବିଦ୍ୟାଧରର ବିବାହ ବୌଦ ହରିପୁରର ଯୁଧିଷ୍ଠିର ସାହୁଙ୍କ କନ୍ୟା ପଦ୍ମାବତୀ ସହ ସ୍ଥିରୀକୃତ । ବିବାହ ବି ନିର୍ବିଘ୍ନରେ ଶେଷ ହେଲା । ଇତ୍ୟବସରରେ କୁବେର ସାହୁର ସ୍ତ୍ରୀ ଦୁରାରୋଗ୍ୟ ରାଜଯକ୍ଷ୍ମା ରୋଗଗ୍ରସ୍ତା ହୋଇଛନ୍ତି । ତା'ପରେ ବହୁ ମୂଲ୍ୟବାନ ଉପକରଣ ସହ ୧୦ଟି ଯୌତୁକ ନାଆ ଓ କୁବେର ସାହୁ କୋଠିର ବାଣିଜ୍ୟଦ୍ରବ୍ୟ-ପୂର୍ଣ୍ଣ ୩୦ଟି ନାଆ ମହାନଦୀରେ ଆସୁ ଆସୁ ପ୍ରବଳ ଝଡ଼ ତୋଫାନରେ ପଡ଼ି ସଲିଳ ସମାଧି ଲଭିଛି । କୁବେର ସାହୁ ମଧ୍ୟ ବଞ୍ଚି ପାରିନି । ଉଦ୍ଧାର ପାଇଛନ୍ତି କେବଳ ପଦ୍ମାବତୀ ଓ ବିଦ୍ୟାଧର । ଭାସି ଭାସି ଦୁହେଁ ଦୁଇ ଯାଗାରେ ପହଞ୍ଚିଛନ୍ତି । ତା' ପରେ ପୁଣି ଅତି ଆକସ୍ମିକ ଭାବରେ ଠିକ୍ ବର୍ଷକ ପରେ ମିଳିତ ହୋଇଛନ୍ତି ପଦ୍ମାବତୀ ଓ ବିଦ୍ୟାଧର । ଗଳ୍ପଟି ବହୁ ଘଟଣାବହୁଳ

ଓ ଦ୍ରୁତ ନାଟକୀୟ ଘଟଣା ପରିବର୍ତ୍ତନ ଯୋଗୁ ଆଙ୍ଗିକ ତ୍ରୁଟିପୂର୍ଣ୍ଣ । ଏହା ଏକ ଉପନ୍ୟାସର ସଂକ୍ଷିପ୍ତ ସଂସ୍କରଣ କହିଲେ ଚଳେ ।

**ସଭ୍ୟ ଜମିଦାର**—ରାଜୀବଲୋଚନ ମହାପାତ୍ରଙ୍କ ପକ୍ଷେ ଅଳ୍ପ ଶିକ୍ଷା କପରି ଭୟଙ୍କର ହୋଇଛି—ଆଧୁନିକତା ନାମରେ କପରି ତାଙ୍କର ଓ ତାଙ୍କ ପତ୍ନୀଙ୍କ ଜୀବନ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଛି ତାହାହିଁ ଏ ଗଳ୍ପଟିର ବିଷୟବସ୍ତୁ । ସମାଜର ସମସ୍ତ ପ୍ରାଚୀନ ଚଳଣି ଓ ସଂସ୍କାରକୁ କୁସଂସ୍କାର ଭାବି ସେମାନେ ଉପହାସ କରିଛନ୍ତି । ସେ ଦୁହେଁ ହିଁଟକ୍କୁ ଭଳ ପୁରାତନ ଓ ଆଧୁନିକତାର ମଝିରେ, ପଲ୍ଲୀ ଓ ନଗର ମଝିରେ ଦୋଦୁଲ୍ୟମାନ । ଆଧୁନିକ ଶିକ୍ଷା ଓ ସଭ୍ୟତାର ସୁଗୁଣକୁ ସେ ଦୁହେଁ ଜୀବନାଦର୍ଶ କରି ପାରିନାହାନ୍ତି । ଫଳରେ ଉପହାସ ଓ ପତନ ହିଁ ହୋଇଛି ସେମାନଙ୍କର ଭାଗ୍ୟଲିପି । ଗଳ୍ପଟି ହାସ୍ୟରସବହୁଳ । ପୁଅ ରାଜୀବ ନବ ବିବାହିତା ପତ୍ନୀ ତଥାକଥିତ ପ୍ରଗତିଶୀଳା ଆଧୁନିକ ଶିକ୍ଷାଭିମାନୀ ମିସେସ୍ ମହାପାତ୍ରଙ୍କର ହାତ-ଧରି ମା ସାଂନ୍ତାଣୀଙ୍କ ସହିତ ସାକ୍ଷାତ କରିବାକୁ ବାହାରିଲେ । ମା ତେତେବେଳେ ଠାକୁରଙ୍କ ଆଗରେ ମାଳଟି ହାତରେ ଧରି ଆଖି-ବୁଜି ବସି ଫୁସ ଫୁସ ହରେକୃଷ୍ଣ ନାମ ଜପୁଛନ୍ତି । ବୋହୂର ଗୋଡ଼ର ଲେଡ଼ିଜ ଯୋତା ଠକ୍ ଠକ୍ ଶବ୍ଦ ଶୁଣି ଚମକି ଠିଆ ହୋଇଗଲେ । ବୋହୂ ଟିକିଏ ହସି 'ଓ ଆମ୍ଭର ପ୍ରିୟ ଶାଶୁ ! ନମସ୍କାର—ନମସ୍କାର । କେମନ୍ତକର ଆପଣଙ୍କର', କହି ହାତ ବଢ଼ାଇ ଯେମନ୍ତ ଶାଶୁ ପାଖକୁ ଗୁଞ୍ଜିଯିବେ—ବୁଢ଼ୀ ତ ହୁଁ'—ନା—ହୁଁ—ନା—ହୁଁ—ନା—ଆରେ କିଏ ଅଛୁରେ—ମହିର ଅପ୍ରତିଷ୍ଠ ହେଲାରେ—ବାହାର କରି ଦିଅରେ—କରି ଦିଅରେ ବୋଲି ରଡ଼ି ଛାଡ଼ିଲେ । ଜମିଦାର ବାବୁ ମିସେସ୍ ମହାପାତ୍ରଙ୍କ ହାତ ଧରି ଭିଡ଼ି ନେଲେ ।

ଭର ଖପାଟାଏ ହୋଇ କହିଲେ, "ଅସଭ୍ୟତା—ମୂର୍ଖତା—ଘୃଣ୍ୟ କୁସଂସ୍କାର । ଓହୋ ଲେଡ଼ିଙ୍କୁ ଇନ୍‌ସଲ୍‌ଟ !" ପୁନଶ୍ଚ ହନେ ମିସେସ୍ ମହାପାତ୍ର ଯୋଡା ମାଡ଼ି ବବୁର୍ଚ୍ଚିଖାନା ଦେଖିବାକୁ ଗୃଲଛନ୍ତି; ଗୋବର ପାଣିରେ ଚୁଲି ଲିପୁଥିବା ଝିଅର ନଜର ପଡ଼ିବାମାତ୍ରେ ସେ "ଆଲେ ମୋ ମା'ଲେ ! ଆଲେ ବାପା ଲେ, ଯୋତା ମାଡ଼ି ହାଣ୍ଡିଶାଳରେ ପଶିଲି ଲେ ! —ହାଣ୍ଡିଶାଳ ମାରୁଗଲି ଲେ" କହି ଏକମୁହାଁ ଧାଇଁଛି । ଏଣେ ମିସେସ୍ ମହାପାତ୍ର ଉଆ—ଉଆ—କହି ଅନ୍ୟ ଆଡ଼କୁ ଧାଇଁଛନ୍ତି—ମୁହଁରେ ରୁମାଲ ଯାକ ନଥିଲେ କେଜାଣି ବାନ୍ତିକରି ପକାଇଥାନ୍ତେ । ଏକାବେଳକେ ଶିଶିଏ ଲେଭେଣ୍ଡର ଦେହସାକ ଢାଳଦେବାରୁ ଟିକିଏ ସାଷ୍ଟମ ହେଲେ । ଗୋରୁଗୁହ ବବୁର୍ଚ୍ଚିଖାନାରେ ତଳା ହୋଇଛି—ଜମିଦାର ଶୁଣି ଭାରି ଖପା—ମୂର୍ଖତା, ଅସଭ୍ୟତା, କୁସଂସ୍କାର ! ସେ ଢଙ୍ଗରେ ରୋଷେଇ ହେଲେ ଲେଡ଼ିଙ୍କୁ ଖାନା ରୁଚିବ ନାହିଁ—ବାନ୍ତି କରି ପକାଇବେ । ଗୃରି ବୋତଲ ଫିନାଇଲ ଢଳାଗଲି ।" ଅଧିକ ହାସ୍ୟରସାତ୍ମକ ଉଦାହରଣ ନିଷ୍ପ୍ରୟୋଜନ । ମାତ୍ର ବହୁ ଗଳ୍ପ ଭଳି ଏହି ଗଳ୍ପଟି ମଧ୍ୟ ବାହୁଲ୍ୟ ଦୋଷଯୁକ୍ତ । ରାଜୀବଲୋଚନଙ୍କ ପିତା ଗୋପାଳ ବାବୁଙ୍କ ଶୈଶବରୁ ମୃତ୍ୟୁ ପର୍ଯ୍ୟନ୍ତ ବର୍ଣ୍ଣନା ଗଳ୍ପ ପ୍ରାରମ୍ଭରୁ ଏକପ୍ରକାର ଅନାବଶ୍ୟକ ।

**ବୀରେଇ ବିଶାଳ**—ଗଳ୍ପଟି ଏକାନ୍ତଭାବେ ଗ୍ରାମ୍ୟ ପରିବେଶରେ ଅଙ୍କିତ । କପଟୀ ମାମୁ, ହୃଦୟହୀନା, କଟୁଭାଷିଣୀ ମାଇଁ ଉପରେ ଅନାଥ ଭଣଜା ବୀରେଇଟିକୁ ଲାଳନ ପାଳନ କରିବା ବାହାନାରେ ତାହାପ୍ରତି ନିର୍ମମ ଓ ଚରମ ଅବିଚାର କରିଛନ୍ତି—ତାର ପୈତୃକ ସମ୍ପତ୍ତି ଲୁଣ୍ଠନ କରିଛନ୍ତି; ଅଥଚ ପ୍ରାପ୍ତବୟସ୍କ ହେଲି

ପରେ ବାରେଇ କପର ନିଜର ଚରିତ୍ରବଳ, କର୍ମକୁଶଳତାଯୋଗୁ ସୁଖୀ ଓ ପ୍ରତିଷ୍ଠାପନ୍ନ ଗୃହସ୍ଥରେ ପରିଣତ ହୋଇଛି ତାହାହିଁ ଗଳ୍ପଟିରେ ବର୍ଣ୍ଣିତ । ତଥାପି ଏଇ ଗଳ୍ପଟିରେ କମଳୀ ଓ ବାରେଇର ପ୍ରେମ ଉପାଖ୍ୟାନଟି ଅତ୍ୟନ୍ତ ଉଜ୍ଜ୍ୱଳଭାବେ ଅଙ୍କିତ ହୋଇଛି, ଅଙ୍ଗୁରୀୟ ମଧ୍ୟସ୍ଥ କ୍ଷୁଦ୍ର ହୀରକ ଖଣ୍ଡ ଭଳି ତାର ଦୀପ୍ତି । ଫକୀର-ମୋହନଙ୍କ ଗଳ୍ପମାନଙ୍କ ମଧ୍ୟରୁ 'ରେବତୀ' ଗଳ୍ପ ବ୍ୟତୀତ ଏହି ଗଳ୍ପଟିରେ ମଧ୍ୟ ଯୁବକ ଯୁବତୀଙ୍କର ସୁମଧୁର ପ୍ରେମର ସ୍ପଷ୍ଟ ପ୍ରକାଶ ଦେଖିବାକୁ ମିଳେ । "ବାରେଇ ପିଲାଦିନରୁ କମଳୀକୁ ଭଲପାଏ, ରୋଜ ଦୁଇଓଳି ହଳକୁ ଯିବା ଆସିବାବେଳେ କନ୍ୟାଟିକୁ ଚାହିଁ ଚାହିଁ ଦେଖେ । ବାରେଇ ହଳ ବାହୁଡ଼ାବେଳେ କମଳୀ କଳସୀଟିଏ କାଖେଇ ପାଣି ଆଣି ଯାଉଥିବାର ଦେଖେ । କମଳୀର ଠିକ୍ ସେଇଟା ପାଣିଅଣା ବେଳ । ଘରେ ମାଠିଆରେ ପାଣିଥିଲେ ବି ସେ ପାଣିଗୁଡ଼ାକ ନାଳରେ ଢାଳିଦେଇ କଳସୀ କାଖେଇ ବାହାରିପଡ଼େ— ଚାରିଆଡ଼କୁ ଚାହେଁ—କେହି କୁଆଡ଼େ ନଥିଲେ କଣେଇ କଣେଇ ବାରେଇକୁ ଦେଖୁଥାଏ ।" ଅଥଚ ସେଇ ସଲଜ୍ଜ ପ୍ରଣୟୀଠାରୁ ପଲ୍ଲୀ କୁମାରୀର ପ୍ରେମରେ କି ଅନମନୀୟ ଦୃଢ଼ତା ଓ ତା'ର ଆତ୍ମପ୍ରକାଶ କପରି ବୈପ୍ଳବିକ ! ଗାଁର ଲେଖାପୋଖା ପଢ଼ା ଆଈକୁ ସେ ମନର କଥା ଫିଟାଇ କହିଲା—'ଆଈ ! ବାପା ଟଙ୍କା ଲୋଭରେ ଗୋଟାଏ ବୁଢ଼ାବରକୁ ମୋତେ ବିଭା କରାଇଦେବେ, ମୁଁ ପୋଖରୀକୁ ଡେଇଁ ପଡ଼ିବି ।' ସେଥିପାଇଁ ସେ ହୃଦୟହୀନ ପିତାକୁ ପ୍ରତାରିତ କରିବାକୁ ମଧ୍ୟ ପଛଘୁଞ୍ଚା ଦେଇନି । କମଳୀ ଉତ୍କଳ ପଲ୍ଲୀ ଗାଁର ଏକ ବିପ୍ଳବିଣୀ 'ପ୍ରେମିକା-ନନ୍ଦିନୀ' । ଗଳ୍ପଟିରେ ଅର୍ଥପିପାସୁ, କନ୍ୟାପ୍ରତି ଉଦାସୀନ କମଳୀର ପିତା ରାଘବ ପାତ୍ର, ପୁରୋହିତ ଖିରେଇ ମିଶ୍ରେ, କୁସଙ୍ଗ ଓ କୁଅଭ୍ୟାସରତ ଦୁଷ୍ଟ ପୁତ୍ର ଚଣ୍ଡିଆ ପ୍ରଭୃତି ବହୁ ଚରିତ୍ର ଦେଖିବାକୁ

ମିଳନ୍ତି । ଗଳ୍ପଟି ଏକପ୍ରକାର ଏକ ଉପନ୍ୟାସର ସଂକ୍ଷିପ୍ତ ସଂସ୍କରଣ । ରାଘବ ପାଣ୍ଡଙ୍କ ସହିତ 'ମାମୁଁ' ଉପନ୍ୟାସର ମାମୁଁ ନାଜର ନଟବର ଓ ମାଧ ମହାନ୍ତିଙ୍କ ଚରିତ୍ରଗତ ସାମଞ୍ଜସ୍ୟ ବିଦ୍ୟମାନ ।

**ଡାକମୁନ୍‌ସି**—ପୋଷ୍ଟ ଅଫିସ ହେଡ୍‌ପିଅନ ହରିସିଂର ବାତ୍ସଲ୍ୟମମତା ଅପରିସୀମ । ଏକମାତ୍ର ପୁତ୍ର ଗୋପାଳକୁ ଶିକ୍ଷିତ ଉପାର୍ଜନକ୍ଷମ କରିବାକୁ ତାର ଅକ୍ଳାନ୍ତ ଉଦ୍ୟମର ଅନ୍ତନାହିଁ । ଗୋପାଳ ପିତାର ଅନୁଗ୍ରହରୁ ଉପାର୍ଜନକ୍ଷମ 'ବାବୁ' ହେଲେ । ଅଥଚ ସେଇ ଗୋପାଳ ବାବୁ ନିଜ ପିତାଙ୍କୁ ମୂର୍ଖ, ଅମାର୍ଜିତ, ରୁଚି-ହୀନ ଭାବି କଳ୍ପନାତୀତ ଚରମ ହତାଦର କରିଛନ୍ତି । "ହଲେ ବୁଢ଼ାକୁ ଭାରି ଜର, ତିନିଦିନ ଖାଇନାହିଁ, ଅଧରାତି, ଅନ୍ଧାର—ଅଣ୍ଡା ପାଇ ବୁଢ଼ାର କାଶ ବଳି ପଡ଼ିଲା । ବାବୁ ତ ଭାରି ଖପା, ବୁଢ଼ା ପିଠିରେ ଦୁଇଟା ଇଂରାଜୀ ଧକ୍କି ମାରିଲେ, ବିଛଣାପତ୍ର ବାହାରକୁ ଫୋପାଡ଼ି ଦେଲେ । ବୁଢ଼ା ଗାଁକୁ ପଳାଇ ସେଠାରେ ଶାନ୍ତିରେ ରହିଲା । ଏହାହିଁ ଗଳ୍ପଟିର ସଂକ୍ଷିପ୍ତ କଥାବସ୍ତୁ ।

**ସୁନାବୋହୂ**—ଗଳ୍ପଟି ବୈପରୀତ୍ୟ (contrast) ଯୋଗୁ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଶିବସୁନ୍ଦର କିରାଣୀ । ତାଙ୍କର ଭଗିନୀ ବୁଦ୍ଧିମତୀ, ଭ୍ରାତାନୁରାଗିଣୀ, ସୁଗୃହିଣୀ ଓ ସୁନାବୋହୂ । ମାତା ବିମଳାଦେଈ ସରଳା ଓ ଧର୍ମପ୍ରାଣା । ତାଙ୍କର ଇଚ୍ଛା ଶିବୁ ବାହା-ହେଲେ ତାଙ୍କର ଦୁଃଖ ଯିବ, ସେ କର୍ମ ଜଞ୍ଜାଳ ମୁକ୍ତ ହେବେ । ଅଥଚ ଶିବୁବାବୁ ବିବାହ କଲେ ଦୁମୁଦୁମୁପୁର ଗାଁର ଅବଧାନ ବଳରାମ ଦାସଙ୍କ ଭଗିନୀ ଅମାର୍ଜିତା, କର୍ମବିମୁଖା ନିମାଦେଈଙ୍କୁ । ଶେଷରେ ଅନାଆଣ୍ଡ, ଶିବୁବାବୁ ଓ ଚମ୍ପାଙ୍କ ହାସ୍ୟୋଦ୍ଦୀପକ ଚହାନ୍ତିରେ କପର ଏହି କର୍ମବିମୁଖା ନିମାଦେଈ କର୍ମତତ୍ପରା ଓ

ସୁନାବୋହୂ ହୋଇ ପାରିଥିଲେ ତାହାହିଁ ଗଳ୍ପଟିର କଥାବସ୍ତୁ । ଗଳ୍ପଟିରେ ଚମ୍ପା ଓ ନିମାଦେଈ ଉଜ୍ଜ୍ୱଳ ରୂପେ ଅଙ୍କିତ । ହାସ୍ୟ-ରସପୂର୍ଣ୍ଣ ଏହି ଗଳ୍ପଟି ଫକୀରମୋହନଙ୍କ ଅନ୍ୟତମ ସାର୍ଥକ ସୃଷ୍ଟି ।

**ଧୂଳିଆ ବାବା**—ଏ ଦେଶର ଧର୍ମପ୍ରାଣ ନରନାରୀଙ୍କୁ ବହୁ ଭଣ୍ଡ ସନ୍ୟାସୀ ସର୍ବଦା ପ୍ରତାରିତ କରି ଆସୁଛନ୍ତି । ଆପଣା ଚେଲା-ମାନଙ୍କ ସାହାଯ୍ୟରେ ଆପଣାର ଅଲୌକିକ ମହିମା ବିଷୟରେ ଜନସାଧାରଣଙ୍କ ମନରେ ଅଳୀକ ଧାରଣା ଜାତ କରାଇ ନିଜ ପ୍ରତାରଣାର ପଥ ସୁଗମ କରନ୍ତି । ଧୂଳିଆ ବାବା ସମାଜର ସେହି ପରାଙ୍ଗପୁଷ୍ଟ, ସ୍ୱଳ୍ପ ସଂଖ୍ୟକ ବ୍ୟକ୍ତିମାନଙ୍କ ମଧ୍ୟରୁ ଅନ୍ୟତମ । କିନ୍ତୁ ଭାଗ୍ୟର ନିର୍ମମ ପରିହାସ । ଅପରକୁ ପ୍ରତାରିତ କରିବାକୁ ଯାଇ ସେ ନିଜେ ପ୍ରତାରିତ ହୋଇ ମୃତ୍ୟୁ ବରଣ କରିଛନ୍ତି । ତାଙ୍କର ଅଗ୍ନିଦେବତା ସ୍ୱୟଂ ଧୂନିରେ ବିଜେ ହୋଇ କଥା କହିବା କୌଶଳ ଧରାପଡ଼ି ଯାଇଛି ।

**ବାଲେଶ୍ୱରୀ ରାହାଜାନୀ**—ବାଲେଶ୍ୱରର ବସ୍ତା ନିକଟରେ ତତ୍କାଳୀନ ବାଲେଶ୍ୱରର ଆସିଷ୍ଟାଣ୍ଟ ମେନେଜରଙ୍କ ପାଲିକି ଡକାୟତମାନଙ୍କଦ୍ୱାରା ଲୁଣ୍ଠିତ ହେବାରୁ ଓ ଅନ୍ୟାନ୍ୟ ଡକାୟତି ଘଟିବାରୁ ପୋଲିସ ସବ୍‌ଇନ୍‌ସପେକ୍ଟର ରାଜକିଶୋର ଚୌଧୁରୀ ଓ ପୋଲିସ ଇନ୍‌ସପେକ୍ଟର ଶାରଦାପ୍ରସାଦ ଘୋଷଙ୍କ ସୁଚତୁର ଉଦ୍ୟମରେ କିପରି ଡକାୟତମାନେ ଧରାପଡ଼ି ଥିଲେ ତାହାହିଁ ଗଳ୍ପଟିର ଉପଜୀବ୍ୟ ବିଷୟ । କାହାଣୀଟିରେ ଚରିତ୍ର ଚିତ୍ରଣ ଅପେକ୍ଷା ଘଟଣାବଳୀର ବର୍ଣ୍ଣନା ପ୍ରାଧାନ୍ୟ ଲାଭ କରିଛି । ଏହା ଏକ ରହସ୍ୟ-ଭେଦମୂଳକ ଗଳ୍ପ ।

**ପାଟେଇ ବୋହୂ**—ବାଲେଶ୍ୱରର ମୁକ୍ତାର ଗୋପାଳ ବାବୁ ଜମାଖର୍ଚ୍ଚ ହିସାବ ବୁଝିପାରୁଥିବା, ପତ୍ର ଲେଖି ପାରୁଥିବା

ପାଠୋଇ କନ୍ୟାଟିଏ ବାହାହେବାକୁ ଇଚ୍ଛା କରିଥିଲେ । ମାତ୍ର ଦୈବଯୋଗକୁ ସେ ବିଭା କଲେ ମାଳଗିରିର ସାନ୍ତାଳ ଅଧ୍ୟୁଷିତ ଘଲୁକପୋଷୀ ଗାଁର ଏକ ନିରକ୍ଷର ଝିଅ ସରସ୍ୱତୀ ଦେଈଙ୍କୁ । ତାଙ୍କୁ ବିବାହ କରି ପତ୍ନୀଙ୍କ ଅଜ୍ଞତା ଯୋଗୁ ସେ କପରି ଦହଗଞ୍ଜ ହୋଇଥିଲେ ତାହାହିଁ ଗଳ୍ପଟିରେ ହାସ୍ୟରସାତ୍ମକ ଭାବରେ ବର୍ଣ୍ଣିତ ।

**ମାଧ ମହାନ୍ତଙ୍କ କନ୍ୟା ସୁନା**—ମଧୁପୁରର ଅତି କୃପଣ ମାଧ ମହାନ୍ତ ନିଜ ସୁଗୁଣବତୀ କନ୍ୟା ମାଳତୀକୁ ହଜାରେ ଟଙ୍କା କନ୍ୟା ସୁନା ବାବତ ପାଇଲେ ବିବାହ ଦେବେ ବୋଲି ଅଡ଼ି ବସିଲେ । ମାତ୍ର ମହନ୍ତ ଲଛମନଦାସଙ୍କ ଚକ୍ରାନ୍ତ ଓ ମୁଖ୍ୟତଃ ପଦ୍ମା ଭଣ୍ଡାରୁଣୀର ସହାୟତାରେ କପରି ମାଧ ମହାନ୍ତ ପ୍ରତାରିତ ହେଲେ ଓ ମହନ୍ତଙ୍କ ସରଘରିଆ ବିନୋଦିଆ ସଙ୍ଗେ କପରି କୌଶଳରେ ମାଳତୀର ବିବାହ ହେଲା ଓ ଅର୍ଥଲୋଭୀ ମାଧ ମହାନ୍ତ କପରି ଅର୍ଥ ଲୋଭରୁ ଦେହ, ମନରେ ଦାରୁଣ ଆଘାତ ପାଇ ଲୋକଲୋଚନ ଅଗୋଚରରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ତାହାହିଁ ଗଳ୍ପଟିର ସଂକ୍ଷିପ୍ତ କଥାବସ୍ତୁ ।

**କାଳିକାପ୍ରସାଦ ଗୋରାପ**—ଗଳ୍ପଟି ଏକାନ୍ତ ଭାବେ ପରିବେଶ-ପ୍ରଧାନ ଓ ମୁଖ୍ୟତଃ ସଂଳାପ ଭାବରେ ଲିଖିତ । ପର୍ତ୍ତୁଗିଜ ଜଳଦସ୍ୟୁ ଅତ୍ୟାଚାର ଯୋଗୁ ଜାହାଜ କାରବାର କରୁଥିବା ଲୋକେ କପରି ଚକିତ ତାହାହିଁ ଏଥିରେ ବର୍ଣ୍ଣିତ ।

**ବଗଲା ବଗଲୀ**—ଭୂଷଣ୍ଡପୁର ଗାଁ ଚୌକିଆ ବିଦିଆ ପାତ୍ର ସ୍ତ୍ରୀ ସପ୍ନା ଓ ରେମୀ ସୁଖରେ ଥାନ୍ତି । ଦୁହିଙ୍କୁ ଅକସ୍ମାତ ଜ୍ୱର

ହେଲା । ପ୍ରେମୀ ଟିକଏ ଭଲହେବା ପରେ ସସ୍ନୀକୁ ଆରୋଗ୍ୟ କରିବାଲାଗି ସମସ୍ତ ଚେଷ୍ଟା କରିଛି । ଶେଷରେ ଦୁହେଁ ଦୁହିଁଙ୍କ ସ୍ମୃତି ସ୍ମୃତି ଦୁହିଁଙ୍କର ମୃତ୍ୟୁ ହୋଇଛି । ଅଭାବ ମଧ୍ୟରେ ବି ତ୍ୟାଗ-ପୂର୍ଣ୍ଣ ଅନାବିଳ ଦାମ୍ପତ୍ୟ ପ୍ରେମର ଏକ ଜୀବନ୍ତ ଆଲେଖ୍ୟ ଏହି ଗଳ୍ପଟି । ବଗଲା ବଗୁଲି ଭଳି ପରସ୍ପର ନିର୍ଭର ଦମ୍ପତିଙ୍କର ଏଭଳି ପ୍ରେମ-ମଧୁର ଚିତ୍ର ଓଡ଼ିଆ ସାହିତ୍ୟରେ ବିରଳ ।

**କମଳାପ୍ରସାଦ ଗୋରାପ**—ବାଲେଶ୍ୱରରୁ ଜାହାଜାତି କାରବାର ଉଠିଯିବା ଉପରେ । ବାଲେଶ୍ୱରର ରାମହରି ନାୟକଙ୍କ କମଳା ପ୍ରସାଦ ଗୋରାପ ଚିନାପାଟଣା ହାର୍ଡ଼ୁ ବାହାର (ମାନ୍ଦ୍ରାଜ ହାର୍‌ବର୍) ରୁ ଆସୁଥିଲା ସ୍ୱରୂପ ମାଝିର ତତ୍ତ୍ୱାବଧାନରେ । ଧାମରା ନିକଟବର୍ତ୍ତୀ ଘଡ଼ିଆମାଳ ନଦୀରେ ଲଙ୍ଗର ପକାଇବା ସମୟରେ ତୋଫାନ ହେବା ଯୋଗୁ କମଳାପ୍ରସାଦ ଜାହାଜ ଚଡ଼ାରେ ଲାଗିଗଲା । ମାଝିମାନେ ଗୋପନରେ ପରାମର୍ଶ କରି ଜାହାଜର ଟଙ୍କା ବାଣ୍ଟିନେଲେ ଓ ରାମହରି ବାବୁଙ୍କୁ ଜାହାଜ ବୁଡ଼ିବା ଖବର ଦେଲେ । ତା'ପରେ ପୂର୍ଣ୍ଣିମା ଜୁଆରରେ ଜାହାଜଟି ଚଡ଼ାରୁ ମୁକ୍ତ ହୋଇ ଆକସ୍ମିକ ଭାବେ ଭାସିଆସି ବାଲେଶ୍ୱରରେ ପହଞ୍ଚି ଅଛି । ପୁଲିସ ଅନୁସନ୍ଧାନ ପରେ ମାଝୀ ଖଲାସୀମାନେ ଦଣ୍ଡିତ ହୋଇଛନ୍ତି ।

**ମୈନା ମୈନୀ**—ପଚାଶ ବର୍ଷ ତଳର କଥା-ଖଣ୍ଡଗିରିର ଏକ ଭଣ୍ଡ ସାଧୁଦଳଙ୍କ ନିତ୍ୟ-ନୈମିତ୍ତିକ କାର୍ଯ୍ୟକଳାପ ଏହି ଗଳ୍ପରେ ବର୍ଣ୍ଣିତ । ଦୁଇ ଜଣ ଡିଟେକ୍‌ଟିଭ ପୋଲିସ ଛଦ୍ମ ରୂପରେ କପଟ ଭକ୍ତ ପରିପୂଣ ହୋଇ ଏମାନଙ୍କ ସନ୍ଦେହଜନକ ଗତିବିଧି ଅନୁସନ୍ଧାନ କରି ଏମାନଙ୍କୁ ଧରାଇ ଦେଇଛନ୍ତି । ମ୍ୟାଜିଷ୍ଟ୍ରେଟ

ଏମାନଙ୍କୁ ସଦଲବଳେ ଉପଯୁକ୍ତ ହେପାଜତରେ କଲିକତା ପଠାଇଛନ୍ତି ।

**ପୁନର୍ମୂଷିକୋଭବ**—ଶହେଶ ବର୍ଷ ତଳର କଥା, ଇଂରେଜମାନଙ୍କ ଆଇନ ଯୋଗୁ ବାଲେଶ୍ୱରରୁ ଲୁଣ ଆମଦାନି (ପ୍ରୋକ୍ୟାନ) ଉଠିଗଲା; ତଥାପି ଲୋକେ ଚୋରିରେ ଲୁଣ ମାରୁଥିବାରୁ ସେମାନଙ୍କୁ ଧରିବା ଲାଗି ନିମକି ପୋଲିସ କନେଷ୍ଟବଲ ସବୁ ନିଯୁକ୍ତ ହେଲେ । ପେସ୍କାରଙ୍କ ଚାକର କଣା ଭଣ୍ଡାରି (କଣା ରାମସିଂ) ସେହିପରି ଏକ୍ସି କନେଷ୍ଟବଲ କାମରେ ମୁକରର ହୋଇ ମହିମପୁରରେ ଉପସ୍ଥିତ ହେଲେ । ସେଠାରେ ରାମା ଭଣ୍ଡାରି ନିଜ ଜାତିଭାଇ କଣାରାମ ସିଂଙ୍କ ବାସନ ନ ଉଠାଇବାରୁ ସେ ତା ଉପରେ ରାଗିଥିଲେ । ଥରେ ରାମା ଲୁଣ ମାରୁଥିବା ଯୋଗୁ କଣାରାମ ତାକୁ ଗିରଫ କରି ଚାଲାଣ କଲେ । ଚାକରି କରିଥିବା ଯୋଗୁ ସେ ଫୁଲି ଉଠିଛନ୍ତି । ପେସ୍କାର ବାବୁଙ୍କ ବସାରେ ପୁରୋହିତ ପୁରୁଷୋତ୍ତମ ରଥଙ୍କୁ ଅବଜ୍ଞା କରିବାରୁ ରଥେ ତାଙ୍କୁ କହିଥିଲେ ପୁନର୍ମୂଷିକୋଭବ । ଇତ୍ୟବସରେ ଗ୍ରାମବାସୀମାନେ ରାମାକୁ ରକ୍ଷା କରିବା ଲାଗି ମକଦ୍ଦମା ତଦ୍‌ବିର କଲେ । ସୁଦକ୍ଷ ଓକିଲଙ୍କ ଯୋଗୁ ରାମା ନିର୍ଦ୍ଦୋଷରେ ଖଲାସ ହେଲା । ତାହାପରେ ମଧ୍ୟ କଣାରାମ କାମରେ ଅସାଧୁତା ଅବଲମ୍ବନ କଲେ । ଫଳରେ ଗୁଇନ୍ଦା ପୁଲିସମାନଙ୍କ ଦ୍ୱାରା ତାଙ୍କ ଠକାମି ମଧ୍ୟ ଧରାପଡ଼ିଲା । କଣାରାମ ସିଂଙ୍କୁ ଦୁଇମାସ ମିଆଦ ଓ ଜୋରିମାନା ହୋଇ ଗଲା-ପରେ ସେ ଗ୍ରାମକୁ ଫେରିଲେ ଓ ପୁରୋହିତଙ୍କ ବ୍ୟବସ୍ଥାନୁରୂପ ପ୍ରାୟଶ୍ଚିତ୍ତ କରି କୌଳିକ ପେଶାରେ ଆତ୍ମନିୟୋଗ କଲେ । ପୁରୋହିତଙ୍କ ଅଭିଶାପ ସଫଳ ହେଲା ।

( ୩ )

ଏହିପରି ଚିତ୍ତବିନୋଦନ ବ୍ୟତୀତ ପ୍ରତ୍ୟେକଟି ଗଳ୍ପ ବିଶେଷଭାବେ ଶିକ୍ଷା ଓ ସଂସ୍କାର ସାଧନା ଲାଗି ଅଭିପ୍ରେତ । ମଦ୍ୟପାନ ଓ ଦୁଶ୍ଚରିତ୍ରତାର ପରିଣାମ, ଅନ୍ୟାୟ ଉତ୍ପୀଡ଼ନ ଅଭ୍ୟସ୍ତ ଶୋଷଣକାରୀ ସାହୁକାରର ଅନ୍ତିମ ଭାଗ୍ୟ ବିପର୍ଯ୍ୟୟ, ଧୂଳିଆବାବାଙ୍କ ଧର୍ମ ନାମରେ ଭଣ୍ଡାମୀ, ସଭ୍ୟତାଭିମାନୀ କୁଅଭ୍ୟାସ ଓ କୁସଙ୍ଗରତ ସ୍ୱଳ୍ପ ଶିକ୍ଷିତ ଜମିଦାର ପୁତ୍ର ଓ ସ୍ୱଳ୍ପ ଶିକ୍ଷାଭିମାନୀ ଜମିଦାର ବଧୂଙ୍କର ଦୁର୍ଭାଗ୍ୟ, କୃପଣ ଅର୍ଥଲୋଭୀ ଓ ପ୍ରଚୁର କନ୍ୟାସୁନା ପିପାସୁର ଉପହାସାସ୍ପଦ କରୁଣ ପରିଣତି, ଦାମ୍ପତ୍ୟ ପ୍ରେମର ସୁନିର୍ମଳ ଆନନ୍ଦ, କୁସଂସ୍କାରଛନ୍ନ କନ୍ୟା ବିବାହର ହାସ୍ୟକର ପରିଣତି, ଗୃହକର୍ତ୍ତାବାବୀମାନଙ୍କ ବଡ଼ିମା ଓ ଅହଂକାରର କୁପରିଣତି, ବହୁଜନର କଲ୍ୟାଣଲାଗି ଆତ୍ମବଳି ଦାନ ପ୍ରଭୃତି ତାଙ୍କ ଗଳ୍ପ-ଗୁଡ଼ିକରେ ପରମ ଶିକ୍ଷଣୀୟ ଉପାଦାନ । ସଂକ୍ଷେପରେ କହିଲେ, ତାହାଙ୍କ ଗଳ୍ପଗୁଡ଼ିକରେ ଆଦର୍ଶ ଓ ବାସ୍ତବର ସମନ୍ୱୟ ସାଧିତ ହୋଇଛି ।

ତା'ଛଡ଼ା ସେକାଳର ଅର୍ଥାତ୍ ଏକଶତ ବର୍ଷ ପୂର୍ବର ଓଡ଼ିଶାର ସାମାଜିକ ରାଜନୈତିକ ଓ ସାଂସ୍କୃତିକ ଚିତ୍ର ମଧ୍ୟ ଗଳ୍ପଗୁଡ଼ିକରେ ପରମ ଉପଭୋଗ୍ୟ । ସେଇ ସବୁ ଐତିହାସିକ ପୃଷ୍ଠଭୂମିକାରେ ରଚିତ ତାଙ୍କର ଅତି ସାଧାରଣ ଚରିତ୍ରଗୁଡ଼ିକ ମଧ୍ୟ ଆଜି ଜଣେ ଜଣେ ଇତିହାସପ୍ରସିଦ୍ଧ ବ୍ୟକ୍ତିରେ ପରିଣତ ହୋଇଛନ୍ତି । ଗଳ୍ପ-ଗୁଡ଼ିକରେ ସେତେବେଳର ଜାହାଜ କାରବାର, ଜଳଦସ୍ୟୁ ବୃତ୍ତି, ବାଲେଶ୍ୱରୀ ରହାଜାମା, କନ୍ୟା ସୁନାର ପ୍ରଚଳନ, ବାବାଜୀ ଛନ୍ଦ

ଦେଶରେ ଦସ୍ୟୁମାନଙ୍କ ଆତ୍ମଗୋପନ, ବିଲୁପ୍ତପ୍ରାୟ ଲୁଣ କାରବାର ଶେଷ ପର୍ଯ୍ୟାୟରେ ପୁଲିସ କର୍ମଚାରୀମାନଙ୍କ ଅସାଧୁତା ଓ ଜନସାଧାରଣଙ୍କର ଗୋପନରେ ଲବଣ ପ୍ରୋକ୍ସାନ, ନାରୀ ଶିକ୍ଷାପ୍ରତି ବୀତଶ୍ରଦ୍ଧ ସମାଜ, ଶିକ୍ଷା ଓ ସଭ୍ୟତା ନାମରେ ବାରାଙ୍ଗନାସକ୍ତି ଓ ଗୁରୁଜନମାନଙ୍କ ପ୍ରତି ହତାଦର, ପ୍ରାଚୀନ ସଂସ୍କାର ପ୍ରତି ଅବଜ୍ଞା ପ୍ରଦର୍ଶନ, ଶିକ୍ଷିତ ସ୍ୱାମିମାନଙ୍କର ଅଶିକ୍ଷିତା, ଅମାର୍ଜିତା ପତ୍ନୀମାନଙ୍କୁ ଶିକ୍ଷିତା ରୁଚିସମ୍ପନ୍ନା କରିବା ଲାଗି ପ୍ରୟାସ ଇତ୍ୟାଦି ବହୁ ଚିତ୍ର ଯେପରି ପରମ କୌତୁହଳପ୍ରଦ ସେହିପରି ଶିକ୍ଷାପ୍ରଦ ।

ଫକୀରମୋହନଙ୍କ ସମୟରେ ଓଡ଼ିଶା ଏକ ବିପ୍ଳବାତ୍ମକ ପରିସ୍ଥିତି ମଧ୍ୟରେ ଗତି କରୁଥିଲା । ଦେଶରେ ଭରିଥିଲା ପ୍ରାଚୀନ କୁସଂସ୍କାରର ଆବର୍ଜନା । ଶିକ୍ଷାର ପ୍ରସାର ହୋଇ ନଥାଏ । ଜାହାଜ କାରବାର ଓ ଲବଣ ଶିଳ୍ପ ଲୁପ୍ତ ହେବା ଉପରେ । ଦେଶରେ ଚୋର ଡକାୟତଙ୍କ ପ୍ରବଳ ଉପଦ୍ରବ । ପ୍ରତାରକ ଧର୍ମଧ୍ୱଜୀ କପଟୀ ସାଧୁ ସନ୍ୟାସୀ ଓ ଅର୍ଥ ଗୃଧ୍ନୁ ସାହୁକାର ଓ ରକ୍ତ ପିପାସୁ ଜମିଦାରଙ୍କ ସମାଜରେ ଏକାଧିପତ୍ୟ । ସ୍ୱଳ୍ପ ଶିକ୍ଷିତ ବ୍ୟକ୍ତିଗଣ ଆତ୍ମବଡ଼ିମା, ଅହଂକାରରେ ଉତ୍‌ଫୁଲ୍ଲ, ସବୁ ପ୍ରାଚୀନ ସଂସ୍କୃତିକୁ ଉପହାସ କରି ସଭ୍ୟତା ନାମରେ 'ନଳାପାଣି' ପିଇବାକୁ ପ୍ରସ୍ତୁତ । ଏହି ସଂଘର୍ଷର ଚିତ୍ର ଲେଖକଙ୍କର ବିଭିନ୍ନ ଗଳ୍ପରେ ବିଦ୍ୟମାନ । ସ୍ଥୂଳତଃ ତାଙ୍କ ଗଳ୍ପଗୁଡ଼ିକ ଏହିପରି ଏକ ଐତିହାସିକ ପୃଷ୍ଠଭୂମିକାରେ ଅଙ୍କିତ ।

ଗଳ୍ପଗୁଡ଼ିକ ଯେପରି ଐତିହାସିକ ଗୁରୁତ୍ୱପୂର୍ଣ୍ଣ ସେହିପରି ମଧ୍ୟ ଶୈଳ୍ପିକ ଗୁରୁତ୍ୱସମ୍ପନ୍ନ । ଫକୀରମୋହନ ନିଜର ବହୁ ଘଟଣାବହୁଳ କର୍ମଜୀବନ ମଧ୍ୟରେ ଏ ଦେଶର ବନଗୃହୀ ମହିଷପାଳକଠାରୁ ଆରମ୍ଭ କରି ଦରିଦ୍ର ପଲ୍ଲୀ କୁଟୀର ଓ ନଗରନିବାସୀ

ନରନାରୀଙ୍କୁ ଯେପରି ଅତି ଅନ୍ତରଙ୍ଗଭାବେ ଜାଣିଥିଲେ ସେହିପରି ସେମାନଙ୍କ ଅପୂର୍ବ ଜୀବନ ଯାତ୍ରାର ମନୋରମ ଆଲେଖ୍ୟ ସେ ଭାବୀ ବଂଶଧରଙ୍କ ଲାଗି ସାଇତି ଯାଇ ଅଛନ୍ତି । ଓଡ଼ିଆ ଜାତିକୁ ଏହିପରି ଘନିଷ୍ଠଭାବେ ବୋଧହୁଏ ତାଙ୍କପରି କେହି ଚହ୍ନି ନାହାଁନ୍ତି କିମ୍ବା ଓଡ଼ିଆ ଜନମାନସର କଥା ସେହିମାନଙ୍କ ସ୍ୱଭାବ ସୁଲଭ ଭାଷାରେ ଶବ୍ଦ କରି ପାରିନାହାଁନ୍ତି । ତାଙ୍କର କ୍ଷୁଦ୍ର ଗଳ୍ପଗୁଡ଼ିକ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ନିପୀଡ଼ିତ ସଂଘର୍ଷମୟ ଉତ୍କଳର ଏକ ଜୀବନ୍ତ ଇତିହାସ । କିନ୍ତୁ ଏ ଇତିହାସ ନୀରସ ନୁହେଁ; ଏହା ପ୍ରାଣପ୍ରାଚୁର୍ଯ୍ୟରେ ଋଦ୍ଧିମନ୍ତ ଓ ଫକୀରମୋହନଙ୍କ ଅନବଦ୍ୟ ଶୈଳୀରେ ସୁମଞ୍ଜୁଳ; ତେଣୁ ଏହାର ଆବେଦନ ଚିରନ୍ତନ ।

ଚରିତ୍ର ସୃଷ୍ଟିରେ ଫକୀରମୋହନଙ୍କ ପଟାନ୍ତର ନାହିଁ କହିଲେ ଚଳେ । ଅଜ୍ଞାତ, ଅବଜ୍ଞାତ, ଅଖ୍ୟାତ ମଣିଷର ଓଡ଼ିଆ ସାହିତ୍ୟରେ ପ୍ରଥମ ରୂପକାର ହେଉଛନ୍ତି ଫକୀରମୋହନ; ତାଙ୍କର କ୍ଷୁଦ୍ର ଗଳ୍ପ-ଗୁଡ଼ିକରେ ଆମେ ସେଇମାନଙ୍କରହିଁ ଜୟଯାତ୍ରା ଦେଖିବାକୁ ପାଉଁ । ରାଧାନାଥଙ୍କ ଦୃଷ୍ଟି ରାଜଅନ୍ତଃପୁର ବା କଳ୍ପ ଲୋକରେ ବିଚରଣ କରିଛି, ମଧୁସୂଦନ ଧ୍ୟାନ ନେତ୍ରରେ ଋଷିପ୍ରାଣେ ଦେବାବତରଣ ଦର୍ଶନ କରିଛନ୍ତି । ମାତ୍ର ଫକୀରମୋହନ ଯଥାର୍ଥତଃ ଏ ଦେଶ ମାଟିର ମଣିଷକୁହିଁ ରୂପ ଦେବାକୁ ଚାହିଁଛନ୍ତି । ଭଞ୍ଜ, ରାଧାନାଥ ବା ମଧୁସୂଦନଙ୍କ ଭଳି ସେ ରଚନାର ବିଷୟବସ୍ତୁ ଲାଗି ସ୍ୱର୍ଲୋକ ବା କଳ୍ପଲୋକର ଉପଯାଚକ ହୋଇ ନାହାନ୍ତି । ତାଙ୍କର କ୍ଷୁଦ୍ର ଗଳ୍ପରେ ନିମାଦେଈ, ପଦ୍ମା, ଶୁନ୍ଦରୀ, ମାଳତୀ, ମୋହିନୀ, କମଳୀ, ରେବତୀ, ଶ୍ୟାମବନ୍ଧୁ, ଦୋକାନୀ ହରିସାଉ, ଗୋପାଳ, ଅନନ୍ତା, କଣା ଭଣ୍ଡାରୀ, ରାମା ବାରିକ, ଚୈକିଆ ବହିଆ ପାତ୍ର, ସପ୍ନା, ଚେମୀ, ଅର୍ଜ୍ଜୁନା ପ୍ରଭୃତି 'କଳ୍ପନା ରାଜ୍ୟର ହରିଜନ'ଙ୍କୁହିଁ ଆମେ

ଦେଖିବାକୁ ପାଉ । ଇତିହାସରେ ଯେଉଁମାନଙ୍କ ନାମ ଲିପିବଦ୍ଧ ହୁଏନାହିଁ, ସଂସାରର ନାମଗୋତ୍ରହୀନ ସେହି ପଲ୍ଲୀ ନରନାରୀଙ୍କ ଚିତ୍ରହିଁ ଆମେ ତାଙ୍କର ଅଧିକାଂଶ ଗଳ୍ପରେ ଦେଖିବାକୁ ପାଉ । ସେମାନଙ୍କର ଜୀବନର ପ୍ରେମ-ମିଳନ, ଶ୍ରମ-ଅର୍ଥାଭାବ, ସୌହାର୍ଦ୍ଦ୍ୟ-ପ୍ରତାରଣା, ଲୋଭ-ଆତ୍ମତ୍ୟାଗ, ସାରଲ୍ୟ-ମିଥ୍ୟାଚାର, ଆଶାଭଙ୍ଗ ଓ ବ୍ୟର୍ଥତା, ବିଶ୍ୱାସ ଓ ଅବିଶ୍ୱାସ ପ୍ରଭୃତି ତୁଚ୍ଛାଦପି ତୁଚ୍ଛ ପ୍ରାତ୍ୟହିକ ବିଷୟଗୁଡ଼ିକୁ ଫକୀରମୋହନ ନିପୁଣ ଲେଖମୀ ଆଶ୍ଚର୍ଯ୍ୟ ଦକ୍ଷତାର ସହିତ ଚିତ୍ର କରିଅଛି । ପଲ୍ଲୀ ଜୀବନର ଏପରି ମନୋରମ ଚିତ୍ର ଫକୀରମୋହନଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଆତ୍ମପ୍ରକାଶ କରି ନଥିଲା କହିଲେ ଚଳେ ।

ଏହାଛଡ଼ା ଫକୀରମୋହନ ସ୍ୱରଚିତ ଗଳ୍ପଗୁଡ଼ିକରେ ତତ୍‌କାଳୀନ ରାଜନୈତିକ ଓ ସାମାଜିକ ତଥ୍ୟ ପ୍ରକାଶ କରିବା ଲାଗି ମଧ୍ୟ ନିଜର ଅସୀମ କୌତୁହଳ ସଂବରଣ କରି ପାରି ନାହାନ୍ତି; କଥା ସାହିତ୍ୟ ସହିତ ସମସାମୟିକ ଇତିହାସର ସଂଯୋଗ ସ୍ଥାପନ ଲାଗି ମଧ୍ୟ ପ୍ରୟାସ କରିଛନ୍ତି । ମାତ୍ର ଏଇ ସବୁ ବିଷୟ ଗୌଣ, ମୁଖ୍ୟତଃ ଇତିହାସକୁ ଅସ୍ୱୀକାର କରୁଥିବା ଜୀବନର ସେଇ ଚିରନ୍ତନ ଦୁଃଖ-ସୁଖ, ହାନିଲାଭର ଇତିହାସହିଁ ତାଙ୍କର ଗଳ୍ପାବଳୀର ଉପଜୀବ୍ୟ ବିଷୟ । ତାହାକୁହିଁ ପ୍ରକାଶ କରିବା ଲାଗି ତାଙ୍କର ଶିଳ୍ପୀ ମନ ଏକାନ୍ତ ଆକୁଳ ଓ ତନ୍ମୟ । ସେଥିପାଇଁ ନିର୍ଦ୍ଦିଷ୍ଟ ରଚନା-ରୀତିର ଶୃଙ୍ଖଳାକୁ ମଧ୍ୟ ସେ ଅସ୍ୱୀକାର କରିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ସଂକ୍ଷେପରେ କହିଲେ ଚରିତ୍ର ସୃଷ୍ଟିର ଅପୂର୍ବ ଦକ୍ଷତା ଓ ସୂକ୍ଷ୍ମର ମନସ୍ତାତ୍ତ୍ୱିକ ଅନ୍ତର୍ଦୃଷ୍ଟିହିଁ ରଚନାଗତ ତ୍ରୁଟି ସତ୍ତ୍ୱେ ଫକୀରମୋହନଙ୍କ ଗଳ୍ପଗୁଡ଼ିକୁ ସୁଖପାଠ୍ୟ ଉଚ୍ଚାଙ୍ଗ ଶିଳ୍ପ ସୃଷ୍ଟି ପର୍ଯ୍ୟାୟଭୁକ୍ତ କରିପାରିଛି ।

ଫକୀରମୋହନଙ୍କ ଗଳ୍ପଗୁଡ଼ିକ ତାଙ୍କର ଉପନ୍ୟାସ ଭଳି ମୁଖ୍ୟତଃ ଚରିତ୍ର ପ୍ରଧାନ । ଚରିତ୍ରର ସଜୀବ ରୂପାୟନ ଉଦ୍ଦେଶ୍ୟରେ ଲେଖକ ବହୁ ଘଟଣାର ଅବତାରଣା କରିଛନ୍ତି । ଏପରି କି ଗୌଣ ଚରିତ୍ରଗୁଡ଼ିକୁ ମଧ୍ୟ ବିକଶିତ କରିବା ଲାଗି ସେ ସମଧିକ ପ୍ରଯତ୍ନଶୀଳ । ତଥାପି ଫକୀରମୋହନଙ୍କ କୃତୀରେ ଘଟଣା-ପ୍ରଧାନ ଗଳ୍ପର ମଧ୍ୟ ଅଭାବ ନାହିଁ । ବାଲେଶ୍ୱରୀ ରହାଜାମି, କାଳିକାପ୍ରସାଦ ଗୋରୁପ, କମଳାପ୍ରସାଦ ଗୋରୁପ, ମୌନୀ ମୌମି, ଗାରୁଡ଼ି ମନ୍ତ୍ର, ଅଧର୍ମ-ବିତ୍ତ ପ୍ରଭୃତି ଗଳ୍ପ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । ରେବତୀ, ପେଟେଣ୍ଟ ମେଡ଼ିସିନ, ରଣ୍ଡୀପୁଅ ଅନନ୍ତା, ସୁନା ବୋହୂ, ଧୂଳିଆ ବାବା, ଡାକମୁନ୍‌ସି, ବାଗେଇ ବିଶାଳ, ବଗଲି ବଗୁଲି ପ୍ରଭୃତି ଗଳ୍ପରେ ଚରିତ୍ର ସୃଷ୍ଟି ତଥା ଚିତ୍ତାକର୍ଷକ ଘଟନା ଉପସ୍ଥାପନାର ସୁମଧୁର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ତେଣୁ ଶେଷୋକ୍ତ ଗଳ୍ପ-ଗୁଡ଼ିକ ଫକୀରମୋହନଙ୍କ ଉଚ୍ଚାଙ୍ଗ ଗଳ୍ପ ଭାବରେ ପରିଗୃହୀତ ହେବା ଯୋଗ୍ୟ । ଏଗୁଡ଼ିକହିଁ ଓଡ଼ିଆ ସାହିତ୍ୟର ଉଜ୍ଜ୍ୱଳ ରତ୍ନ—ଯାହାକୁ ନେଇ ଆମେ ବିଶ୍ୱ ସାହିତ୍ୟ ଦରବାରରେ ପ୍ରଦର୍ଶିତ କରିପାରିବୁ ।

କେବଳ ସଂଖ୍ୟା ଦୃଷ୍ଟିରୁ ନୁହେଁ, ବୈଚିତ୍ର୍ୟ ଦୃଷ୍ଟିରୁ ମଧ୍ୟ ଚରିତ୍ରଗୁଡ଼ିକ ବିସ୍ମୟକର । ଏମାନଙ୍କ ମଧ୍ୟରେ କୃପଣ, ଧନୀ, ସାହୁକାର, କଲିକତାର ସୁପ୍ରସିଦ୍ଧ ବ୍ୟବସାୟୀ ଗୋପାଳଚରଣ, ଦରିଦ୍ର ଶିକ୍ଷକ ବାସୁଦେବ, ପୋଷ୍ଟ ଅଫିସ ପିଅନ, ଓକିଲ, କରଣୀ, ଋଷୀ ମନ୍ଦୁ ବିଶ୍ୱାଳ, ମଇଁଷୀ ଚରାଳୀ ସୁବଳ ମହାକୁଡ଼ ପର୍ଯ୍ୟନ୍ତ ପ୍ରାଚୀନପନ୍ଥୀ, ନବୀନପନ୍ଥୀ ଓଡ଼ିଶାର ପଲ୍ଲୀ ଓ ସହରର ବହୁ ଚରିତ୍ର ଫକୀରମୋହନଙ୍କ ଗଳ୍ପରେ ଧରାପଡ଼ିଛନ୍ତି । ତଥାପି ଏଇ ସାଧାରଣ ଅବଜ୍ଞାତ ନରନାରୀଙ୍କ ଚରିତ୍ରରେ ଯେ ବଳିଷ୍ଠତା ବିଦ୍ୟମାନ; ଯେ ପ୍ରବଳ ପ୍ରାଣଶକ୍ତିର ଉଦ୍ଦାମ ପ୍ରବାହ ଲୁକ୍‌କାୟିତ

ଏହାର ସନ୍ଧାନ ଫକୀରମୋହନ ସର୍ବପ୍ରଥମେ ଆମ୍ଭମାନଙ୍କୁ ଦେଇ-ଯାଇ ଅଛନ୍ତି । ମାନବ ଚରିତ୍ରର ପରିବର୍ତ୍ତନ ହୋଇପାରେ । ଅମାର୍ଜିତ ରୁଚିହୀନା ଜାମାଦେଈ ରୁଚିସମ୍ପନ୍ନା ସୁନାବୋହୂ ହୋଇ-ପାରେ; ଦୁର୍ଦ୍ଦାନ୍ତ ଆତ୍ମଭୋଗ-ସର୍ବସ୍ୱ ଅନନ୍ତା ବହୁ ଜନର କଲ୍ୟାଣ ଲାଗି ଆତ୍ମବଳିଦାନ କରିପାରେ; ଲମ୍ପଟ ମଦ୍ୟପ, ଦୁଶ୍ଚରିତ୍ର ସ୍ୱାମୀ ଚନ୍ଦ୍ରମଣି ଆଦର୍ଶ ସ୍ୱାମୀ ହୋଇପାରନ୍ତି; 'କୁଜ ପରି ନଇଁ ନଇଁ ଗୋଡ଼ ଟିପି ଗମନା, ମୁଖ ଚନ୍ଦ୍ର ଆବୃତ୍ତ ହାତେ ଲମ୍ବ ଓଢ଼ଣୀ'ଯୁକ୍ତା ଲଜ୍ଜାଶୀଳା ନବବଧୂ ମୋହିନୀ ସହିତରେ, ସ୍ୱାଭାବିକ-ଆଳାପ-ଆଲୋଚନା-ତତ୍ପର ହୋଇ ପାରନ୍ତି, ଏପରି ଦୃଢ଼ ବିଶ୍ୱାସ ଥିଲା ଫକୀରମୋହନଙ୍କର । ସେହିପରି ସବୁ ସାହୁକାର ଧନାଢ଼୍ୟ ଲୋକ ଯେ ମହାମପୁରର କୁବେର ସାହୁ ଭଳି ଶୋଷକ, ପୀଡ଼ନକାରୀ ନୁହନ୍ତି, ଯୁଧିଷ୍ଠିର ସାହୁ ପରି ଆଦର୍ଶ ଧର୍ମପ୍ରାଣ ସାହୁକାର ବ୍ୟବସାୟୀ ଯେ ଦୁନିଆରେ ସମ୍ଭବ ଏହା ମଧ୍ୟ ତାଙ୍କର ଯଥାର୍ଥ ଶିଳ୍ପୀସୁଲଭ ଉଦାର ହୃଦୟ ସ୍ୱୀକାର କରିଛି ।

ଫକୀରମୋହନ ଗଳ୍ପ ରଚନାରେ ନାନାବିଧ ରୀତିର ପରୀକ୍ଷା କରି ଯାଇ ଅଛନ୍ତି । କେଳ ବିଳାପମୟ ରୀତିରେ ତାଙ୍କର କାଳିକାପ୍ରସାଦ ଗୋବିପ, ଅଜା ନାତି କଥା ଲିଖିତ । ସେହିପରି ସ୍ୱଳ୍ପ ବିଳାପ ସମ୍ପନ୍ନ ଗଳ୍ପ ଲେଖିବାରେ ମଧ୍ୟ ଫକୀରମୋହନ ଦକ୍ଷତା ପ୍ରକାଶ କରି ଅଛନ୍ତି । ରଚନାରୀତି ଦୃଷ୍ଟିରୁ ଗଳ୍ପକୁ ତିନି ଭାଗରେ ବିଭକ୍ତ କରାଯାଇପାରେ; ଯଥା—କଥାବସ୍ତୁ-ପ୍ରଧାନ, ଚରିତ୍ର ପ୍ରଧାନ ଓ ପରିବେଶ-ପ୍ରଧାନ । ଅର୍ଥାତ୍ କେଉଁ ଗଳ୍ପରେ ପ୍ରଥମେ କଥାବସ୍ତୁ ପରିକଳ୍ପନା କରି ପରେ ତାହାକୁ କେନ୍ଦ୍ର କରି ଉପଯୋଗୀ ଚରିତ୍ର ସୃଷ୍ଟି କରାଯାଇଥାଏ ; କେଉଁ ଗଳ୍ପରେ ମୁଖ୍ୟ ଚରିତ୍ରକୁ କେତେକ ଘଟଣା ଓ ପରିସ୍ଥିତି ମଧ୍ୟରେ ଗତି କରାଇ

ତାହାକୁ ପ୍ରସ୍ଫୁଟିତ କରାଯାଇ ଥାଏ କିମ୍ବା କେଉଁ ଗଳ୍ପରେ ପରିବେଶକୁ ପ୍ରକାଶ କରିବାକୁ ଚରିତ୍ର ଓ ଘଟଣାର ସମାବେଶ କରାଯାଇଥାଏ । ଫକୀରମୋହନଙ୍କ ଗଳ୍ପଗୁଡ଼ିକରେ ପୂର୍ବୋକ୍ତ ତ୍ରିବିଧ ରୀତିର ନିଦର୍ଶନ ମିଳେ ।

ଏତଦ୍‌ବ୍ୟତୀତ ପ୍ରତ୍ୟେକଟି ଗଳ୍ପରେ ଲେଖକ ଦକ୍ଷତାର ସହିତ ନିଜ ଉଦ୍ଦେଶ୍ୟକୁ ଗଳ୍ପର ଉପସଂହାର ପର୍ଯ୍ୟନ୍ତ ପ୍ରଚ୍ଛନ୍ନ ରଖି ପାଠକକୁ ଗଳ୍ପର ସମାପ୍ତି ପର୍ଯ୍ୟନ୍ତ କୌତୁହଳୀ ଓ ଉତ୍କଣ୍ଠିତ କରାଇ ଅଛନ୍ତି । ଆକସ୍ମିକ, ଅପ୍ରତ୍ୟାଶିତ ଘଟଣା ସମାବେଶ ଦ୍ୱାରା ପାଠକର ବିସ୍ମୟ ସମ୍ପାଦନ କରାଇ ଅଛନ୍ତି । ରାଣ୍ଡୀପୁଅ ଅନନ୍ତା, ରେବତୀ, ପେଟେଣ୍ଟ ମେଡ଼ିସିନ, ସଭ୍ୟ ଜମିଦାର, ବଗଲ-ବଗୁଲି ପ୍ରଭୃତି ଗଳ୍ପଗୁଡ଼ିକର ଉପସଂହାର ଏକାନ୍ତଭାବେ ଆକସ୍ମିକ ଓ ଅପ୍ରତ୍ୟାଶିତ ।

ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପଗୁଡ଼ିକ ପ୍ରଚୁର ବ୍ୟଙ୍ଗ ଓ ହାସ୍ୟରସ-ମିଶ୍ରିତ । ସଂଳାପ ଯୋଜନା, ଘଟଣା ବିନ୍ୟାସ, ଚରିତ୍ର ପରିକଳ୍ପନା ଏହି ତ୍ରିବିଧ କ୍ଷେତ୍ରରେ ଏହାର ପର୍ଯ୍ୟାପ୍ତ ନିଦର୍ଶନ ମିଳେ ।

କହିବାକୁ ଗଲେ ହାସ୍ୟରସ ସ୍ରଷ୍ଟାଭାବେ ଫକୀରମୋହନ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏ ଯାବତ୍ ଅପ୍ରତିଦ୍ୱନ୍ଦୀ ହୋଇ ରହିଛନ୍ତି । ତାଙ୍କର ରାଣ୍ଡୀପୁଅ ଅନନ୍ତା, ପେଟେଣ୍ଟ ମେଡ଼ିସିନ, ଧୂଳିଆବାବା, ସୁନାବୋହୂ, ପୁନର୍ମୂଷିକୋ ଭବ, ପାଠୋଇ ବୋହୂ, ସଭ୍ୟ ଜମିଦାର ପ୍ରଭୃତି ଗଳ୍ପଗୁଡ଼ିକ ହାସ୍ୟରସର ଅସରନ୍ତି ନିର୍ଝର ସ୍ୱରୂପ । ସେହିପରି ବୟୋଜ୍ୟେଷ୍ଠାନ୍ତ ବା କରୁଣ ରସାତ୍ମକ ଗଳ୍ପ ଭାବରେ ରେବତୀ ଓ ବଗଲ-ବଗୁଲି ଉଲ୍ଲେଖଯୋଗ୍ୟ ।

କ୍ଷୁଦ୍ର ଗଳ୍ପରେ ଗୋଟିଏ ମାତ୍ର ପରିଣାମ-ସମ୍ପନ୍ନ ପୂର୍ଣ୍ଣାବୟବ ଘଟଣା ବର୍ଣ୍ଣିତ ହେବା ବିଧେୟ । ତା' ନୋହିଲେ ଗଳ୍ପର Unity ବା ଏକତ୍ୱ ବ୍ୟାହତ ହୁଏ ଓ ପାଠକ ମନରେ ବର୍ଣ୍ଣିତ କଥାବସ୍ତୁ ରେଖାପାତ କରିବାକୁ ଅସମର୍ଥ ହୁଏ । ଫକୀରମୋହନଙ୍କ କେତେକ ଗଳ୍ପରେ ଗୋଟିଏ ଗୋଟିଏ ପ୍ରଧାନ ଘଟଣା ବିବୃତ ହୋଇ ଥିଲେହେଁ, ଆଉ କେତେକ ଗଳ୍ପରେ ଲେଖକ ଘଟଣାବହୁଳ କଥାକୁ ଗ୍ରେଥିତ କରି କହିବାକୁ ପ୍ରୟାସ କରିଛନ୍ତି ।

ଉପନ୍ୟାସରେ ତଥ୍ୟବହୁଳତା ଓ ଅବାନ୍ତର କଥାର ଉପସ୍ଥାପନା ଚଳଣୀୟ ବା ଶୋଭନୀୟ ହୋଇପାରେ; ମାତ୍ର ତଥ୍ୟର ନ୍ୟୂନତମତାରେହିଁ କ୍ଷୁଦ୍ର ଗଳ୍ପ ଦୀପ୍ତିମାନ ହୁଏ । ତେଣୁ ସେ ସବୁ ଅନାବଶ୍ୟକ ବା ତଥ୍ୟପୂର୍ଣ୍ଣ ବିଷୟ ବର୍ଜନ କରିବାହିଁ କ୍ଷୁଦ୍ର ଗଳ୍ପର ନୀତି । ଫକୀରମୋହନଙ୍କ କେତୋଟି ଗଳ୍ପ ତଥ୍ୟବହୁଳତା ଓ ଅବାନ୍ତର ବିଷୟ ଅବତାରଣା ଯୋଗୁ ସ୍ଥାନେ ସ୍ଥାନେ ତ୍ରୁଟିଯୁକ୍ତ ହୋଇଛି । ସେ ଗୋଟିଏ ଗୋଟିଏ ଗଳ୍ପରେ ବହୁ ନରନାରୀଙ୍କ ଚରିତ୍ର ସମାବେଶ କରିଛନ୍ତି; ଗଳ୍ପର ପ୍ରାରମ୍ଭରେ ଯେଉଁ ଚରିତ୍ରକୁ ଉପୋଜ୍ଜ୍ୱଳ କରିଛନ୍ତି ଉପସଂହାର ବେଳକୁ ସେମାନଙ୍କ ପ୍ରତି ଅବିଚାର କରିଛନ୍ତି । ଉଦାହରଣ ସ୍ୱରୂପ ରାଣ୍ଡୀପୁଅ ଅନନ୍ତା ଗଳ୍ପରେ ସୁବଳ ମହାକୁଡ଼ ଜୀବନର ବହୁ ଘଟଣାର ଦୀର୍ଘ ବର୍ଣ୍ଣନା; ଅଧର୍ମବିତ୍ତ ଗଳ୍ପରେ ନରହରିପୁର ବ୍ରାହ୍ମଣ ଶାସନର ବ୍ରାହ୍ମଣ ସଭାର ବର୍ଣ୍ଣନା ଏବଂ ସଭ୍ୟ ଜମିଦାର ଗଳ୍ପରେ ରାଜୀବଲୋଚନ ମୁଖ୍ୟ ଚରିତ୍ର ହେଲେହେଁ ତାହାଙ୍କ ପିତା ଗୋପାଳଙ୍କର ବାଲ୍ୟାବସ୍ଥାରୁ ମୃତ୍ୟୁ ପର୍ଯ୍ୟନ୍ତ ବର୍ଣ୍ଣନା ଅନାବଶ୍ୟକ । ସେହିପରି ତାଙ୍କର କେତୋଟି ଗଳ୍ପ ଏକାନ୍ତଭାବେ ତଥ୍ୟବହୁଳ ।

ଏହାର କାରଣ ଫକୀରମୋହନଙ୍କ ଶୈଳୀ ମୁଖ୍ୟତଃ ଉପନ୍ୟାସ ଧର୍ମୀ । ତଥ୍ୟ ବର୍ଜନ କରି ସୂକ୍ଷ୍ମ ରେଖା-ଚିତ୍ର ସମ୍ପନ୍ନ କ୍ଷୁଦ୍ର ଗଳ୍ପ ରଚନା ବିଧି ବିଷୟରେ ସେ ବିଶେଷ ମନୋଯୋଗୀ ହୋଇ ପାରି ନାହାନ୍ତି । ତେଣୁ ତାଙ୍କର ବହୁ ଗଳ୍ପ ଉପନ୍ୟାସ ଧର୍ମୀହାନ୍ତି ଓ ଉପନ୍ୟାସ ରୀତି ପ୍ରଭାବରେ ଅନ୍ତରଞ୍ଜିତ ହୋଇ ପଡ଼ିଛି କିମ୍ବା ଭ୍ରମବଶତଃ ବହୁ ଘଟଣାବହୁଳ କଥାକୁ ସଂକ୍ଷେପରେ କହିବା ରୀତିକୁ ସେ କ୍ଷୁଦ୍ର କାହାଣୀ ମନେ କରିଛନ୍ତି ।

ଉପସଂହାରରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଫକୀରମୋହନ ବୃଦ୍ଧାବସ୍ଥାରେ ଗଳ୍ପ ରଚନାରେ ମନୋନିବେଶ କରିଥିଲେହେଁ ତାଙ୍କର ଗଳ୍ପଗୁଡ଼ିକରେ ଆମେ ଏକ ଜରାବିଜୟୀ, ଚିର ସରସ, ହାସ୍ୟ ସମୁଜ୍ଜ୍ୱଳ, ପ୍ରୀତି ସ୍ନିଗ୍ଧ ଓ କରୁଣାର୍ଦ୍ର ମନର ସଞ୍ଚରଣ ଦେଖିବାକୁ ପାଉ । କଥ୍ୟ ଭାଷାର ଆଦର୍ଶରେ ସେ ଯେଉଁ ଅମର କ୍ଷୁଦ୍ର ଗଳ୍ପର ପ୍ରବର୍ତ୍ତନ କରି ପାରିଛନ୍ତି ତାହାର ଅନୁବର୍ତ୍ତନହିଁ ଆଜି ଓଡ଼ିଆ ସାହିତ୍ୟରେ ଚାଲିଛି । ଐତିହାସିକ, ଶୈଳ୍ପିକ ତଥା ମନସ୍ତାତ୍ତ୍ୱିକତା ଦୃଷ୍ଟିରୁ ତାଙ୍କର ଗଳ୍ପଗୁଡ଼ିକ ସାହିତ୍ୟରେ ଚିର ସ୍ମରଣୀୟ ହୋଇ ରହିବା ଏକାନ୍ତ ସ୍ୱାଭାବିକ ।



# ସାମ୍ପ୍ରତିକ କବିତାର ନୂତନ ଛନ୍ଦ

## ଅତ୍ୟାଧୁନିକ କବିତାର ପ୍ରଥମ ପର୍ଯ୍ୟାୟ--

ବିଗତ ପ୍ରାୟ ତିରିଶ ବର୍ଷ ହେଲା ଓଡ଼ିଆ କାବ୍ୟ-କବିତା କ୍ଷେତ୍ରରେ ମୁକ୍ତଛନ୍ଦ ଓ ଗଦ୍ୟଛନ୍ଦର ପ୍ରଚଳନ ଆରମ୍ଭ ହୋଇଛି । ଏଣୁ ମୋଟାମୋଟି ଭାବେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବା ସମୟରୁ ଏହି ଅଭିନବ ଛନ୍ଦର ସୂତ୍ରପାତ ହୋଇଛି କହିଲେ ଭୁଲ ହେବନାହିଁ । ସାମ୍ପ୍ରତିକ ଓଡ଼ିଆ ଗୀତି-କବିତାରେ ଏହି ଛନ୍ଦର ବ୍ୟାପକ ବ୍ୟବହାର ପରିଲକ୍ଷିତ ହେଉଛି । ଓଡ଼ିଶାର ଯେ କୌଣସି ଆଧୁନିକ ସାହିତ୍ୟ ପତ୍ରିକାର କବିତା ବିଭାଗ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଏହାର ସତ୍ୟତା ଉପଲବ୍ଧି କରି ହେବ । ମାତ୍ର ଏହି ଛନ୍ଦ ସମ୍ପ୍ରତି ପରୀକ୍ଷାର କଣ୍ଟକ ଶଯ୍ୟାରୁ ଉତ୍ତୀର୍ଣ୍ଣ ହୋଇ ସାରିଛି ବୋଲି ଦୃଢ଼ତାର ସହିତ କହି ହେବ ନାହିଁ । ସେହି ଦୃଷ୍ଟିରୁ ଏ ନବ ନିୟୋଜିତ ଛନ୍ଦର ଉପଯୋଗିତା ଓ ସ୍ୱରୂପ ସମ୍ପର୍କରେ ଆଲୋଚନା ବିଧେୟ ।

## ଏହି ରୀତିର ପରୀକ୍ଷା ସମ୍ପୂର୍ଣ୍ଣ ଆକସ୍ମିକ ନୁହେଁ—

ବହୁ ସମାଲୋଚକ କାବ୍ୟ ସାହିତ୍ୟରେ ଏହି ନବାଗତ ଛନ୍ଦକୁ କବିର ବଦ୍‌ଖେୟାଲ ପ୍ରସୂତ ମନେକରି ତାହାପ୍ରତି ନାସିକା-କୁଞ୍ଚନ କରୁଥିବା ଶୁଣାଯାଏ । ମାତ୍ର ଆଧୁନିକ କାବ୍ୟ ସାହିତ୍ୟ କ୍ଷେତ୍ରରେ ଏହି ରୀତିର ଛନ୍ଦପ୍ରୟୋଗ ଓ ପରୀକ୍ଷା ସମ୍ପୂର୍ଣ୍ଣ ଏକ

ଆକସ୍ମିକ ବ୍ୟାପାର ନୁହେଁ; ବରଂ ସ୍ୱତନ୍ତ୍ର ପ୍ରକାରରେ ଐତିହାସିକ ପୃଷ୍ଠଭୂମିକାରେ ଏହି ଛନ୍ଦର ଅନୁପ୍ରବେଶ ଅନିବାର୍ଯ୍ୟ ମନେହୁଏ । ଆଧୁନିକ ପଦ୍ୟ ସାହିତ୍ୟର ବିଷୟବସ୍ତୁ ନିର୍ବାଚନ କ୍ଷେତ୍ରରେ ଯେଉଁ ସୁବିପୁଳ ପରିବର୍ତ୍ତନ ଦେଖାଦେଇଛି ଏବଂ ଯେଉଁ ଅଭିନବ ଦୃଷ୍ଟିଭଙ୍ଗି ଦୃଷ୍ଟିଗୋଚର ହେଉଛି, ତାହାହିଁ ଏହି ଛନ୍ଦ ପ୍ରୟୋଗର ପ୍ରଧାନ ହେତୁ । ଆଧୁନିକ ଜୀବନର ଅସ୍ଥିରତା, ମାନସିକ ଦ୍ୱନ୍ଦ୍ୱ, ବାସ୍ତବ ଅଭିଜ୍ଞତା, ନୂଆ ଜୀବନର ସ୍ୱପ୍ନ ଓ ପରିକଳ୍ପନା, ସତ୍ୟ ବା କଳ୍ପିତ ସ୍ୱବାତନ୍ତ୍ର୍ୟ, ଆଶାଭଙ୍ଗ ପ୍ରଭୃତି ଭାବଚିନ୍ତାର ଅଶେଷ ବୈଚିତ୍ର୍ୟକୁ ଅନ୍ତ୍ୟମିଳନ ଓ ସୁନିର୍ଦ୍ଦିଷ୍ଟ ସଙ୍ଗୀତମୟ ବୃତ୍ତପ୍ରବାହର ସଂକୀର୍ଣ୍ଣ ପଥରେ ପ୍ରକାଶ କରିବା ସମ୍ଭବପର ନୁହେଁ । ଆଧୁନିକ କବିତା କ୍ଷେତ୍ରରେ ସେଥିପାଇଁ ଏହି ମୁକ୍ତଛନ୍ଦର ନିୟୋଜନ ଅପରିହାର୍ଯ୍ୟ ମନେ ହୁଏ ।

ଏ ଯାବତ ଓଡ଼ିଆ କାବ୍ୟ କବିତା ସଙ୍ଗୀତ ଓ ସ୍ୱରର ସୁଲଳିତ ପ୍ରଭାବରେ ଉଦ୍‌ଭାସିତ ହେଉଥିଲା । ତେଣୁ ଅନ୍ତ୍ୟମିଳନ ଓ ବୃତ୍ତପ୍ରବାହର ସଙ୍ଗୀତମୟତା ଥିଲା କବିତାର ଅପରିହାର୍ଯ୍ୟ ଅଙ୍ଗ । ଅନେକ ସମୟରେ କବିତାରେ ଭାବ ଅପେକ୍ଷା ଅଳଂକରଣ ସଙ୍ଗୀତ, ଯତିପାତ ଓ ଅନ୍ତ୍ୟମିଳନ ପ୍ରତି ଅଧିକ ଗୁରୁତ୍ୱ ଅପିତ ହେଉଥିଲା । ମାତ୍ର କବିତାକୁ ବକ୍ତବ୍ୟ ବିଷୟ ଉପରେ ସ୍ଥିର ଓ ସୁଦୃଢ଼ ଭାବେ ଦଣ୍ଡାୟମାନ କରାଇବା ଲାଗି ଏ ଯୁଗର କବି ମାନସ ଅଭିଳାଷୀ । ସେଥିପାଇଁ କେବଳ ଭାବ ପ୍ରବାହର ପ୍ରବହମାନତା ଓ ଧ୍ୱନି ପ୍ରବାହର ଆବେଗ ଉପରେହିଁ କବିତାକୁ ପ୍ରତିଷ୍ଠିତ କରିବାକୁ ଆଧୁନିକ କବି ପ୍ରଯତ୍ନଶୀଳ । ଏହାହିଁ ସଂକ୍ଷେପରେ ମୁକ୍ତଛନ୍ଦ ଓ ତାହାର ବ୍ୟାପକ ବ୍ୟବହାରର ହେତୁ । କବିସୂର୍ଯ୍ୟ ବଳଦେବ ରଥଙ୍କ 'ଖରାପ ତୁ ହେଲୁଟିର' ପଦ୍ୟଟିରେ ବକ୍ତବ୍ୟ ବା ଭାବର

ସ୍ୱଳ୍ପତା ସତ୍ତ୍ୱେ କବି ତାହାଁରେ ଛନ୍ଦ, ବୃତ୍ତପ୍ରବାହ, ଧ୍ୱନିମାଧୁର୍ଯ୍ୟ ଓ ଅଳଙ୍କାର ସମାବେଶ ଲାଗି ଅଧିକ ଆଗ୍ରହୀ । ମାତ୍ର ଅନନ୍ତ ପଟ୍ଟନାୟକଙ୍କ 'ସମ୍ବାଦ' ବା ଗୁରୁପ୍ରସାଦ ମହାନ୍ତିଙ୍କର 'କାଳପୁରୁଷ' କବିତାରେ କବି ମାନସ, ଛନ୍ଦ ପ୍ରବାହ, ସଙ୍ଗୀତ ବା ଅନ୍ତ୍ୟମିଳନ ପ୍ରତି ସର୍ବଶେଷ ଆଗ୍ରହୀ ନ ହୋଇ କପରି ଭାବ ପ୍ରବାହର ଗତି-ଶୀଳତା ଓ ଧ୍ୱନି ପ୍ରବାହର ଆବେଗ ପ୍ରତି ଅଧିକ ଅନୁରାଗୀ ତାହା ଦ୍ରଷ୍ଟବ୍ୟ ।

**ତଥାପି ଏହି ଛନ୍ଦର ସ୍ୱରୂପ ଅସ୍ଥିର ଓ ଅନିର୍ଦ୍ଦିଷ୍ଟ—**

ଆଧୁନିକ ଇଂରାଜୀ ଓ ବଙ୍ଗଳା କବିତା ଅନୁକରଣରେ ଏହି ଛନ୍ଦ ଆଧୁନିକ ଓଡ଼ିଆ କବିତାରେ ନିୟୋଜିତ ହେଉଥିଲେହେଁ, ଏହି ଛନ୍ଦର ରୀତି, ପ୍ରକୃତି ଓ ସଂଜ୍ଞା ସନ୍ତୋଷଜନକ ଭାବେ ପ୍ରଦତ୍ତ ହୋଇ ପାରିନାହିଁ । ଆଧୁନିକ ଇଂରାଜୀ ମୁକ୍ତ ଛନ୍ଦ ସମ୍ପର୍କରେ ଆଜି ମଧ୍ୟ ଏହି କଥା କୁହାଯାଇ ପାରେ । ଏହି ସଂପର୍କରେ ନିମ୍ନୋକ୍ତ ଉକ୍ତି ପ୍ରଣିଧାନ ଯୋଗ୍ୟ—

"No satisfactory defination of this form of poetical eomposition has generally been accep. ted, but the term is loosely used for rimed and unrimed verse, made free of conventional and traditional limitations and restrictions in regard to metrical structure. Cadence specially the cadence of common speech is often substituted for rhythmical meter."

Colombia Encyclopaedia.

ଅର୍ଥାତ୍ ଏହି ଛନ୍ଦ ସମ୍ପର୍କରେ ସନ୍ତୋଷଜନକ ସଂଜ୍ଞା ଗୃହୀତ ହୋଇନାହିଁ । ପ୍ରାଚୀନ ପାରଂପରିକ ଛନ୍ଦର ଗଠନପଦ୍ଧତି ଓ ପଦମିଳନ ରୀତି ଅନୁସରଣକୁ ଏହି ଛନ୍ଦ ସ୍ୱୀକାର କରେ ନାହିଁ । ମାତ୍ର ତତ୍‌ପରିବର୍ତ୍ତେ ଧ୍ୱନିଗୁଚ୍ଛର ପ୍ରାନ୍ତବର୍ତ୍ତୀ ଲୟ ବା codence ଉପରେ ଗୁରୁତ୍ୱ ଦେବାହିଁ ଏହି ଛନ୍ଦର ଲକ୍ଷ୍ୟଭାବେ ସ୍ୱୀକୃତ । କବିତା ଆଙ୍ଗିକ (form) ଅପେକ୍ଷା ଭାବସମ୍ପଦ ଉପରେ ଯେ ବେଶୀ ନିର୍ଭରଶୀଳ ଏହି ମତବାଦ ମୁକ୍ତଛନ୍ଦ ପ୍ରୟୋଗ ପଛରେ ବିଦ୍ୟମାନ ।

## ଇଂରାଜୀ କବିତାର ମୁକ୍ତ ଛନ୍ଦ—

ପାଶ୍ଚାତ୍ୟ ତଥା ଇଂରାଜୀ ସାହିତ୍ୟରେ ଏହା free verse ବା veres libre ନାମରେ ସୁପରିଚିତ । ପାଶ୍ଚାତ୍ୟ ସାହିତ୍ୟରେ ମୁକ୍ତ କବିତାର ପ୍ରବର୍ତ୍ତକ ଭାବରେ ଜର୍ମାନ କବିମାନଙ୍କ ନାମ ଉଲ୍ଲେଖ କରାଯାଇ ଥାଏ । ବିଶେଷଭାବରେ ଜର୍ମାନ କବି କ୍ଲପ୍‌ଷ୍ଟକ (Klop Stock) ସର୍ବପ୍ରଥମେ ନିଜ କବିତାରେ ପ୍ରାନ୍ତ ମିଳନ ରହିତ ମୁକ୍ତ ଛନ୍ଦ ବ୍ୟବହାର କରିଥିଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ପ୍ରତୀକବାଦୀ (symbolist) ସାହିତ୍ୟିକ-ମାନଙ୍କର କାବ୍ୟକବିତାରେ ଏହା ଅନୁସୃତ ହୋଇ ଫ୍ରାନ୍‌ସ ଓ ଅନ୍ୟାନ୍ୟ ଦେଶର ସାହିତ୍ୟରେ ଜନପ୍ରିୟତା ଅର୍ଜନ କରିଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ପରେ ସମସ୍ତ ପାଶ୍ଚାତ୍ୟ ଦେଶର କାବ୍ୟ-କବିତାରେ ମୁକ୍ତ ଛନ୍ଦର ବ୍ୟାପକ ବ୍ୟବହାର ପରିଲକ୍ଷିତ ହେଲା । ଇଂଲଣ୍ଡ ଓ ଆମେରିକାରେ ଏହାର ଜନପ୍ରିୟତା ଏତାଦୃଶ ବୃଦ୍ଧି ପାଇଲା ଯେ, କ୍ରମେ ତାହା ସାହିତ୍ୟ ରାଜ୍ୟରୁ ପାରଂପରିକ ଛନ୍ଦକୁ

ଏକପ୍ରକାର ନିର୍ବାସିତ କରି ଦେଇଥିଲା । ମାତ୍ର ଅନ୍ୟାନ୍ୟ ସାହିତ୍ୟ ପରି ଇଂରାଜୀ ସାହିତ୍ୟରେ ମଧ୍ୟ ଏହା ସଂପୂର୍ଣ୍ଣ ଅଭିନବ ଛନ୍ଦଭାବେ ପରିଗୃହୀତ ହୁଏ ନାହିଁ । କେତେକ ଇଂରାଜୀ ଛନ୍ଦବିତ୍‌ଙ୍କ ମତରେ ବାଇବେଲର Songs of Solomon, ସାର୍ ଥୋମାସ୍ ବ୍ରାଉନ୍‌ର ବହୁ ଅଂଶ ଏବଂ ଭିକ୍ଟୋରିଆ ଯୁଗର କବି ମାଥ୍ୟୁ ଆର୍ନୋଲ୍ଡ୍‌ଙ୍କ ରଚନାବଳୀରୁ କେତେକ ଅଂଶ ସଂପୂର୍ଣ୍ଣଭାବେ ଏହି ଗଦ୍ୟ ଛନ୍ଦରେ ହିଁ ଲିଖିତ ।

ଏହି ଛନ୍ଦର ପ୍ରବର୍ତ୍ତକ ଓ ସାର୍ଥକ ନିୟୋଜନକାରୀଭାବେ ପ୍ରତୀକବାଦୀ କବି F. S. Flint, Richard Aldington, Walt Whitman ଏବଂ T.S. Eliotଙ୍କ ନାମ ଉଲ୍ଲେଖଯୋଗ୍ୟ । ଆମେରିକାର କବିମାନଙ୍କ ମଧ୍ୟରୁ ଏଜରା ପାଉଣ୍ଡ, H. D. Connad, Aiken, Carl Sandburg ପ୍ରଭୃତିଙ୍କ ନାମ ମଧ୍ୟ ସ୍ମରଣୀୟ । ସାମ୍ପ୍ରତିକ କାଳର ଇଂରେଜ କବିମାନେ ମୁଖ୍ୟତଃ ଏହି ଛନ୍ଦକୁହିଁ ବ୍ୟାପକଭାବେ ଭାବ ପ୍ରକାଶର ମାଧ୍ୟମଭାବେ ଗ୍ରହଣ କରିଅଛନ୍ତି ।

## ସଂସ୍କୃତ ସାହିତ୍ୟରେ ଏହାର ବିଦ୍ୟମାନତା—

ଛନ୍ଦର ଅନ୍ତଃଶୀଳ ଧାରା ଗଦ୍ୟ ଓ ପଦ୍ୟ ଉଭୟବିଧ ରଚନାରେ ଯେ ଅନୁଭୂତ ହୁଏ ଏହା ଉଲ୍ଲେଖ କରିବା ଦ୍ୱିରୁକ୍ତି ମାତ୍ର । ପଦ୍ୟରେ ଛନ୍ଦ ରହିବା ତ ଏକ ସ୍ୱାଭାବିକ ଘଟଣା । ମାତ୍ର ଗଦ୍ୟରେ ମଧ୍ୟ ଛନ୍ଦର ବିଦ୍ୟମାନତା ଗଦ୍ୟସାହିତ୍ୟର ସୃଷ୍ଟି ହେବା ସମୟରୁ ପ୍ରତ୍ୟକ୍ଷୀଭୂତ । ଯେଉଁଠି ଗଦ୍ୟରଚନା ରସମୟ ହୋଇ ଉଠିଛି, ସେଠାରେ ଛନ୍ଦ ଅତି ନିର୍ଦ୍ଦିଷ୍ଟ ରୂପସମ୍ପନ୍ନ ନ ହେଲେ

ମଧ୍ୟ ତାହା ମଧ୍ୟରେ ଛନ୍ଦର ଗନ୍ଧ ମିଳାଯାଇ ଦୋଇ ଉଠିଛି । ପୃଥିବୀର ଆଦିମତମ ରଚନା ବୈଦିକ ସାହିତ୍ୟରେ ମଧ୍ୟ ଗଦ୍ୟ ଛନ୍ଦରେ ଲିଖିତ ବହୁ ରଚନା ପରିଦୃଷ୍ଟ ହୁଏ । ବିଶେଷତଃ ଯଜୁର୍ବେଦ ସଂହିତା ଓ ଛାନ୍ଦୋଗ୍ୟ ଉପନିଷଦର ଛନ୍ଦୋମୟ ଗଦ୍ୟକୁ ଏହି ସମ୍ପର୍କରେ ଉଲ୍ଲେଖ କରାଯାଇ ପାରେ । ଉଦାହରଣ ସ୍ୱରୂପ—

ଏଷାଂ ଭୂତାନାଂ ପୃଥିବୀ ରସଃ ପୃଥିବ୍ୟା ଆପୋ ରସଃ ।
ଆପାମୋଷଧି ରସଃ ଓଷଧୀନାଂ ପୁରୁଷୋରସଃ
ପୁରୁଷସ୍ୟ ବାଗ୍‌ରସେ ବଚରୁଗ୍‌ରସ ଋତଃ ସାମ ରସଃ ।
(ଛାନ୍ଦୋଗ୍ୟ ଉପନିଷଦ ଅ ୧।୨ ପଦ)

ପୁନଶ୍ଚ—

ଯ୍ରତ କୁଣ୍ଡୁତାଗ୍ନି ବହ୍ନାଗ୍ନି ଯଁକ୍ଷୋ ବନଚ୍ଛନ୍ତ ଯଁଜ୍ଞିୟା ।
ଦୈବ୍ୟାଂ ଧିୟଂମନାମହେ ସୁମୃଡିକା ମଭିଷ୍ଟୟେ
ବର୍ଚୋଧାଂ ଯଜ୍ଞ ବାହସ ସୁତୀର୍ଥା ନୋ ଅସଦ୍‌ବସେ ।
ଯେ ଦେବା ମନୋଯାତା ମନୋଯୁଜୋ ଦକ୍ଷକ୍ରତବସ୍ତେ
ନୋବନ୍ତୁ ତେନଃ ପାନ୍ତୁ ତେଭ୍ୟଃ ସ୍ୱାହା ।
(ଯଜୁର୍ବେଦ ସଂହିତା—ଅ ୪।୧୧)

ଅତି ଅର୍ବାଚୀନ ମଧ୍ୟ ସଂସ୍କୃତ କବିମାନେ କେତେକ ଗଦ୍ୟ କବିତାକୁ ଆଶ୍ରୟ କରି କବିତା ରଚନା କରିଛନ୍ତି ପଣ୍ଡିତ ନୀଳକଣ୍ଠ ଦାଶ ଗଦ୍ୟ କବିତା ପ୍ରବନ୍ଧରେ ଆଲୋଚନା କରିଅଛନ୍ତି—

ଧ୍ୟାୟେ, ସୁବର୍ଣ୍ଣବର୍ଣ୍ଣାଭାଂ, ତ୍ରିନେତ୍ରାଂ, ଗୁରୁହାସିନୀଂ,
ସର୍ବଲକ୍ଷଣସମ୍ପନ୍ନାଂ, ଅର୍ଦ୍ଧେନ୍ଦୁକୃତଶେଖରାଂ,
ଚତୁର୍ଭୁଜାଂ, ଶଙ୍ଖଚକ୍ରଧରାଂ ବାଳାଂ, ସୁରୂପିଣୀଂ,
ଉଦ୍ୟଦ୍‌ରବିଶତଲିଭିନ୍ନ ମହିଷାଂ······ଇତ୍ୟାଦି ।
(ଓଡ଼ିଆ ଭାଷା ଓ ସାହିତ୍ୟ—ପୃ ୯୪)

ଏତଦ୍‌ବ୍ୟତୀତ ସଂସ୍କୃତ ଆଲଂକାରିକମାନେ ଗଦ୍ୟ ରଚନାର ଯେଉଁ ବିବିଧ ଶୈଳୀ ନିର୍ଦ୍ଧାରଣ କରି ଯାଇଅଛନ୍ତି, ତନ୍ମଧ୍ୟରୁ ମୁକ୍ତକ, ଚୂର୍ଣ୍ଣକ, ବୃତ୍ତ-ଗନ୍ଧି ଓ ଉତ୍କଳକାପ୍ରାୟ ପ୍ରଭୃତି ପ୍ରଧାନ । ଏମାନଙ୍କ ମଧ୍ୟରୁ ବୃତ୍ତଗନ୍ଧି ନାମକ ଶୈଳୀ ଛନ୍ଦୋମୟ ଓ ଲୟଯୁକ୍ତ ହୋଇଥାଏ (ଗଦ୍ୟ ବୃତ୍ତନୁ ଗନ୍ଧି ସ୍ୟାତ୍ । ବାଣଭଟ୍ଟଙ୍କ କଥା-ସାହିତ୍ୟ କାଦମ୍ବରୀ ଗ୍ରନ୍ଥରୁ ଏହି ଶୈଳୀର ପ୍ରକୃଷ୍ଟ ନିଦର୍ଶନ ମିଳେ । "କାମିନୀବ ଚନ୍ଦନ-ମୃଗମଦ-ପରିମଳ-ବାହିନୀ, ରୁଚିରାଗୁରୁ ତିଲକ-ଭୂଷିତା ଚ, ସୋତ୍କଣ୍ଠେବ ବିବିଧ-ପଲ୍ଲବାନିଳ-ବିଜିତା ସମଦନା ଚ, ବାଳଗ୍ରୀବେବ ବ୍ୟାଘ୍ରନଖ-ପଙ୍‌କ୍ତି-ମଣ୍ଡିତା ଗଣ୍ଡକା-ଭରଣୀଚ, ପାନଭୂମିରିବ ପ୍ରକଟିତ-ମଧୁକୋଷ-ଶତା-ପ୍ରକୀର୍ଣ୍ଣ-ବିବିଧ-କୁସୁମା ଚ, କ୍ୱଚିତ୍ ପ୍ରଳୟ-ବେଳେବ ମହାବରାହ-ଦଂଷ୍ଟ୍ରା ସମୁତ୍-ଖାତ-ଧରଣୀମଣ୍ଡଳା, କ୍ୱଚିଦ୍ଦଶମୁଖ-ନଗରୀବ ଚଟୁଳ ବାନରବୃନ୍ଦ ଭଜ୍ୟମାନ-ତୁଙ୍ଗ-ଶାଳାକୁଳା କ୍ୱଚିତ ଚିର-ନିର୍ବୃତ୍ତ-ବିବାହ ଭୂମିରିବ ହରିତ-କୁଶ-ସମିତ-କୁସୁମ-ଶମୀ-ପଳାଶ-ଶୋଭିତା ।

## ଏଣୁ ଏହା ନୂତନ ପଦ୍ଧତି ନୁହେଁ—

ପୂର୍ବୋକ୍ତ ଆଲୋଚନାରୁ ଏହାହିଁ ସ୍ପଷ୍ଟ ଯେ ଗଦ୍ୟ ଛନ୍ଦ ବା ମୁକ୍ତଛନ୍ଦ ସାହିତ୍ୟ ରାଜ୍ୟରେ ସମ୍ପୂର୍ଣ୍ଣ ଏକ ନୂତନ ପଦ୍ଧତି ନୁହେଁ । ବୈଦିକ ସାହିତ୍ୟରୁ ଆରମ୍ଭ କରି ଅର୍ବାଚୀନ ସଂସ୍କୃତ ସାହିତ୍ୟ ପର୍ଯ୍ୟନ୍ତ, ବାଇବେଲରୁ ଆରମ୍ଭ କରି ଆଧୁନିକ ଇଂରାଜୀ ପଦ୍ୟ ସାହିତ୍ୟ ପର୍ଯ୍ୟନ୍ତ ଓ ଓଡ଼ିଆ ପଲ୍ଲୀଗୀତଠାରୁ ଆରମ୍ଭ କରି ରୁଦ୍ର-ସୁଧାନିଧି, ଚତୁର ବିନୋଦ ଓ ପାଣ୍ଡୁଲିପି ପର୍ଯ୍ୟନ୍ତ ପଦ୍ୟ ରଚନାରେ କିପରି ଏହି ଗଦ୍ୟ ଛନ୍ଦ ବିଦ୍ୟମାନ ତାହା ଅଧିକ ଉଦାହରଣଦ୍ୱାରା ପ୍ରତିପାଦନ କରିବାକୁ ଯିବା ଅନାବଶ୍ୟକ ।

ଅସମ ପଙ୍‌କ୍ତିର ବ୍ୟବହାର କିପରି ଓଡ଼ିଆ ପଲ୍ଲୀଗୀତଗୁଡ଼ିକରେ ମଧ୍ୟ ପରିଲକ୍ଷିତ ହୁଏ ତାହା ନିମ୍ନୋକ୍ତ ପଦ୍ୟାଂଶରୁ ଅନୁମେୟ—

"ନା ନା ଆରେ ବାଇଟି କିଆ ଝୁମୁଝି ଗୀତ ଗାଏ,
ଗାଈ ମଇଁଷି ଉହୁମା ଦେଇ ଡାଳସଜ ଖାଏ ।
ଡାଳସଜରେ କି ସୁଆଦ ଉଲଝି ପାଟେଣା
ଗୋଟିଏ ବୋହୂ କିଣି ଆଣିଥିଲି ଟେଭର ବାଉଣା ।
ସାଜ ଲୋ ବୋହୂ ସାଜ
ଖୂରି କଂସା ମାଜ
ଖୂରି ହେଲା କଣା
ବୋହୂକୁ ମାଇଲା ଠଣା
ବର ବେକରେ ଦୁଲ ପଇତା କେମନ୍ତ ସୁନ୍ଦର ସାଜେ
କନିଆ ହାତରେ ଶଙ୍ଖା ହମୁଟି ଝୁମୁରୁ ଝୁମୁରୁ ବାଜେ ।"

**ଏହାର ସ୍ୱରୂପ ଓ ରୀତି—**

ଆଧୁନିକ ଯୁଗରେ ଭାରତୀୟ କବିମାନଙ୍କ ମଧ୍ୟରୁ ପ୍ରଥମେ ରବୀନ୍ଦ୍ରନାଥ ଠାକୁର 'ଶ୍ୟାମଳୀ', 'ପୁନଶ୍ଚ', 'ଶେଷସପ୍ତକ' ପ୍ରଭୃତି କାବ୍ୟ ଗ୍ରନ୍ଥରେ ଗଦ୍ୟ ଛନ୍ଦର ଓ 'ବଳାକା', 'ପଳାତକା', 'ଆରୋଗ୍ୟ', 'ଜନ୍ମଦିନେ' ପ୍ରଭୃତି କାବ୍ୟ ଗ୍ରନ୍ଥରେ ଅସମ ପଙ୍‌କ୍ତି ଛନ୍ଦର ବ୍ୟବହାର କରିଯାଇ ଅଛନ୍ତି ଏବଂ ଏହି ଛନ୍ଦ ବ୍ୟବହାରର ସମୀଚୀନତା ଓ ଯାଥାର୍ଥ୍ୟ ପ୍ରତିପାଦନ କରି ଯାଇଅଛନ୍ତି ।

"ଗଦ୍ୟ କାବ୍ୟର ମଧ୍ୟ ଏଇ ଦଶା । ସେ ନାଚେ ନାହିଁ, ଚାଲେ । ସେ ସହଜେ ଚାଲେ ବୋଲି ତା'ର ଗତି ସର୍ବତ୍ର । ସେଇ ଗତି-ଭଙ୍ଗୀ ଅବାଧ । ଭିଡ଼ର ସ୍ପର୍ଶ ବଞ୍ଚାଇ ରଖି ପୋଷାକୀ-ଶାଢ଼ୀର ପ୍ରାନ୍ତ ଟେକିଧରି ଅଧା ଘୋଡ଼ଣା ଟାଣି ସାବଧାନ ଚାଲି ତାର ନୁହେଁ ।" (ଛନ୍ଦ—ରବୀନ୍ଦ୍ରନାଥ)

ଉଲ୍ଲିଖିତ ଉଦ୍ଧୃତାଂଶରୁ ଏହାହିଁ ସୁସ୍ପଷ୍ଟ ଯେ ନୃତ୍ୟରେ ହସ୍ତପଦାଦି ବିନ୍ୟାସର ବିଭିନ୍ନ ଭଂଗିମା ମଧ୍ୟରେ ଯେପରି ଛନ୍ଦ ଫୁଟିଉଠେ ସେହିପରି ସାଧାରଣ ଚଳିବାରେ ମଧ୍ୟ ପଦ ନିକ୍ଷେପ ଓ ହସ୍ତ ସଂଚାଳନରେ ଏକ ସାମଞ୍ଜସ୍ୟପୂର୍ଣ୍ଣ ଭଙ୍ଗୀ ବିଦ୍ୟମାନ । ଉଭୟ ଗତିରେ ଛନ୍ଦ ଅନୁଭୂତ ହୋଇଥାଏ । ଛନ୍ଦୋବଦ୍ଧ ପଦ୍ୟର ଗତିକୁ ନୃତ୍ୟର ଗତି ସହିତ ଓ ଗଦ୍ୟର ଗତିକୁ ଚଳିବା ଗତି ସହିତ ତୁଳନା କରାଯାଇ ପାରେ । ସେହିପରି ସଂଗୀତରେ ଯେପରି ସୁରର ସଂଗତି ବିଦ୍ୟମାନ, ଗଦ୍ୟମୟ ଆଳାପ ଆଲୋଚନା ଭିତରେ ସେହିପରି ଏକ ସାମଞ୍ଜସ୍ୟପୂର୍ଣ୍ଣ ଗତି ବା ଛନ୍ଦ ବିଦ୍ୟମାନ । ଗଦ୍ୟ ଆବୃତ୍ତି ବେଳେ ସୁର ଅନୁଭୂତ ହୁଏ, ମାତ୍ର ତାହା ରାଗିଣୀ ପଦବାଚ୍ୟ ନୁହେଁ । ସେଥିରେ ତାଳ, ମାନ, ସୁରର ଆଭାସ ମାତ୍ର ଅନୁଭୂତ ହୁଏ । ଗଦ୍ୟଛନ୍ଦରେ ଏହି ବାକ୍‌ଛନ୍ଦକୁହିଁ ଅନୁସରଣ କରାଯାଇଥାଏ ।

ପଦ୍ୟକାବ୍ୟରେ ଛନ୍ଦର ବିବିଧ ଶୃଙ୍ଖଳା ମଧ୍ୟରେ ବୃହତ୍ତର ଭାବ କେବଳ ଆୟାସ ସହକାରେ ବିଧୃତ ହୋଇଥାଏ । ମାତ୍ର ଗଦ୍ୟ ଛନ୍ଦ ବୃହତ୍ତର ଭାବକୁ ଅନାୟାସରେ ବହନ କରିବାକୁ ସମର୍ଥ । ଏଇ ସମ୍ପର୍କରେ ଅନ୍ୟ ଏକ ଇଂରାଜୀ ଉକ୍ତି ମଧ୍ୟ ବିଚାର୍ଯ୍ୟ—

"Successful verse libre demands a fine ear and great verbal tact in the poet. Rejecting conventional form, he must create his own less obvious patterns which may depend on his personal sense of rhythm or on calculated

associations or echoings of words and sounds, often within the line.

(Cassell's Encyclopaedia of Literature Vol I Verse Libre)

ଏଣୁ ମୁକ୍ତ କବିତା କହିଲେ ପଦମିଳନ ଯୁକ୍ତ ଅସମ ପଙ୍‌କ୍ତିର ଛନ୍ଦ ତଥା ପଦମିଳନବର୍ଜିତ ଗଦ୍ୟଛନ୍ଦ ଉଭୟକୁହିଁ ବୁଝାଇଥାଏ । ମୁକ୍ତ କବିତାର ଛନ୍ଦ ଗତି ବର୍ଣ୍ଣନା ପ୍ରସଙ୍ଗରେ ତେଣୁ କୁହାଯାଇଛି—"Free verse following no set metrical scheme, and either not rhymed or rhymed regularly" ଏଠାରେ ଅନୁପ୍ରାସଯୁକ୍ତ ଗଦ୍ୟଛନ୍ଦ ବା Sprung rhythem ବିଷୟ ଉଲ୍ଲେଖଯୋଗ୍ୟ । G. M. Hopkins ଏହି ଛନ୍ଦର ସାର୍ଥକ ପ୍ରୟୋଗ କରିବାରେ ସୁଖ୍ୟାତି ଅର୍ଜନ କରିଅଛନ୍ତି । ଉଦାହରଣ ସ୍ୱରୂପ ତାହାଙ୍କ ରଚନାରୁ ଦୁଇଟି ପଂକ୍ତି ନିମ୍ନରେ ପ୍ରଦତ୍ତ ହେଲା ।

"All things eounter, original, spare,
Strange whatever is fickle, freckled
(who knows how)

**ଗଦ୍ୟଛନ୍ଦରେ ଯତି—**

ଅନେକଙ୍କର ଧାରଣା ଗଦ୍ୟ ଛନ୍ଦରେ ଯତିପାତ ହୁଏନାହିଁ । ମାତ୍ର ମୁକ୍ତଛନ୍ଦ ତଥା ଗଦ୍ୟ ଛନ୍ଦରେ ; ଯତିପାତ ବିଦ୍ୟମାନ । ପଦ୍ୟ ଛନ୍ଦରେ ଯତିପାତର କ୍ରମ ସୁନିର୍ଦ୍ଦିଷ୍ଟ ଥାଏ । ମାତ୍ର ଗଦ୍ୟ ଛନ୍ଦରେ ସମଗ୍ର ବକ୍ତବ୍ୟର ଏକ ଏକ ପର୍ଯ୍ୟାୟରେ (strophic unity) ଓ ଗୋଟିଏ ଭାବର ପୂର୍ଣ୍ଣ ଅଭିବ୍ୟକ୍ତି ଭାଷାରେ ଯତିପାତ ହେବାହିଁ ବିଧି । ଏହାହିଁ ଗଦ୍ୟ ଛନ୍ଦ ଯତିପାତର ବିଶେଷତ୍ୱ । ମୋଟ ଉପରେ

ଏହି ଛନ୍ଦରେ ଯତିପାତର କୌଣସି ଧରାବନ୍ଧା ସୁନିର୍ଦ୍ଦିଷ୍ଟ ନିୟମନାହିଁ । ତଥାପି ମୁକ୍ତ ଛନ୍ଦରେ ଲିଖିତ କବିତାର କ୍ଷୁଦ୍ର ପଂକ୍ତିମାନଙ୍କର ଆଭ୍ୟନ୍ତରିକ ଯତି ସଂଖ୍ୟା କମ ଓ ଦୀର୍ଘ ପଂକ୍ତିମାନଙ୍କରେ ଅଧିକ ସ୍ଥାନରେ ଯତିପାତର ସମ୍ଭାବନା ଥାଏ । ଗୋଟିଏ ମୁକ୍ତ କବିତାରେ ଯତିପାତର କ୍ରମ ପରୀକ୍ଷା କଲେ ବିଷୟଟି ପ୍ରାଞ୍ଜଳ ହେବ ।

"କହୁଛି ଷ୍ଟାଲିନ୍
ଏପ୍ରିଲ ପଚିଶ ଆଗୁ' ଲାଲସେନା ଘେରିବେ ବର୍ଲିନ' ।
ଷ୍ଟାଲିନ୍‌ର କଥା କେବେ" ହୁଏ ନାହିଁ ମିଛ'
ଦୁନିଆର ପଞ୍ଜିକାର' ! ଏକଥା ତ ଅଙ୍ଗେ ନିଭାଇଛି' ।
ନୁହେଁ ଏହା ତୁମ ଅନକଥା'
ଷ୍ଟାଲିନ୍‌ର କଣ୍ଠେ ଏହା' କହୁଅଛି ବିଶ୍ୱର ଜନତା' ।"

(ପାଣ୍ଡୁଲିପି)

ଏଠାରେ ପଂକ୍ତି ଶେଷରେ ଯତିପାତ ହେଉଥିଲେହେଁ ଗୋଟିଏ ଗୋଟିଏ ଭାବର ପୂର୍ଣ୍ଣ ଅଭିବ୍ୟକ୍ତି ଉପରେହିଁ ଏହାର ଯତିପାତ ସ୍ପଷ୍ଟ । ଦୁଇ ଚରଣ ମଧ୍ୟରେ ପ୍ରାନ୍ତ ମିଳନ ହେଉଥିଲେହେଁ ଭାବର ଛନ୍ଦହିଁ ଏଠାରେ ମୁଖ୍ୟ । 'ଆଗୁ' 'କେବେ' 'ପଞ୍ଜିକାର' 'ଏହା' ଶେଷରେ ବା ଅଷ୍ଟମ ବର୍ଣ୍ଣ ଉପରେ ସ୍ୱଳ୍ପ ବିରତିର ଅବକାଶ ଥିଲେହେଁ ଏକ ଏକ ବିଷମ ପଂକ୍ତିରେ ଗୋଟିଏ ଗୋଟିଏ ଭାବର ପୂର୍ଣ୍ଣ ଅଭିବ୍ୟକ୍ତି ସାଧିତ ହୋଇଅଛି ଏବଂ ପ୍ରତ୍ୟେକ ପଂକ୍ତି ଶେଷ ବର୍ଣ୍ଣରେ ପୂର୍ଣ୍ଣ ବିରତି ଦେଉଅଛି । ଏହି ଛନ୍ଦରେ ତେଣୁ ପଦ୍ୟର ଝଂକାର ଓ ଭାବଛନ୍ଦର ସମନ୍ୱୟ ସାଧିତ ହୋଇଅଛି । ସେହି ପରି ଅନ୍ୟ ଏକ ଗଦ୍ୟ କବିତାକୁ ପରୀକ୍ଷା କରାଯାଉ—

'ଗାନ୍ଧିବାଦ', ସାମ୍ୟବାଦ' 'ଶତ ଶତ ମତ ଓ ନିୟମ'
ଗୁଡ଼ିକଙ୍କ କଣ୍ଟାପରି' ପାଦରେ ମୋ ଗୃହିଆଡ଼ୁ ବନ୍ଧେ' ।

ଷଡ଼ିର ହିସାବ ଖାତା ପାଖରେ ମୋ ଜମା ଖାଲି
ବାଲିର ପାହାଡ଼
ଆଜି ବସି ଦେଖଇ କପର
ପେଟ୍ରୋଲର ଗନ୍ଧ ତଳେ ତଳେ—
ହେନାର ବାସନା ଯାଏ ମରି ମରି ମିଳାଇ ମିଳାଇ
ବିସ୍ଫୋରଣ ତଳେ ପୁଣି ଲିଭିଯାଏ ଝୁଣା, ଧୂପ, ଘିଅ ଓ
ଆରତି
ଏଠି କେବେ ସ୍ୱପ୍ନ ଦେଖି ହୁଏ ?

(ହିଣକୁ)

ଏଠାରେ ମଧ୍ୟ ସେହିପରି ଯତିପାତର ସୁନିର୍ଦ୍ଦିଷ୍ଟତା ନାହିଁ । ଭାବର ଛନ୍ଦହିଁ ଏଠାରେ ମୁଖ୍ୟ ସ୍ଥାନ ଅଧିକାର କରିଅଛି ।

**ଗଦ୍ୟ କବିତାର ପର୍ବ ଓ ପର୍ବାଙ୍ଗ—**

କବିତା ସାଧାରଣତଃ ବହୁ ପଂକ୍ତି ବା ସ୍ତବକରେ ବିଭକ୍ତ ଏବଂ ପ୍ରତ୍ୟେକ ପଂକ୍ତି ପୁଣି ଏକାଧିକ ପର୍ବ ଓ ପର୍ବାଙ୍ଗରେ ବିଭକ୍ତ ହୋଇଥାଏ । ପ୍ରତ୍ୟେକ ପଂକ୍ତିକୁ ପାଠ କଲାବେଳେ ନିର୍ଦ୍ଦିଷ୍ଟ ସ୍ଥାନରେ ବା ଯଥାସ୍ଥାନରେ ରହି ରହି ପଢ଼ିବାକୁ ହୋଇଥାଏ । ଏହିପରି ବିଶ୍ରାମ ନେବା ବା ଲୟର ସୁନିର୍ଦ୍ଦିଷ୍ଟ ନିୟମହିଁ କାବ୍ୟର ଛନ୍ଦ । ମାତ୍ର ଗଦ୍ୟ କାବ୍ୟ ଓ ମୁକ୍ତ କବିତାରେ ପର୍ବ ଓ ପର୍ବାଙ୍ଗର ମଧ୍ୟ କୌଣସି ସୁନିର୍ଦ୍ଦିଷ୍ଟତା ନଥାଏ । ପଦ୍ୟ ଛନ୍ଦୋବଦ୍ଧ ଅନ୍ୟାନ୍ୟ କାବ୍ୟ କବିତାରେ ପ୍ରତ୍ୟେକ ପଂକ୍ତିର ପର୍ବ ସଂଖ୍ୟା ସୁନିର୍ଦ୍ଦିଷ୍ଟ । ଗଦ୍ୟ କବିତାର ପଂକ୍ତିରେ କେତେ ସଂଖ୍ୟକ ପର୍ବ, ପର୍ବାଙ୍ଗ ବା ମାତ୍ରା ରହିବ ତାହାର କୌଣସି ବିଧିବଦ୍ଧ ନିୟମ ନଥିବାରୁହିଁ ତାହାର ଯତିପାତରେ କୌଣସି ନିର୍ଦ୍ଦିଷ୍ଟ କ୍ରମ ପରିଲକ୍ଷିତ ହୁଏ ନାହିଁ ।

**ମିଶ୍ରଛନ୍ଦ—**

ଆଜି ଏକ ପ୍ରକାର ଛନ୍ଦ ଆଧୁନିକତମ କବିତାରେ ଦେଖିବାକୁ ମିଳେ; ଏହି ଜାତୀୟ ପଦ୍ୟରେ ପର୍ବସଂଖ୍ୟା ନିର୍ଦ୍ଦିଷ୍ଟ ଥାଏ, ଯତିପାତର କ୍ରମ ମଧ୍ୟ ସୁନିର୍ଦ୍ଦିଷ୍ଟ ଥାଏ, ଅଥଚ ସେହି କବିତାରେ ଅନ୍ତ୍ୟମିଳନ ସାଧିତ ହୋଇ ନଥାଏ । ଏହି ଛନ୍ଦକୁ ଅନେକେ ମୁକ୍ତ-ଛନ୍ଦ ଭାବରେ ଗ୍ରହଣ କରିଥାନ୍ତି । ମାତ୍ର ମୋର ବିବେଚନାରେ ଏହି ଛନ୍ଦକୁ ମୁକ୍ତଛନ୍ଦ ନ କହି 'ମିଶ୍ରଛନ୍ଦ' ନାମରେହିଁ ଅଭିହିତ କରିବା ସମୀଚୀନ । ଏହି ଛନ୍ଦରେ ଲିଖିତ ଏକ କବିତାର ଉଦାହରଣ—

ଯଦି' ସଞ୍ଜ ନଇଁ'        ଆସେ' ବଧୂଟି ସମ'
ଏଇ' ଧରଣୀ ଥରେ'        କଳା' ଅଳକ ଖୋଲି'
ହୃଦ' ଶଙ୍କାକୁଳେ'
ଖିରୁ ଚରଣ ତୋଳି'
ଚଳ" କାହାର ଆଶେ'        ଆଜିଗୋ' ଏ ରାଜପଥେ'
ଗତି' ଶିଥିଳ ହୋଇ'        ପଡ଼େ' ସରମ ଭରେ'

(ନୂତନ ରାଧାର ଅଭିସାର)

ଏହି କବିତାଟିରେ ଯତିପାତର କ୍ରମ, ପର୍ବ ଓ ପର୍ବାଙ୍ଗ ସଂଖ୍ୟା ସୁନିର୍ଦ୍ଦିଷ୍ଟ ଓ ନିୟମାନୁଗତ । ଗଦ୍ୟଗତିର ସ୍ୱାଧୀନତା ଏଠାରେ ନାହିଁ । ଏଣୁ ଏହା ଗଦ୍ୟ ବା ପଦ୍ୟ ଛନ୍ଦ ନ ହୋଇ ଏକ ପ୍ରକାର 'ମିଶ୍ରଛନ୍ଦ' ପଦବାଚ୍ୟ । ବହୁ ପଦ୍ୟଛନ୍ଦର ପ୍ରାନ୍ତବର୍ତ୍ତୀ ପଦମିଳନକୁ ରକ୍ଷା ନକରି ଏହିଭଳି ନାନା ପ୍ରକାରର 'ମିଶ୍ରଛନ୍ଦ' ଗତିର କବିତା ରଚନା କରାଯାଇ ପାରେ ।

## ଗଦ୍ୟକବିତାର ଭାଷାରେ ପରିବର୍ତ୍ତନ –

ଓଡ଼ିଆ ଗଦ୍ୟ ଓ ପଦ୍ୟ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ବିଦ୍ୟମାନ । ଭଞ୍ଜୀୟ କାବ୍ୟ ବା ରାଧାନାଥ କାବ୍ୟର ଭାଷାଠାରୁ ଆମ୍ଭମାନଙ୍କ ପ୍ରାତ୍ୟହିକ ଆଳାପ ଆଲୋଚନାର ଭାଷା କିପରି ପୃଥକ ତାହା କାହାରିକୁ ବୁଝାଇବା ଦରକାର ନାହିଁ । ପଦ୍ୟରେ ଆମ୍ଭେମାନେ ଏକ ପ୍ରକାର କୃତ୍ରିମ ଓ ସୌଖିନ ରୀତି ଅନୁସରଣ କରିଥାଉ । ମାତ୍ର ସେହି ସୌଖିନ ରୀତିକୁ ପରିହାର କରି ଗଦ୍ୟ ବା କଥ୍ୟ ଭାଷାର ଛନ୍ଦ ଓ ଶବ୍ଦାବଳୀକୁ କାବ୍ୟ କବିତାରେ ନିୟୋଜିତ କରିବାକୁ ଆଜିକାଲିକାର କବିମାନେ ପ୍ରୟାସୀ । ସେଥିପାଇଁ ପଦ୍ୟରାଜ୍ୟରେ ଏକଦା ଅପାଙ୍‌କ୍ତେୟ ଓ କଥ୍ୟ ଭାଷାର ସୁପ୍ରଚଳିତ ବହୁ ଶବ୍ଦ ଅନାୟାସରେ ଗଦ୍ୟ କବିତାରେ ସ୍ଥାନଲାଭ କରିଅଛି । ‘ହଉପଛେ’ ‘ଦାଢ଼େ ଦାଢ଼େ’, ‘ଦଉଛି’ ‘ଗୋଟେଅଧେ’ ଏବଂ ‘ଡେଇଅଛି’ ଏହିପରି ଅନେକ ଶବ୍ଦର ବ୍ୟବହାର ଅତ୍ୟାଧୁନିକ କବିତାରେ ପରିଲକ୍ଷିତ ହେଉଅଛି । ଶବ୍ଦ ସମାବେଶ ବା ବିନ୍ୟାସରେ ମଧ୍ୟ ଗଦ୍ୟରୀତି ଅନୁସରଣ କରାଯାଉଅଛି । ଏପର୍ଯ୍ୟନ୍ତ ଏହା ପରୀକ୍ଷାମୂଳକ ଅବସ୍ଥାରୁ ଉତ୍ତୀର୍ଣ୍ଣ ହୋଇନାହିଁ କହିଲେ ଚଳେ । ଏଣୁ ପଦ୍ୟରେ ଗଦ୍ୟବୃତ୍ତିର ଅନୁପ୍ରବେଶ ଯୋଗୁ ସ୍ଥାନେ ସ୍ଥାନେ ଯେପରି କାବ୍ୟର ଗୌରବ କ୍ଷୁନ୍ନ ହେବା ପରିଲକ୍ଷିତ ହେଉଛି, ସେହିପରି ସ୍ଥାନେ ସ୍ଥାନେ କାବ୍ୟ ଶ୍ରୀସମ୍ପନ୍ନ ହେବାର ମଧ୍ୟ ନିଦର୍ଶନ ମିଳୁଅଛି । ଗଦ୍ୟଛନ୍ଦର ଅଭିନବ ଭାଷାରୀତି ସମ୍ପର୍କରେ ଏଣୁ ରବୀନ୍ଦ୍ରନାଥ ଲେଖିଥିଲେ—“ଗଦ୍ୟକାବ୍ୟରେ ଅତି ନିରୂପିତ ଛନ୍ଦର ବନ୍ଧନ ଭାଙ୍ଗିବାଟା ଯଥେଷ୍ଟ ନୁହେଁ; ପଦ୍ୟକାବ୍ୟର ଭାଷା ଓ ପ୍ରକାଶ ରୀତିରେ ଯେଉଁ ସଲଜ୍ଜ ଅବଗୁଣ୍ଠନ ପ୍ରଥା ଅଛି, ତାକୁ ଦୂରକଲେ ତେବେ ଯାଇଁ ଗଦ୍ୟର ସ୍ୱାଧୀନ କ୍ଷେତ୍ରରେ

ତାର ସଂଚରଣ ସ୍ୱାଭାବିକ ହୋଇ ପାରିବ । ଅସଂକୁଚିତ ଗଦ୍ୟ ରୀତିରେ କାବ୍ୟର ଅଧିକାରକୁ ଅନେକ ଦୂର ବଢ଼ାଇଦେବା ସମ୍ଭବ—ଏହା ମୋର ବିଶ୍ୱାସ ଏବଂ ସେଇ ଦିଗକୁ ଲକ୍ଷ୍ୟ ରଖି ଏଇ ଗ୍ରନ୍ଥର କବିତାଗୁଡ଼ିକ ଲେଖିଛି । ଏହା ଭିତରେ କେତୋଟି କବିତା ଅଛି ସେଥିରେ ଅନ୍ତ୍ୟମିଳନ ନାହିଁ, ପଦ୍ୟଛନ୍ଦ ଅଛି, କିନ୍ତୁ ପଦ୍ୟର ବିଶେଷ ଭାଷାରୀତି ତ୍ୟାଗ କରିବାର ଚେଷ୍ଟା କରିଛି ।"

( ପୁନଶ୍ଚର ଭୂମିକା )

ଓଡ଼ିଆରେ ଗଦ୍ୟଛନ୍ଦରେ କିପରି ଏକ କଥାବସ୍ତୁକୁ ରୂପ ଦିଆଯାଇ ପାରେ ତାର ପରୀକ୍ଷା କରିଛନ୍ତି ସଚ୍ଚିଦାନନ୍ଦ ରାଉତରାୟ 'ଭାନୁମତିର ଦେଶ' କାବ୍ୟ ଗ୍ରନ୍ଥରେ । କଥ୍ୟ ଭାଷାର ରୀତିକୁ ପଦ୍ୟରେ ପ୍ରକାଶ କରିବାଲାଗି କବି ଏଠାରେ ଉଦ୍ୟମ କରିଅଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ—

"ଓଟର ବଙ୍କା କୁଜପରି
ଏଇସବୁ ଧୂମ୍ରନ୍ତ ପାହାଡ଼
ଯେମିତି ଗୋଟାଏ ଗୋଟାଏ
ମସ୍ତବଡ଼ ପିଲସଜ ।
ତା'ପରେ ସକାଳ ଆଉ ସଞ୍ଜବେଳେ
ସୂର୍ଯ୍ୟ-ଦୀପ ଜଳେ ।
ଆଉ ଏଇ ଯେଉଁ ଦିଗ ଶେଷରେ ତାଳଗଛ
ଭାନୁମତୀର ଛାଟରେ ଛାଟରେ ଫଳଭରା ଖଜୁରୀର ବିସ୍ତୀର୍ଣ୍ଣ ପାହାଚ
ସେ ସବୁ ଯେମିତି ଗୋଟାଏ ଗୋଟାଏ ବଡ଼ଖୁମ୍ବ
କାରଣ-ତା'ରି ଉପରେ ତ ପୂର୍ଣ୍ଣିମାର ସୁବର୍ଣ୍ଣ ଆରମ୍ଭ-
ଚନ୍ଦ୍ରବିମ୍ବ ଜଳେ ।"

( ଭାନୁମତୀର ଦେଶ )

ଏତଦ୍ ବ୍ୟତୀତ ସାମ୍ପ୍ରତିକ ବହୁ କବିଙ୍କ କବିତାରେ ମଧ୍ୟ ଗଦ୍ୟଗନ୍ଧି ସୌନ୍ଦର୍ଯ୍ୟ ମଣ୍ଡିତ ହୋଇ ପାରିଛି ।

## ନୂତନ ଉପମା ଓ ଅଳଙ୍କାରର ବ୍ୟବହାର—

ମୁକ୍ତଛନ୍ଦରେ ରଚିତ କାବ୍ୟ-କବିତାରେ ନାନାବିଧ ନୂତନ ଉପମାନ ଓ ଉପମେୟର ଯେପରି ବ୍ୟବହାର ପରିଲକ୍ଷିତ ହୁଏ ସେହିପରି ବିଭିନ୍ନ ରୂପକଳ୍ପ (image ) ଓ ଅଳଙ୍କାରର ସମାବେଶ ମଧ୍ୟ ଦେଖିବାକୁ ମିଳେ । ଅଳଙ୍କାରମାନଙ୍କ ମଧ୍ୟରୁ ରୂପକ, ଉପମା ଓ ଅନୁପ୍ରାସର ପ୍ରାଧାନ୍ୟ ଅନୁଭୂତ ହୁଏ । ହପ୍‌କିନ୍‌ସ ଯେଉଁ Sprung Rhythm ର ପ୍ରଚଳନ କରିଥିଲେ ସେଥିରେ ମଧ୍ୟ ଏହି ଯମକ ଓ ଅନୁପ୍ରାସର ପ୍ରାଚୁର୍ଯ୍ୟ ବିଦ୍ୟମାନ । ଯୁଦ୍ଧୋତ୍ତର ଇଂରାଜୀ କବିତାରେ ଏଗୁଡ଼ିକର ବ୍ୟବହାର ହ୍ରାସ ପାଇଥିଲେ ହେଁ କବିତାରେ ଏଗୁଡ଼ିକର ଆବଶ୍ୟକତା ଅପରିହାର୍ଯ୍ୟ । ପ୍ରଖ୍ୟାତ ଇଂରେଜ କବି ଓ ସମାଲୋଚକଙ୍କ ମତରେ—

"Aliteration, internal assonance and Repetetion are the chief instruments used by Hopkins in creating a poetry of rare concentration; we find them all used, though not at such high frequency, in post war verse"—

(A Hope for Poetry P. 42 Cecil Day Lewis)

ଟି. ଏସ୍. ଇଲିଅଟ, ପାଉଣ୍ଡ ପ୍ରଭୃତିଙ୍କ ରଚନାବଳୀରେ ମଧ୍ୟ ଏହି ଧରଣର ଅଳଙ୍କାରର ଅଭାବ ନାହିଁ । ଉଦାହରଣ ସ୍ୱରୂପ ହପ୍‌କିନ୍‌ସଙ୍କ ଏକ ସୁପରିଚିତ କବିତାର କିୟଦଂଶ ଏହିପରି ଯମକ ଓ ଅନୁପ୍ରାସ ବହୁଳ—

Only not within seeing of the sun,
Not within the singing of the strong sun,
Tall sun's tinging or treacherous
tainting of the earths air.

ଅତ୍ୟାଧୁନିକ ଓଡ଼ିଆ କାବ୍ୟ-କବିତାରେ ସେହିପରି ଅନୁପ୍ରାସ, ଯମକ, ରୂପକ ପ୍ରଭୃତି ଅଳଙ୍କାରର ମଧ ବ୍ୟବହାର ପରିଲକ୍ଷିତ ହୁଏ; ଯଥା—

"ତୁମ ମୋତି ମହଲର ମଥାଦନ୍ତି ଚହଲେ
ତୁମ ମଯୂଦାନବର ଦୁନିଆ ଯେ ଦୋହଲେ
ଧନିକର ବଣିକର ତୁମେ ଗଣତନ୍ତ୍ରୀ…"
(ଶାନ୍ତିଶିଖା)

ତାଛଡ଼ା ଓଡ଼ିଆ ମୁକ୍ତ-କବିତାରେ ପାରମ୍ପରିକ କବି-ପ୍ରସିଦ୍ଧି ଓ କାଳ୍ପନିକ ଉପମାନ ଉପମେୟ ପରିବର୍ତ୍ତେ ବାସ୍ତବ ଜଗତର ତୁଚ୍ଛାଦପି ତୁଚ୍ଛ ଓ ସାଧାରଣ ବସ୍ତୁ ସକଳରୁ ଉପମା ଆହରଣ କରା ଯାଉଅଛି । 'କାଶଶୁଭ୍ର' ପରିବର୍ତ୍ତେ ସାବୁନର ଫେଣପରି ସଫା, ବା ବତାସ କାଶୁଛି ଦୂରେ ରହି ରହି ଯକ୍ଷ୍ମା ରୋଗୀ ପରି, ଚର୍ବିପରି ସ୍ନିଗ୍ଧ ନଦ, ଅଫିମର ସମ କଳାରାତି, ନାଳଫିଟାର ବୁଡ଼ିଆଣୀ ଜାଲ, ଶ୍ବେତ ବଜାରି ଖ୍ୟମ, ଶାନ୍ତିର କପୋତ, ଆପୋଷର ହଳାହଳ, ପ୍ରଭୃତି କେତେଗୋଟି ତାହାର ପ୍ରକୃଷ୍ଟ ଉଦାହରଣ ।

## ଓଡ଼ିଆ ଅତ୍ୟାଧୁନିକ କବିତାର ବିଭିନ୍ନ ପର୍ଯ୍ୟାୟ—

ଓଡ଼ିଆ ଅତ୍ୟାଧୁନିକ କବିତାର ପ୍ରଥମ ପର୍ଯ୍ୟାୟରେ ପଦମିଳନ-ଯୁକ୍ତ ଅସମ ପଂକ୍ତିର ଛନ୍ଦ (ମୁକ୍ତଛନ୍ଦ) ଅନୁସୃତ ହୋଇଥିଲା ।

ମଦନମୋହନ ପଟ୍ଟନାୟକ ଓ କାଳନ୍ଦୀଚରଣ ପାଣିଗ୍ରାହୀଙ୍କ ରଚନାରେ ଏହାର ନିଦର୍ଶନ ମିଳେ । ପରବର୍ତ୍ତୀ କାଳରେ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ବିନୋଦ ନାୟକ ଏହି ମୁକ୍ତଛନ୍ଦର ବ୍ୟାପକ ବିନିଯୋଗ କରି ତାହାକୁ ଜନପ୍ରିୟ କରିଅଛନ୍ତି । କବିତାରେ ଅସମ ପଙ୍‌କ୍ତିର ବ୍ୟବହାର ହେଲେ ଛନ୍ଦଗତିରେ କିପରି ବହୁ ବୈଷମ୍ୟ ଓ ବୈଚିତ୍ର୍ୟ ପରିଲକ୍ଷିତ ହୁଏ ତାହା ଯେ କୌଣସି ରାଗ-ରାଗିଣୀଯୁକ୍ତ ଓଡ଼ିଆ କବିତା ସଙ୍ଗେ ମୁକ୍ତ-କବିତାକୁ ତୁଳନା କଲେ ସହଜରେ ଜଣାଯାଏ ।

ଏହାପରେ ମୁକ୍ତକବିତାର ଅନ୍ୟତମ ରୂପ ଗଦ୍ୟ କବିତାର ପ୍ରଚଳନ ଏବେ ଆରମ୍ଭ ହୋଇଛି । କବିତାରେ ଗଦ୍ୟରୀତିର ଅନୁପ୍ରବେଶ ଯୋଗୁ ମୁକ୍ତଛନ୍ଦର କବିତା ଆହୁରି ସ୍ୱଚ୍ଛନ୍ଦ, ପ୍ରାଞ୍ଜଳ ଓ ଗମ୍ଭୀରତର ହୋଇ ପାରିଛି । ରାଧାନାଥ ଅମିତ୍ରାକ୍ଷର ଛନ୍ଦରେ କାବ୍ୟ ରଚନା କରି ପାରମ୍ପରିକ ଛନ୍ଦରାଜ୍ୟରେ ଯେଉଁ ବ୍ୟତିକ୍ରମ ସୃଷ୍ଟି କରିଥିଲେ, ଯେଉଁ ବିଦ୍ରୋହର ସୂତ୍ରପାତ କରିଯାଇଥିଲେ ସମ୍ଭବତଃ ତାହାହିଁ ଆଜି ପୂର୍ଣ୍ଣତା ଲାଭ କରିଛି ଅତ୍ୟାଧୁନିକ ମୁକ୍ତ-କବିତା ଓ ଗଦ୍ୟ କବିତା ରୂପରେ । ଗୋଟିଏ ଉଦାହରଣ—

ଚୂପ୍‌କରି ବସ······ସାଇରେନ
କ୍ଷୁଧାର୍ତ୍ତ ଇଗଲ ପରି ଦଳକୁଦଳ ସେମାନେ ଆସୁଛନ୍ତି
ଏଇ ହରିତ ରାତିର ବୁକୁ ଚିରି ।
ଚଞ୍ଚୁରେ ସେମାନଙ୍କର ମୃତ୍ୟୁର ପୀତ ନାମ ଫଳକ
ଆଖିରେ ବିଷାକ୍ତ ହୀରାର ଆଲୋକ
ନିଷ୍ପ୍ରଦୀପ ରାତିର ଝର୍କାରେ ଝର୍କାରେ
ଅନୁଶତ ଆଲୁଅର ଝଲକ ।
ବଣି ନିଭିଯାଏ ସାଇରେନ ବାଜୁଛି ।

(ସେଲଟାର—ପାଣ୍ଡୁଲିପି)

ଉଲ୍ଲିଖିତ ଉଦାହରଣରୁ ଏହାହିଁ ସ୍ପଷ୍ଟ ଯେ ଗଦ୍ୟ ସହିତ ଏହାର ପଂକ୍ତିଗୁଡ଼ିକର ବାହ୍ୟ ରୂପର ଯେପରି ସାମଞ୍ଜସ୍ୟ ଅଛି, ପଦ୍ୟ ସହିତ ସେହିପରି ପଂକ୍ତିମାନଙ୍କର ଅନ୍ତଃସ୍ୱରୂପର ସାଦୃଶ୍ୟ ବିଦ୍ୟମାନ । ଏଗୁଡ଼ିକରେ ଗଦ୍ୟର ବିଶୁଦ୍ଧ ଭଙ୍ଗୀ ସ୍ୱାଧୀନତା ବହୁ ପରିମାଣରେ ପ୍ରତିଫଳିତ । କବିତାରେ ଅନ୍ତ୍ୟ ଅକ୍ଷରମାନଙ୍କ ମଧ୍ୟରେ ମିଳନ ସାଧିତ ହୋଇନାହିଁ ଏବଂ ସବୁଠି ଦାଣ୍ଡିବୃତ୍ତ ଭଳି ଅସମ ପଂକ୍ତି ବ୍ୟବହୃତ ହୋଇଅଛି ।

## ଗଦ୍ୟଛନ୍ଦର ମହତ୍ତ୍ୱ ଓ ତ୍ରୁଟି—

ଯେଉଁ ଯୁଗରେ ଭାବ ପ୍ରକାଶର ସର୍ବାପେକ୍ଷା ଜନପ୍ରିୟ ମାଧ୍ୟମରୂପେ ଗଦ୍ୟ ବ୍ୟବହୃତ ଏବଂ ପଦ୍ୟ ଗଦ୍ୟ ସଙ୍ଗେ ସାଲିସ କରି ନବରୂପ ପରିଗ୍ରହ କରିଛି ଏବଂ ଯେଉଁ ଯୁଗରେ ସାହିତ୍ୟ କ୍ଷେତ୍ରରେ ନାନା 'ଇଜମ୍'ର ଆଧିପତ୍ୟ ଯୋଗୁ ସାହିତ୍ୟର ରୂପ ଚିରଚଞ୍ଚଳ ଓ ଅସ୍ଥିରଧର୍ମୀ ହୋଇ ପଡ଼ିଛି, ସେହି ସମୟରେ ଏହି ମୁକ୍ତ-ଛନ୍ଦର ଭବିଷ୍ୟତ ବିଷୟରେ କିଛି କହିବା ସମ୍ଭବପର ନୁହେଁ । ମୋଟଉପରେ ଏହି ଛନ୍ଦ ହିଁ ଆଜିକାଲି କାବ୍ୟ-କବିତା କ୍ଷେତ୍ରରେ ଏକ ଅପରିହାର୍ଯ୍ୟ ଓ ଜନପ୍ରିୟ ରୀତି ହୋଇ ପଡ଼ିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ବ୍ୟବହାରଦ୍ୱାରା କାବ୍ୟର ସୀମା ବିସ୍ତୃତତର ହୋଇଅଛି ଏବଂ କାବ୍ୟରେ ବୈଚିତ୍ର୍ୟର ଅବତାରଣା ସମ୍ଭବପର ହୋଇପାରିଛି । ଏହି ଛନ୍ଦରେ ପଦ୍ୟ ଅପେକ୍ଷା ଗଦ୍ୟରହିଁ ଅଧିକ ପ୍ରାଧାନ୍ୟ । ଗଦ୍ୟ ଏହିପରି କାବ୍ୟରୂପରେ ଶିଳ୍ପିତ ହୋଇ ତାହାର ପ୍ରାତ୍ୟହିକ ବ୍ୟବହାରର ଊର୍ଦ୍ଧ୍ୱକୁ ଉନ୍ନୀତ ହୋଇ ପାରିଛି । ଭାବର ସହଜ ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି ଏହି ଛନ୍ଦ ଯୋଗୁ ସମ୍ଭବପର ହୋଇ ପାରିଛି ଏବଂ କବିତା ରଚନା

କ୍ଷେତ୍ରରୁ ନାନା କୃତ୍ରିମତା ଦୂରୀଭୂତ ହୋଇ ଭାବର ଅନାଡ଼ମ୍ବର, ବାହୁଲ୍ୟବର୍ଜିତ ଓ ଘନୀଭୂତ ପ୍ରକାଶ ସମ୍ଭବପର ହୋଇ ପାରିଛି ।

ଏହି ଛନ୍ଦର ବିନିଯୋଗ ଯୋଗୁ ସେହିପରି କେତେକ ତ୍ରୁଟି ମଧ୍ୟ ଅନୁଭୂତ ହେଉଅଛି । ଏହି ଛନ୍ଦ ବନ୍ଧମୁକ୍ତ ହେବା ଫଳରେ କାବ୍ୟ ତାହାର ପାରମ୍ପରିକ ସ୍ମରଣଯୋଗ୍ୟତା ଗୁଣଟିକୁ ହରାଇଛି । ଗଦ୍ୟମୟ ଏହି କବିତାକୁ ଘୋଷି କରି ମନେରଖିବା ସହଜ ନୁହେଁ । ଅତୀତରେ କାବ୍ୟ ଛନ୍ଦୋମୟ ଥିବାରୁ ତାହାକୁ ମନେ ରଖିବା ଓ ତାହା ଉଦ୍ଧୃତ ହେବା ସହଜ ଓ ସମ୍ଭବପର ଥିଲା । ମାତ୍ର ଆଧୁନିକ ମୁକ୍ତଛନ୍ଦ ତଥା ଗଦ୍ୟଛନ୍ଦକୁ ଘୋଷି ମନେ ରଖିବା ଆଦୌ ସହଜ ନୁହେଁ । ପ୍ରାଚୀନ ସାହିତ୍ୟରେ କାବ୍ୟ ଓ ସଙ୍ଗୀତ ପରସ୍ପର ନିକଟବର୍ତ୍ତୀ ଥିଲ; ବିଶେଷଭାବେ ପ୍ରାଚୀନ ଓଡ଼ିଆ କାବ୍ୟ-କବିତା ଥିଲ ଗାନଯୋଗ୍ୟ । ଅତ୍ୟାଧୁନିକ ଛନ୍ଦରେ ରଚିତ କାବ୍ୟ-କବିତା ଏହି ଗୀତ-ରୂପାନ୍ତର-ପ୍ରବଣତା ସମ୍ପୂର୍ଣ୍ଣ ରୂପେ ହରାଇଛି କହିଲେ ଚଳେ । ଜନପ୍ରିୟତା ଦୃଷ୍ଟିରୁ ବିଚାର କଲେ ବି ଏହି ଛନ୍ଦ-ବିନିଯୋଜିତ-କବିତା ପ୍ରାଚୀନ କବିତା ଭଳି ଜନପ୍ରିୟ ହୋଇ ପାରିନାହିଁ । ଅତ୍ୟାଧୁନିକ କବିତା 'ଗଣ' ଲାଗି ଉଦ୍ଦିଷ୍ଟ ଓ ଗଣଚେତନା ସମୃଦ୍ଧ ହୋଇଥିଲେ ବି ଏହା ଗଣ-ଉପଭୋଗ୍ୟ ହୋଇ ପାରୁନାହିଁ—ଅପ୍ରିୟ ହେଲେ ବି ଏହା ସତ୍ୟ । ପ୍ରତୀକ-ଦ୍ୟୋତକତା, ଭାବାନୁସଙ୍ଗ ( association of ideas) ପ୍ରସଙ୍ଗ ( allusion ) ପ୍ରଭୃତିର ବହୁଳ ବ୍ୟବହାର ଯୋଗୁ ମଧ୍ୟ ଏହି କବିତା ଦୁର୍ବୋଧ ହୋଇ ପଡ଼ୁଛି । ତା'ଛଡ଼ା ବ୍ୟାକରଣ ସମ୍ମତ ନୀତିଲଙ୍ଘନ ଓ ସୁସମ୍ବନ୍ଧହୀନତାର ଅଭାବ ମଧ୍ୟ ଆଧୁନିକ ମୁକ୍ତଛନ୍ଦ ବିନିଯୋଜିତ କବିତାରେ କମ ପରିଲକ୍ଷିତ ହେଉ ନାହିଁ । ପରିଶେଷରେ ଯୁଦ୍ଧୋତ୍ତର ଇଂରାଜୀ କବିତା

ସମ୍ପର୍କରେ F. R. Leavis ଙ୍କର ନିମ୍ନ ଉକ୍ତି ଆମ୍ଭମାନଙ୍କ ପକ୍ଷରେ ମଧ୍ୟ ଅନୁଚିନ୍ତନୀୟ—

Urban conditions, a sophisticated civilisation, rapid change and mingling of cultures have destroyed the old rhythms and habits and nothing adequate has taken their place. The result is a sense apparent in the serious literature of the day, that meaning and direction have vanished, the conditions, of course, partly account for the weakness of poetry in recent times.

[ New Bearings in English Poetry ]

## ସାମ୍ପ୍ରତିକ ଓଡ଼ିଆ କବିତା ଓ ଛନ୍ଦ—

ଛନ୍ଦଗତ ଦୃଷ୍ଟିରୁ ବିଚାରକଲେ ସମସାମୟିକ କାବ୍ୟ-କବିତାମାନଙ୍କରେ ସ୍ଥୂଳତଃ ଚାରି ପ୍ରକାର ରୀତି ପରିଲକ୍ଷିତ ହେଉଅଛି । ୧) ପ୍ରାନ୍ତ ମିଳନରହିତ ଗଦ୍ୟଧର୍ମୀ, (୨) ପ୍ରାନ୍ତ ମିଳନଯୁକ୍ତ ଅସମ ଅକ୍ଷର ବିଶିଷ୍ଟ, (୩) ପୂର୍ବୋକ୍ତ ଦ୍ୱିବିଧ ରୀତିର ସମ୍ମିଶ୍ରଣରେ ରଚିତ ବା ମିଶ୍ର ରୀତି, (୪) ପ୍ରାଚୀନ ଛନ୍ଦରୀତିରେ ଅତ୍ୟାଧୁନିକ ଭାବପ୍ରକାଶ ରୀତି ।

ପ୍ରଥମୋକ୍ତ ତ୍ରିବିଧ ଛନ୍ଦରୀତି ବିଷୟ ପୂର୍ବରୁ ଯଥାସ୍ଥାନରେ ଆଲୋଚିତ ହୋଇଅଛି । ଶେଷୋକ୍ତ ରୀତିର ଦୃଷ୍ଟାନ୍ତ ସ୍ୱରୂପ ହସନ୍ତ, ଆବାଜ, ଜନତାର ଡାକ ସଂକଳନସ୍ଥ କେତେଗୋଟି କବିତାର ଛନ୍ଦ ବିବେଚ୍ୟ । ସଙ୍ଗୀତ ଓ କବିତା ଆଜ ପରସ୍ପର-ଠାରୁ ପୃଥକ ହୋଇ ପଡ଼ିଛି । ଏଠାରେ ତାହାର ଆଲୋଚନା

ଅବାନ୍ତର ହେଲେହେଁ ଆଧୁନିକ ଓଡ଼ିଆ କବିତାର ଛନ୍ଦ କ୍ଷେତ୍ରରେ ଏହି ପରୀକ୍ଷାମୂଳକ ପରିବର୍ତ୍ତନ ଉଲ୍ଲେଖଯୋଗ୍ୟ ।

ଆଧୁନିକ ଯୁଗର ବୟୋଜ୍ୟେଷ୍ଠ ପ୍ରବୀଣ କବିମାନଙ୍କଠାରୁ ଆରମ୍ଭ କରି ଆଧୁନିକତମ କବିମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଏହି ମୁକ୍ତଛନ୍ଦକୁ କାବ୍ୟ କବିତାରେ ନିୟୋଜିତ କରିଅଛନ୍ତି । ପରିଶେଷରେ ଏତିକ ବକ୍ତବ୍ୟ ଯେ ଏ ଯୁଗ ଗଣ ବା ଜନତାର ଯୁଗ ହୋଇ ଥିବାରୁ ଆଜ ଆମ୍ଭମାନଙ୍କୁ ସେଇ ବୃହତ୍ତର ଜନ-ମାନସର ବିଷୟକୁ ସେହିମାନଙ୍କ ଭାଷାରେ ଓ ସେହିମାନଙ୍କ କଥାର ରୀତିରେ କହିବାକୁ ହିଁ ପଡ଼ିବ । ଏହାହିଁ ସମ୍ଭବତଃ ଏହି ଯୁଗର ଦାବୀ ।



# ଓଡ଼ିଆ ରୋମାଣ୍ଟିସିଜମ୍ ଓ ସବୁଜ ସାହିତ୍ୟ

## ରୋମାଣ୍ଟିସିଜମ୍‌ର ସ୍ୱରୂପ—

ଜନୈକ ଇଂରାଜୀ ସମାଲୋଚକ ରୋମାଣ୍ଟିସିଜମ୍‌ର ସଂଜ୍ଞା ଓ ଗୁଣ ନିର୍ଦ୍ଦେଶ କରିବାକୁ ଯାଇ ଲେଖିଛନ୍ତି—

"The term is characterised by the qualities of remoteness, desolation, disilluison, decay, passion, divine unrest, melancholy, and the all embracing power of the imagination. It is suggestive of strangeness and adventure, never satisfied aspiration after the unknown or the unattainable (A. F. Scott—Poetry and Appreeiation.)

ଅର୍ଥାତ୍ "ଏହି ଧରଣର କାବ୍ୟକବିତାରେ ସୁଦୂରର ମୋହ, ନିଃସଙ୍ଗ ଅସହାୟତା, ସ୍ୱପ୍ନଭଙ୍ଗ, ବିପର୍ଯ୍ୟୟ, ଆବେଗୋଚ୍ଛ୍ୱାସ, ବିଷାଦବାଦ ଏବଂ କଳ୍ପନାର ସର୍ବତୋମୁଖୀ ଭାବସମନ୍ୱିତ ବିବିଧ ଗୁଣାବଳୀ ପରିଲକ୍ଷିତ ହୁଏ ଏବଂ ଏହା ଅଲୌକିକତା, ଦୁଃସାହସିକ ଅଭିଯାନ ଏବଂ ଅଜ୍ଞାତ ଓ ଅଲଭ୍ୟ ଲାଗି ଅତୃପ୍ତ ଅଭିଳାଷ ପ୍ରଭୃତିର ମଧ୍ୟ ଦ୍ୟୋତକ ।"

ପୃଥିବୀର ସବୁ ପ୍ରତିଷ୍ଠାପନ୍ନ ସାହିତ୍ୟରେ ଏହିପରି ଭାବନା ଓ ଅନୁଭୂତିସମ୍ବଳିତ ବହୁ କାବ୍ୟକବିତା ଓ ସାହିତ୍ୟ ବିଦ୍ୟମାନ । ଗୋଟିଏ ସାହିତ୍ୟରେ ମଧ୍ୟ ଭିନ୍ନ ଭିନ୍ନ ଯୁଗରେ ଏହି ଭାବଧାରା ଭିନ୍ନ ରୂପରେ ଆତ୍ମପ୍ରକାଶ କରିଥାଏ । ତତ୍କାଳୀନ ସାମାଜିକ ପରିବେଶ ଓ ଚିନ୍ତାଧାରା ହିଁ କବିମନରେ ଏହି ରୋମାଣ୍ଟିକ୍ ଭାବଧାରା ଜାଗ୍ରତ କରାଇବାର ହେତୁ । ପାଶ୍ଚାତ୍ୟ ସାହିତ୍ୟରେ ଏହି ରୋମାଣ୍ଟିସିଜମ୍ ଆନ୍ଦୋଳନର ସୂତ୍ରପାତ ଫରାସୀ ଲେଖକ ରୁଷୋଙ୍କ ରଚନା ଓ ମତବାଦର ପ୍ରଚଳନ ସମୟରୁ ଅର୍ଥାତ୍ ୧୮ଶ ଶତାବ୍ଦୀର ଶେଷଭାଗରୁ ଆରମ୍ଭ ହୋଇ ୧୯ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ପାଶ୍ଚାତ୍ୟ ସାହିତ୍ୟକୁ ପ୍ରଭାବିତ କରିଥିଲା ।

ନୀତି-ନିର୍ଦ୍ଦିଷ୍ଟ "କ୍ଲାସିସିଜମ୍‌ର" ପରମ୍ପରାଠାରୁ ଏହି ଧରଣର କାବ୍ୟକବିତାର ରଚନାଶୈଳୀ ଥିଲା ସମ୍ପୂର୍ଣ୍ଣ ପୃଥକ୍ । ଏହି ମତବାଦୀ ଲେଖକଗଣ କାବ୍ୟ-ପ୍ରେରଣା ନିମିତ୍ତ ପ୍ରକୃତିକୁ ଆଶ୍ରୟ କରିଥିଲେ । ତେଣୁ ସରଳ ଜୀବନର ସୌନ୍ଦର୍ଯ୍ୟ, ଶିଶୁ, କୃଷକ ଏବଂ ଆଦିମ ଅରଣ୍ୟବାସୀର ସ୍ୱଭାବସୁଲଭ ଗୁଣାବଳୀର ପ୍ରଶସ୍ତିରେ ଏମାନଙ୍କ କବିତା ମୁଖର ହୋଇ ଉଠିଥିଲା । ଏହାଛଡ଼ା ବିଗତ ଅତୀତର ଉଦ୍‌ବୋଧନ ସଙ୍ଗେ ସଙ୍ଗେ ମଧ୍ୟଯୁଗର କଥା ଓ ଗାଥାରୁ କାବ୍ୟକବିତାର ଉପାଦାନ ଗ୍ରହଣ କରିବାରେ ମଧ୍ୟ ଏହି ମତବାଦୀ ଲେଖକଦଳ ଥିଲେ ବଦ୍ଧପରିକର ।

## ପାଶ୍ଚାତ୍ୟ ସାହିତ୍ୟରେ ତାହାର ପ୍ରଭାବ—

ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଭୂଖଣ୍ଡରେ ସବୁ ଦେଶର ସାହିତ୍ୟକୁ

ଏହି ଭାବଧାରା ପ୍ରଭାବିତ କରିଥିଲା । ମୁଖ୍ୟତଃ ଗୀତିକବିତା ( lyrics ), 'ମହାକାବ୍ୟ' ( epic poems ), ରୋମାଞ୍ଚକର ଐଶ୍ୱର୍ଯ୍ୟସମୃଦ୍ଧ ଐତିହାସିକ ଉପନ୍ୟାସ, ଭୀତିପୂର୍ଣ୍ଣ ଓ ଦୁଃସାହସିକ ଭ୍ରମଣସମ୍ବଳିତ ପ୍ରେମ କାହାଣୀ ପ୍ରଭୃତି ବିବିଧ ରୂପରେ ଏହି ଭାବ-ଧାରାର ଆତ୍ମପ୍ରକାଶ ପରିଲକ୍ଷିତ ହୋଇଥିଲା ।

ଫରାସୀ ସାହିତ୍ୟରେ ରୁଷୋ, ବାଲଯାକ୍, ଡୁମାସ, ହ୍ୟୁଗୋ ପ୍ରଭୃତି ଲେଖକଗଣ ବିବିଧ ରୂପରେ ଏହି ଭାବଧାରାକୁ ଫରାସୀ ସାହିତ୍ୟରେ ଅନୁପ୍ରବିଷ୍ଟ କରିଥିଲେ । ସେହିପରି କଲରିଜ୍, ଓ୍ୱାର୍ଡ଼ସ୍‌ଓ୍ୱାର୍ଥ, ଶେଲି, ସ୍କଟ୍, ବାଇରନ୍, କିଟସ୍, ଲ୍ୟାମ୍ବ୍, ହ୍ୟାଜ୍‌ଲିଟ୍ ଡ଼କ୍ୟୁଏନ୍‌ସି, ଥ୍ୟାକ୍‌ରେ, ରସ୍କିନ୍, ଆରନୋଲ୍‌ଡ଼୍, ମ୍ୟାକଲେ, ଡିକେନସ୍, ଷ୍ଟିଭେନ୍‌ସନ ପ୍ରଭୃତି ବହୁ ଇଂରାଜୀ ଲେଖକ ଗଦ୍ୟ, ପଦ୍ୟ ଉଭୟବିଧ ରଚନା ରୂପରେ ଏହି ମତବାଦକୁ ଇଂରାଜୀ ସାହିତ୍ୟରେ ସୁପ୍ରତିଷ୍ଠିତ କରିଯାଇଛନ୍ତି ।

କିନ୍ତୁ ସାହିତ୍ୟରେ ଏହି ଭାବଧାରାର ଆଧିପତ୍ୟ ଦୀର୍ଘସ୍ଥାୟୀ ହୋଇପାରି ନ ଥିଲା । ବାସ୍ତବବାଦର ( realism ) ଦ୍ରୁତ ଅଭ୍ୟୁତ୍‌ଥାନ ଯୋଗୁ ଏହାର ଗତି ହଠାତ୍ ଶିଥିଳ ହୋଇପଡ଼ିଥିଲା ଏବଂ କାଳକ୍ରମେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ସମ୍ପ୍ରସାରଣ ଫଳରେ ଏହା ହୀନପ୍ରଭ, ଅନାଦୃତ ଓ ସଙ୍କୁଚିତ ହେବାକୁ ବାଧ୍ୟ ହୋଇ-ଥିଲା । * ଏହିପରି ସାମାଜିକ ପରିସ୍ଥିତି ହିଁ ସାହିତ୍ୟର ରସସମ୍ପଦ ଓ ଆଙ୍ଗିକର ପରିବର୍ତ୍ତନ ସାଧନ କରି ଆସୁଛି ।

---

* ଏନସାଇକ୍ଲୋପିଡ଼ିଆ ବ୍ରିଟାନିକା—'ରୋମାଣ୍ଟିସିଜମ୍' ଦ୍ରଷ୍ଟବ୍ୟ ।

## ଇଂରାଜୀ ସାହିତ୍ୟରେ ରୋମାଣ୍ଟିସିଜମ୍—

ଇଂରାଜୀ ସାହିତ୍ୟରେ "ରେଷ୍ଟୋରେସନ୍ ଯୁଗ" ପରେ ଆମେ ଏହି ରୋମାଣ୍ଟିକ କବିମାନଙ୍କୁ ସାହିତ୍ୟ-ଦରବାରରେ ଦେଖିବାକୁ ପାଇଥାଉ । ପୋପ, ଡ୍ରାଇଡେନ୍ ପ୍ରଭୃତି ରେଷ୍ଟୋରେସନ ଯୁଗର କବିମାନଙ୍କ ପରେ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ, ଶେଲି, କିଟ୍‌ସ୍, ବାଇରନ୍, କଲ୍‌ରିଜ୍ ପ୍ରଭୃତି କବିମାନେ ଏହି ରୋମାଣ୍ଟିକ ଭାବଧାରାସମ୍ବଳିତ କାବ୍ୟକବିତା ଲେଖିଥିବାରୁ ଏହି ଯୁଗକୁ ଇଂରାଜୀ ସାହିତ୍ୟରେ "Romantic revival" କୁହାଯାଏ । ସେତେବେଳକୁ ଯାନ୍ତ୍ରିକ ବିପ୍ଲବ ପରେ ସେ ଦେଶର ସାମାଜିକ ଓ ରାଜନୈତିକ ଜୀବନରେ ଭୂମୂଳ ଆନ୍ଦୋଳନର ସୂତ୍ରପାତ ହୋଇଥାଏ । ନାଗରିକ ଜୀବନର ସୂତ୍ରପାତ ହେବାଯୋଗୁ ଗ୍ରାମସବୁ ପରିତ୍ୟକ୍ତ, ଅବହେଳିତ ହୋଇ ସଭ୍ୟତା ଓ ସମାଜର ସ୍ରୋତ ସହରାଭିମୁଖୀ ହୋଇଥାଏ । ମନୁଷ୍ୟ ଓ ମନୁଷ୍ୟ ମଧ୍ୟରେ ସମ୍ପର୍କ ହୋଇଥାଏ ଶିଥିଳ । ନବପ୍ରବର୍ତ୍ତିତ ଯନ୍ତ୍ରର ବହୁଳ ପ୍ରଚଳନ ଯୋଗୁ ଓ ତାହାର ଅନୁସଙ୍ଗ ଶ୍ରମବିଭାଗ ଯୋଗୁ ସାମାଜିକ ଶ୍ରେଣୀ ଚରିତ୍ର ମଧ୍ୟ ଖୁବ୍ ସୁସ୍ପଷ୍ଟ ଓ ତୀବ୍ର ହୋଇ ଉଠିଥାଏ । ସମାଜରେ ଏକ ନୂତନ ଶ୍ରେଣୀର ସୃଷ୍ଟି ହୋଇଥାଏ । ଏହିପରି ସାମାଜିକ ସଂହତି ଯେତେବେଳେ ବିପର୍ଯ୍ୟସ୍ତ, ନୂତନ ପରିବର୍ତ୍ତନର ସ୍ରୋତରେ ସମସ୍ତ ପ୍ରାଚୀନ ବ୍ୟବସ୍ଥା ଯେତେବେଳେ ଧ୍ୱସ୍ତବିଧ୍ୱସ୍ତପ୍ରାୟ, ସେତେବେଳେ ସେ ଯୁଗର ବିକ୍ଷୁବ୍ଧ କବିର ମନ ମଧ୍ୟ ଘରଛଡ଼ା ହୋଇଛି । ସମାଜଠାରୁ କରିଛଡ଼ା ଦେବା ହୋଇଛି କବିର ମାତ୍ର । ଫଳରେ ସେଇ ଯୁଗର ସମସ୍ତ କବି ହେଲେ ପଳାୟନପନ୍ଥୀ ବା escapist । ଏହି ପଳାୟନବାଦ ଜୀବନର ସମସ୍ୟାକୁ ସମ୍ମୁଖୀନ ନ ହୋଇ ବାସ୍ତବ ଜୀବନରୁ ଏକ ଅବାସ୍ତବ ସ୍ୱପ୍ନରାଜ୍ୟକୁ ପ୍ରୟାଣ ହେଉ ବା ସୁନ୍ଦର ଲୋଭମୀୟ ଅନ୍ୟ ଏକ

ଜୀବନ୍ତ କ୍ଷେତ୍ରକୁ ପ୍ରୟାଣ ହେଉ, ( କାରଣ କେତେକଙ୍କ ମତରେ it is not an escape from life but to life ) ଏହି ସମୟର କବିମାନେ ଶାନ୍ତି ଖୋଜିବାକୁ ଯାଇ କିଏ ପ୍ରକୃତିର ସୁକୋମଳ କୋଳରେ, କିଏ ସୁନେଲି ଭବିଷ୍ୟର ରହସ୍ୟାଲୋକରେ କିଏବା ଅତୀତର "ମାୟାକାନନ"ରେ ଆଶ୍ରୟ ନେଇଛନ୍ତି । କଳାର ସୃଷ୍ଟି କେବଳ କଳାପାଇଁ ( art for arts sake )— ଏଇଆ ହୋଇଛି କେତେକ କବିଙ୍କର ଆଦର୍ଶ । ସାମାଜିକ ଚେତନାକୁ ପୃଷ୍ଠ ପ୍ରଦର୍ଶନ କରି ଏକାନ୍ତ ଆତ୍ମଚର୍ଚ୍ଚା, ବ୍ୟକ୍ତିଗତ ହୃଦୟୋଚ୍ଛ୍ୱାସର ଅଭିବ୍ୟକ୍ତିରେ କେଉଁ କବିଙ୍କ କବିତାର ପରିସର ହେଲି ସୀମାବଦ୍ଧ । ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶକ ପରେ ଓଡ଼ିଆ ସାହିତ୍ୟରେ ଏହିପରି ଏକ ଭାବଧାରାର ଅଭ୍ୟୁତ୍‌ଥାନ ଘଟିଥିଲି । ତତ୍କାଳୀନ ସାମାଜିକ ପରିବେଶ ଏଥିପାଇଁ କେତେ-ଦୂର ଦାୟୀ ତାହା ଏ ସମ୍ପର୍କରେ ବିଚାର୍ଯ୍ୟ ।

## ଓଡ଼ିଆ ସାହିତ୍ୟରେ ରୋମାଣ୍ଟିସିଜମ୍‌ର ପରମ୍ପରା—

ଭାରତୀୟ ପ୍ରାଚୀନ ସାହିତ୍ୟ-ସମାଲୋଚକ, ଆଲଙ୍କାରିକ-ମାନଙ୍କ ଅଲଙ୍କାରଶାସ୍ତ୍ରରେ "ରୋମାଣ୍ଟିକ" ଭାବଧାରାର ପ୍ରକାଶକ୍ଷମ କୌଣସି ପାରିଭାଷିକ ଶବ୍ଦ ପରିଲକ୍ଷିତ ହୁଏ ନାହିଁ । ଓଡ଼ିଆ ସାହିତ୍ୟରେ ଏହି ଧରଣର କାବ୍ୟକବିତା ଆଜିକାଲି "ସବୁଜ କବିତା ବା ସାହିତ୍ୟ" ନାମରେ କଥିତ ହେଉଅଛି । ମାତ୍ର ଏହି ସବୁଜ କବିତା ବା ରୋମାଣ୍ଟିକ୍ କବିତାର ମୌଳିକ ବୀଜ ଓଡ଼ିଆ ସାହିତ୍ୟରେ ବହୁ ପୂର୍ବରୁ ବିଦ୍ୟମାନ ଥିଲି । ବାସ୍ତବରେ କହିବାକୁ ଗଲେ ମଧ୍ୟଯୁଗର କବି ଉପେନ୍ଦ୍ର ଭଞ୍ଜହିଁ ଏହି କାଳ୍ପନିକ, ଉଚ୍ଛ୍ୱାସ-ପୂର୍ଣ୍ଣ ରୋମାଣ୍ଟିକ କାବ୍ୟକବିତାର ପ୍ରଧାନ ପୁରୋଧା । ତାଙ୍କର ପ୍ରାୟ

ସବୁ କାଳ୍ପନିକ କାବ୍ୟନିହିତ ଭାବଧାରା ଏବଂ ରୋମାଣ୍ଟିକ ଭାବନାର ଯୋଗ୍ୟ ପ୍ରତିନିଧିତ୍ୱ କରିବାକୁ ସମର୍ଥ । ଭକ୍ତି ଓ ଆଧ୍ୟାତ୍ମିକତା ନାମରେ ଓଡ଼ିଆ ସାହିତ୍ୟରେ ପୂର୍ବପ୍ରଚଳିତ ଗତାନୁଗତିକ ପରମ୍ପରା ଓ ବିରକ୍ତିକର ଏକାଧିପତ୍ୟମଣ୍ଡଳୀକୁ ( monotony ) ଭାଙ୍ଗି ସମ୍ପୂର୍ଣ୍ଣ କାଳ୍ପନିକ ବିଷୟବସ୍ତୁକୁ ନେଇ ସେ କାବ୍ୟକବିତା ରଚନା କରିଯାଇଅଛନ୍ତି । ତତ୍କାଳୀନ ଓଡ଼ିଶାର ପରାଧୀନତା, କେନ୍ଦ୍ରିକଶାସନାଭାବରୁ ସାମାଜିକ ବିଶୃଙ୍ଖଳତା, ମରହଟ୍ଟା-ଉତ୍ପୀଡ଼ନ ଯୋଗୁଁ ବିଭୀଷିକାପୂର୍ଣ୍ଣ ଅନିଶ୍ଚିତ ଜୀବନଯାପନ, ସାମାଜିକ ଜୀବନର ଅଳସ, କର୍ମହୀନ ନିର୍ଜୀବ ଶିଥିଳତା ପ୍ରଭୃତି ହିଁ ଭଞ୍ଜକବିଙ୍କୁ ସ୍ୱପ୍ନବାଦୀ ଓ ଭାବବିଳାସୀ କରିବାର ହେତୁସ୍ୱରୂପ । ସେଥିପାଇଁ କର୍ଣ୍ଣାଟ ରାଜପୁତ୍ର ଚନ୍ଦ୍ରଭାନୁ, ସିଂହଳ ରାଜକନ୍ୟା ଲାବଣ୍ୟବତୀ, ପ୍ରେମସୁଧାନିଧି, ପାଟଳିପୁତ୍ର ରାଜକୁମାର ପୁଷ୍ପକେତୁ ଓ ଚମ୍ପାନଗରୀର ରାଜକନ୍ୟା କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ, ସୁବର୍ଣ୍ଣରେଖା, ପ୍ରେମଲତା ପ୍ରଭୃତିଙ୍କୁ ଆମେ ଉପେନ୍ଦ୍ର କାବ୍ୟପ୍ରାଙ୍ଗଣରେ ଦେଖିବାକୁ ପାଉ । ଉପେନ୍ଦ୍ରଭଞ୍ଜଙ୍କର କାବ୍ୟାଦର୍ଶ ହୋଇଛି—

"ବିଚାରିଇ କରିବି ଉତ୍ତମ ଛାନ୍ଦଗୀତ
ରସସାର ଶୃଙ୍ଗାର ଯହିଁରେ ହେବ ବ୍ୟକ୍ତ ।
ଅନୁଭବରୁ ପ୍ରଖ୍ୟାତ ମାନସ ରଚନା
ଶୁଣ ସୁରସିକମାନେ ହୋଇଣ ସୁମନା ।"
( ରସିକହାରାବଳୀ )

ପରବର୍ତ୍ତୀ ଯୁଗରେ କବିବର ରାଧାନାଥଙ୍କ କାବ୍ୟକବିତାରେ ମଧ୍ୟ ଏହି କଳ୍ପନାର ଉଚ୍ଛ୍ୱାସ ପୂର୍ଣ୍ଣଭାବରେ ବିକଶିତ ହୋଇ-ଥିବାର ପରିଲକ୍ଷିତ ହୁଏ । ସୁଦୂର ଅତୀତ ମାୟାପୁରୀରେ ବିଚରଣ

କରୁ କରୁ ରାଧାନାଥ ଆମକୁ ଶୁଣାଇଛନ୍ତି ଚନ୍ଦ୍ରଭାଗା, ଉଷା, ନନ୍ଦିକା ଓ ପାର୍ବତୀର କରୁଣ ଜୀବନ-ଇତିହାସ । ବାସ୍ତବ ପ୍ରତି ସଚେତନତା ପରିଲକ୍ଷିତ ହୋଇଛି, ଏକମାତ୍ର ତାଙ୍କର 'ଦରବାର' କାବ୍ୟରେ । ସେହିପରି 'ଚିଲିକା' କାବ୍ୟରେ ମଧ୍ୟ ଇନ୍ଦ୍ରିୟ-ପିପାସୁ ବିଳାସୀ କବି ମନର ବେଦନା ବିଳାପ ସୁନ୍ଦର ଭାବରେ ପ୍ରକାଶିତ ହୋଇଅଛି ।

ରାଧାନାଥଙ୍କ ପରେ ଓଡ଼ିଆ ସାହିତ୍ୟରେ କାବ୍ୟ-ଯୁଗର ଅବସାନ ହୋଇ ଗୀତି-କବିତାର ଯୁଗ(Age of lyrics) ପ୍ରବର୍ତ୍ତିତ ହୋଇଅଛି । ନନ୍ଦକିଶୋର ବଳ, ପଦ୍ମଚରଣ, କୁନ୍ତଳାକୁମାରୀ, ଗୋଦାବରୀଶ ମିଶ୍ର ଓ ଗୋଦାବରୀଶ ମହାପାତ୍ର ପ୍ରଭୃତି ଗୀତି—କବିଙ୍କ କାବ୍ୟ-କବିତା ମଧ୍ୟ ଏହି ରୋମାଣ୍ଟିକ ଭାବଧାରା ପ୍ରଭାବରୁ ମୁକ୍ତ ନୁହେଁ । ଅବଶ୍ୟ ଏ ଯୁଗର ବ୍ୟତିକ୍ରମ ସ୍ୱରୂପ ଫକୀରମୋହନ, ଗୋପବନ୍ଧୁଙ୍କ ପଦ୍ୟରଚନାରେ ସ୍ଥାନେ ସ୍ଥାନେ ଅତ୍ୟାଧୁନିକତାର ସ୍ୱର ପ୍ରତିଧ୍ୱନିତ ହୋଇଥିଲେହେଁ ସେମାନଙ୍କ ରଚନାରେ ଏହି ରୋମାଣ୍ଟିକ ଭାବଧାରାର ପ୍ରଭାବ ସୁସ୍ପଷ୍ଟ । ତଥାପି ଓଡ଼ିଆ ସାହିତ୍ୟରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ସମାଜ ସମସ୍ୟାସମ୍ବଳିତ ଅତ୍ୟାଧୁନିକ କାବ୍ୟ କବିତା ଓ ସାହିତ୍ୟର ଶେଷୋକ୍ତ ଦୁଇ ଲେଖକହିଁ ଅଗ୍ରଦୂତ ।

## ରୋମାଣ୍ଟିସିଜମ୍‌ର ପୁନରାବିର୍ଭାବ ଓ ସବୁଜ-ସାହିତ୍ୟ ସମିତି—

ଯାହାହେଉ, ଓଡ଼ିଆ ସାହିତ୍ୟ ପ୍ରାଙ୍ଗଣରେ ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ କଣ୍ଠ ଯେତେବେଳେ ନୀରବ; ଗଙ୍ଗାଧର, ନନ୍ଦକିଶୋରଙ୍କର ଲେଖନୀ ଯେତେବେଳେ ନିଶ୍ଚଳ

ଅର୍ଥାତ୍ ଓଡ଼ିଆ ସାହିତ୍ୟ ରାଜ୍ୟରେ ଯେତେବେଳେ ଆଦର୍ଶ ଓ ନେତୃତ୍ୱର ଅଭାବ ଅନୁଭୂତ ହେଉଥିଲା, ସେହି ସନ୍ଧିକ୍ଷଣରେ ମଦନମୋହନ, ସଚ୍ଚୀନ୍ଦ୍ରନାଥ, ବ୍ରଜମୋହନ, ପ୍ରିୟନାଥ, ଦୀନବନ୍ଧୁ ପ୍ରଭୃତି କେତେକ କବି ଓଡ଼ିଆ ସାହିତ୍ୟରେ ଯେଉଁ ଅଭିନବ ସାହିତ୍ୟ ସୃଷ୍ଟି କରିଛନ୍ତି, ସେଥିରେ ଇଂରାଜୀ 'ରୋମାଣ୍ଟିକ୍ ରିଭାଇଭାଲ୍'ର ମୂର୍ତ୍ତି ପ୍ରକାଶ ପରିଲକ୍ଷିତ ହୁଏ । ପରେ କାଳନ୍ଦୀ-ଚରଣ, ଅନ୍ନଦାଶଙ୍କର, ବୈକୁଣ୍ଠନାଥ ପ୍ରଭୃତି ଏଇ ଚିନ୍ତାର ପଥିକ ହେଲେ । ଏମାନଙ୍କୁ ସବୁଜପନ୍ଥୀ କବି ଭାବରେ ଚିହ୍ନିତ କରାଯାଇଛି । ଏମାନଙ୍କ ବ୍ୟତୀତ ମାୟାଧରଙ୍କ ରଚନାରେ ରୋମାଣ୍ଟିସିଜମ୍‌ର ପ୍ରକୃତ ପ୍ରତିବିମ୍ବ ଦେଖିବାକୁ ମିଳେ । ମହେଶ୍ୱର ନାୟକ, ରମାରଞ୍ଜନ, ସଚ୍ଚିଦାନନ୍ଦ ଓ ରାଧାମୋହନ ଗଡ଼ନାୟକଙ୍କ ଲେଖାରେ ମଧ୍ୟ ସେହି ଭାବଧାରା ବିରଳ ନୁହେଁ ।

ଯେଉଁ ସାହିତ୍ୟିକମାନଙ୍କ ସମବେତ ଚେଷ୍ଟାରେ ଆଧୁନିକ ଯୁଗ ବା ରାଧାନାଥ ଯୁଗର ସୂତ୍ରପାତ ହୋଇଅଛି, ସେହି ଯୁଗସ୍ରଷ୍ଟା ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ ମଧ୍ୟରେ ସୁଦୁର୍ଲ୍ଲଭ ବ୍ୟକ୍ତିଗତ ଆନ୍ତରିକ ଘନିଷ୍ଠତା ଥିଲେ ହେଁ ଏହି ଯୁଗ-ସ୍ରଷ୍ଟାଙ୍କ ରଚନାଗତ ଆଦର୍ଶ ଓ ଦୃଷ୍ଟିଭଙ୍ଗୀ ଥିଲା ପରସ୍ପରଠାରୁ ପୃଥକ୍ । ଏମାନେ ଥିଲେ ଯଥାକ୍ରମେ ସତ୍ୟ, ଶିବ, ସୁନ୍ଦରର ଉପାସକ । ମାତ୍ର ସମଷ୍ଟିଗତ ଭାବରେ ଓଡ଼ିଆ ସାହିତ୍ୟରେ ଗୋଟିଏ ଲକ୍ଷ୍ୟ ଓ ଏକ ଆଦର୍ଶବାଦକୁ ଅନୁପ୍ରବିଷ୍ଟ କରିବାର ପ୍ରଭୂତ ଉଦ୍ୟମ ବୋଧହୁଏ ଏହି ସବୁଜ ନାମିତ କବିମାନଙ୍କଦ୍ୱାରା ହୋଇଥିଲା । ଏମାନଙ୍କ ସମବେତ ସାହିତ୍ୟ ସାଧନାର ପ୍ରତୀକ ସ୍ୱରୂପ ଗଢ଼ା ହୋଇଥିଲା 'ସବୁଜ ସାହିତ୍ୟ ସମିତି' ଏବଂ ପ୍ରକାଶିତ ହୋଇଥିଲା

ସେମାନଙ୍କ ମୁଖପତ୍ର 'ଯୁଗବୀଣା' । ୧୯୨୧ରୁ ୧୯୩୫ ପର୍ଯ୍ୟନ୍ତ ପ୍ରାୟ ୧୫ ବର୍ଷ ମଧ୍ୟରେ ସେମାନଙ୍କ ସମିତି ତରଫରୁ କେତୋଟି ଉପନ୍ୟାସ, କାବ୍ୟ, ନାଟକ, କ୍ଷୁଦ୍ରଗଳ୍ପ ସଂଗ୍ରହ ପ୍ରଭୃତି ପ୍ରକାଶିତ ହୋଇଥିଲା । ସେମାନଙ୍କ ମଧ୍ୟରୁ ସବୁଜ କବିତା, ବାସନ୍ତୀ, ମୁକ୍ତା-ଗଡ଼ର କ୍ଷୁଧା, ଅମର ଚିତା, ଦ୍ୱାଦଶୀ, ସୌମ୍ୟା. ମୁକ୍ତପଥେ, ପୂଜାରିଣୀ, ପୂର୍ଣ୍ଣିମା, ଦେଶର ଡାକ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ସାହିତ୍ୟର ତତ୍କାଳୀନ ପରିସ୍ଥିତିରେ 'ଉତ୍କଳ ସାହିତ୍ୟ'ର ସୁଯୋଗ୍ୟ ସଂପାଦକ, ସଂସ୍କାରକ ଓ ନିର୍ଭୀକ ନିରପେକ୍ଷ ସମାଲୋଚକ ବିଶ୍ୱନାଥ କର ଏମାନଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଆମ୍ଭ କ ପୃଷ୍ଠପୋଷକତା ମଧ୍ୟ କରିଥିଲେ । ବିଶ୍ୱନାଥ ନିଜେ ବ୍ରାହ୍ମ.ସ୍ୱାଧୀନଚେତା ଓ ଅ ଧୁନିକ ପ୍ରଗତିଶୀଳତାକୁ ସ୍ୱାଗତ କରୁଥିବାରୁ ଏହି ସବୁଜନାମିତ ତରୁଣମାନଙ୍କ ସହିତ ତାଙ୍କର ଭାବ-ସାମଞ୍ଜସ୍ୟ ଥିଲା—ବିଶେଷତଃ ସ୍ତ୍ରୀ ଶିକ୍ଷା, ସ୍ୱାଧୀନତା, ସମାଜସଂସ୍କାର ଓ ସାହିତ୍ୟରେ ନୂତନ ଶୈଳୀ, ବିଦେଶୀ ଭାବାନୁସରଣ ପ୍ରଭୃତି ବିଷୟରେ । ତେଣୁ 'ଉତ୍କଳ ସାହିତ୍ୟ'ରେ ପଦ୍ମଚରଣ ଓ ମଦନ-ମୋହନ ପ୍ରଭୃତି ଓ ପରବର୍ତ୍ତୀ ଅନ୍ନଦା, କାଳନ୍ଦୀ,ବୈକୁଣ୍ଠଙ୍କ କାବ୍ୟ-କବିତାକୁ ସେ ପ୍ରଥମସ୍ଥାନ ଦେଉଥିଲେ । ତଥାପି ସଂସ୍କାରଚ୍ଛନ୍ନ ଓଡ଼ିଶାରେ ଏମାନଙ୍କୁ ତୀବ୍ର ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏମାନଙ୍କ କାବ୍ୟକବିତା ତତ୍କାଳୀନ ବର୍ଷୀୟାନ୍ ସାହିତ୍ୟିକ ଓ ସମାଲୋଚକମାନଙ୍କର ସ୍ୱୀକୃତିଲାଭ କରିପାରି ନଥିଲା । ଏହି ସଂପର୍କରେ ଅନ୍ନଦାଶଙ୍କରଙ୍କ ଉକ୍ତି ପ୍ରଣିଧାନଯୋଗ୍ୟ—"ପାଶ୍ଚାତ୍ୟର ଶେଲି, ଇବ୍‌ସେନ, ଶ' ଓ ରବୀନ୍ଦ୍ରନାଥଙ୍କ ରଚନାଦ୍ୱାରା ଅନୁପ୍ରାଣିତ ହୋଇ ସେମାନେ ସାହିତ୍ୟରଚନାରେ ବ୍ରତୀ ହୋଇଥିଲେ । ଧର୍ମ

ଓ ସମାଜରେ ସଂସ୍କାର ଆଣିବା, ସମାଜ ଗଠନରେ ନାରୀ ପୁରୁଷ ଉଭୟଙ୍କୁ ସମାନ ସ୍ଥାନ ଦେବା ଓ ସବୁପ୍ରକାର ପ୍ରାଚୀନ କୁସଂସ୍କାର ଏଡ଼ାଇ ଜାତିକୁ ଏକ ନୂତନ ରୂପରେ ଗଢିଦେବା ସେମାନଙ୍କର ଲକ୍ଷ୍ୟ ଥିଲା । × × × ବିଶ୍ୱନାଥ କରଙ୍କ ଭଳି ଜଣେ ଦୂରଦୃଷ୍ଟିସମ୍ପନ୍ନ ସମ୍ପାଦକ ନ ଥିଲେ, ସେମାନଙ୍କ ଭଳି ଦଳେ ଅନାମଧେୟ କଲେଜ ଛାତ୍ର ପ୍ରବୀଣ ସାହିତ୍ୟିକଙ୍କ ମହଲରେ କୌଣସି ସ୍ୱୀକୃତି ହାସଲ କରିପାରି ନ ଥାନ୍ତେ । ସେ ସଂସ୍କାରପନ୍ଥୀ ଥିବାରୁ ସବୁ ସମାଲୋଚନା ମୁଣ୍ଡେଇ ସଂସ୍କାରପ୍ରବଣ ତରୁଣ ଓ ନବୀନ ଲେଖକଙ୍କୁ ସ୍ୱାଗତ କରିଥିଲେ ।’’

ଏହି ଉକ୍ତିରୁ ସବୁଜ ସାହିତ୍ୟର ବାଣୀ ଓ ଲକ୍ଷ୍ୟ ସ୍ପଷ୍ଟ । ସବୁଜ ସାହିତ୍ୟର ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ହରିହର, ଶରତ୍‌ଚନ୍ଦ୍ର ଓ ଅନ୍ନଦାଶଙ୍କର ବହୁ ପୂର୍ବରୁ ଓଡ଼ିଆ ସାହିତ୍ୟକ୍ଷେତ୍ରରୁ ବିଦାୟଗ୍ରହଣ କରିଛନ୍ତି । କେବଳ ବୈକୁଣ୍ଠନାଥ ଓ କାଳନ୍ଦୀଚରଣଙ୍କ ଲେଖନୀ ଓଡ଼ିଆ ସାହିତ୍ୟକୁ ଦୀର୍ଘକାଳ ପରିପୁଷ୍ଟ କରିଛି । ବାସ୍ତବରେ ସବୁଜ ନାମିତ କବିମାନଙ୍କ ମଧ୍ୟରୁ ଅନ୍ନଦା, କାଳନ୍ଦୀ ଓ ବୈକୁଣ୍ଠଙ୍କର କାବ୍ୟ-କବିତାର ଉଲ୍ଲେଖ ସର୍ବାଗ୍ରେ କର୍ତ୍ତବ୍ୟ । ଏହି କବିମାନେ ଏକାଧାରରେ ଶେଲିଙ୍କର ବିପ୍ଳବବାଦ, ରବୀନ୍ଦ୍ରନାଥଙ୍କର ରହସ୍ୟବାଦ (Mysticism), କିଟ୍‌ସ୍‌ଙ୍କର ଇନ୍ଦ୍ରିୟଗ୍ରାହ୍ୟ ରୂପପିପାସା, ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କର ଶୈଶବର ଗୌରବଗୀତି, ଅରୂପପ୍ରୀତି, ପ୍ରକୃତି ପ୍ରଣୟ ପ୍ରଭୃତି ସମସ୍ତଙ୍କୁ କାବ୍ୟାଦର୍ଶ ଭାବରେ ଗ୍ରହଣ କରିଛନ୍ତି । ବିଶେଷଭାବରେ ବୈକୁଣ୍ଠନାଥଙ୍କ କାବ୍ୟକବିତା ଆଲୋଚନା କଲେ ଏହାର ସମୀଚୀନତା ହୃଦୟଙ୍ଗମ କରିହୁଏ । ମାତ୍ର ଏତେ ଭାବ-ଧାରାକୁ ଆତ୍ମସ୍ଥ କରିବାକୁ ଯେଉଁ କବିମାନସ ଆବଶ୍ୟକ, ତାହା

ବୈକୁଣ୍ଠନାଥଙ୍କ ପକ୍ଷରେ ସମ୍ଭବ ନଥିଲା । ଫଳରେ ତାହାଙ୍କ କବିତା ବହୁ ଭାବଧାରା ସମାକୀର୍ଣ୍ଣ ହୋଇ ତାଙ୍କୁ ରହସ୍ୟବାଦୀ କରିଛି । କେଉଁଠି ସେ ରୂପପ୍ରୀତିକୁ ଜୀବନର ଗୌରବ ବୋଲି ଗ୍ରହଣ କରିଛନ୍ତି ତ କେଉଁଠି ସେ ଜାଗତିକ ବନ୍ଧନକୁ ମାୟା, ଅସତ୍ୟ ବୋଲି ଗ୍ରହଣ କରିଛନ୍ତି । କେଉଁଠି ମଧ୍ୟ ଜଗତକୁ ଛାଡ଼ି 'ସୁଦୂର ଗୋଲକ'କୁ ପ୍ରୟାଣ କରିବାକୁ ସେ ଲାଳସୀ ହୋଇଛନ୍ତି— "ଚାଲରେ ଚାଲ ମନ, ନିତ୍ୟ ମଧୁବନ ଦେଖିବୁ ପ୍ରିୟ ରାସ ଅଦୂର ଗୋଲକରେ ।" ତେଣୁ ଛନ୍ଦପ୍ରିୟ ଏହି କବିଙ୍କ କାବ୍ୟ-କବିତାରୁ ଏକ ସ୍ଥିର ଦୃଷ୍ଟିଭଙ୍ଗୀ ଓ ଆଦର୍ଶବାଦ ବିଷୟରେ ସ୍ପଷ୍ଟ ଧାରଣା କରି ହୁଏ ନାହିଁ । ତାଙ୍କ କାବ୍ୟ କବିତା ସଂପର୍କରେ ତାଙ୍କର ଭାଷାରେ କହିଁ କୁହାଯାଇପାରେ—"ସ୍ପର୍ଶେ ପଡ଼େ ନାହିଁ ଧରି ଚିତ୍ତ ଖାଲି କରେ ପୁଲକିତ ।"

ସେତେବେଳେ ଭାରତର ଜନତା ମୁକ୍ତି ସଂଗ୍ରାମରେ ଅବତୀର୍ଣ୍ଣ । ଓଡ଼ିଶାରେ ନୂତନ ଶିକ୍ଷା ସଂସ୍କୃତିର ସୁପ୍ରଚଳନ ହୋଇଥାଏ । ସମାଜରେ ନୂତନ ଏକ ମଧ୍ୟବିତ୍ତ ଶ୍ରେଣୀର ସୃଷ୍ଟି ହୋଇସାରିଥାଏ । ଏହି ଏକ ସନ୍ଧିକ୍ଷଣ (Transitional period)ରେ ଏମାନେ ଲେଖନୀ ଧାରଣ କରିଥିବାରୁ ଏମାନଙ୍କ ରଚନାରେ ମୁକ୍ତିପିପାସା ସଙ୍ଗେ ସଙ୍ଗେ ଭାବବିଳାସ ଓତଃପ୍ରୋତଭାବେ ଜଡ଼ିତ ଥିବାର ଦେଖାଯାଏ । ଅବଶ୍ୟ ଏ କଥା ସତ୍ୟ ଯେ, ରୋମାଣ୍ଟିକ କବିର ପ୍ରକୃତି-ପ୍ରୀତି ଆଦର୍ଶପ୍ରୀତି ସହିତ ଏକସୂତ୍ରରେ ଗ୍ରଥିତ । ଏହି କବିମାନେ ନିକଟବର୍ତ୍ତୀ ଜଗତର ରୂପରେ ଯେପରି ମୁଗ୍‌ଧ ହୁଅନ୍ତି, ଦୂରବର୍ତ୍ତୀ ଜଗତର ଅଦୃଷ୍ଟ ସୌନ୍ଦର୍ଯ୍ୟପିପାସାରେ ସେହିପରି ବ୍ୟାକୁଳ ହୋଇଥାନ୍ତି । ମନୁଷ୍ୟ, ପ୍ରକୃତି ଉଭୟ ପ୍ରତି ଏମାନେ ସମାନ ଆଗ୍ରହଶୀଳ । ଏଣୁ ମନୁଷ୍ୟ

ସଙ୍ଗେ ପ୍ରକୃତିର ଅବିଚ୍ଛେଦ୍ୟ ସଂପର୍କ ବିଷୟ ଏହି କବିମାନେ ବର୍ଣ୍ଣନା କରିଥାନ୍ତି ।

ଆବେଗପ୍ରବଣତା ରୋମାଣ୍ଟିକ୍ କବିତାର ଅନ୍ୟ ଏକ ପ୍ରଧାନ ଲକ୍ଷଣ । ଏହି ଦୃଷ୍ଟିରୁ ଦେଖିଲେ କାଳନ୍ଦୀଚରଣଙ୍କ କବିତା-ସମୂହ ପ୍ରକୃତି ଓ ମନୁଷ୍ୟସମ୍ବନ୍ଧରେ କେବଳମାତ୍ର କୌତୂହଳ ଓ ପ୍ରୀତି ପ୍ରଦର୍ଶନରେ ହିଁ ପର୍ଯ୍ୟବସିତ ନୁହେଁ । ଜୀବନ, ମୃତ୍ୟୁ, ଜନ୍ମାନ୍ତର, ଅନ୍ଧ ଅହେତୁକ ସଂସ୍କାରର ଅନୁଦାର ପରିବେଶ, ଧର୍ମ, ଭଗବାନ,ଜାତୀୟ ଜୀବନର ଅଗ୍ରଗତି, ପ୍ରଚଳିତ ସାମାଜିକ ସଂସ୍ଥା, ଶୋଷଣହୀନ ଓ ଶ୍ରେଣୀହୀନ ରାଷ୍ଟ୍ର ପ୍ରତିଷ୍ଠା ଇତ୍ୟାଦି ବହୁବିଧ ଭାବଧାରାରେ କିପରି ସଚେତନ କବିମନ ନିରନ୍ତର ଆନ୍ଦୋଳିତ, ତାହାର ପ୍ରକାଶ ଆମେ ତାଙ୍କ କବିତାଗୁଡ଼ିକରେ ଦେଖିବାକୁ ପାଉଁ । ସେ ଯଥାର୍ଥତଃ ପ୍ରକୃତିର 'ରୂପ-ପୂଜା' ସଙ୍ଗେ ସଙ୍ଗେ 'ଜୀବନ-ପୂଜା' କରିଛନ୍ତି । ଏହି ବିଷୟ-ବ୍ୟାପ୍ତି ତାଙ୍କ କବିତାର ଅନ୍ୟତମ ବିଶିଷ୍ଟତା ।

"ସକଳ ମମତା ତେଜି ନଖୋଜଇ ମୁକତି ମାରଗ
ହୁଅଇ ନାସ୍ତିକ ପଛେ, ନ ଲୋଡ଼ଇ ଅପର ସ୍ୱରଗ
କି ଆନନ୍ଦ ନିହିତ ସେ ସ୍ୱର୍ଗ ପରବାସେ
ହୁଏ କି ତା' ସୁଷମିତ ଶିଶୁର ସୁହାସେ ?
ଯେ ସଙ୍ଗୀତ ପ୍ରିୟାର ନୂପୁରେ
ଅଛି କେଉଁ ବଇକୁଣ୍ଠପୁରେ ?
ପ୍ରିୟା ମୁଖ-ଶଶୀ
ସେ କେଉଁ ଉର୍ବଶୀ
ପାରେ ଜିଣି ?"

(ପୁଷ୍ପ ମନ୍ଦିର)

ଇତ୍ୟାଦି ଲେଖି, କବି ଉତ୍ତର ଜୀବନରେ ଲେଖିଛନ୍ତି—

କବିତା ଗଢ଼େ ଏକ ନୂଆଁ ସମାଜର
ସବୁରି ପାଇଁ ଯହିଁ ବଖରେ ହେଲେ ଘର ।
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକାତ ।
ଦୁଇଟା ଲୁଗା ଜାମା ସବୁରିପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାର ନାହିଁ ତଳେ ।
ବେକାର ରହିବାକୁ ନାହିଁଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର ।
କହିବାପାଇଁ କଥା ସବୁରି ଦାବି ଅଛି
ମୁଁ ସେହି ସମାଜର କବିତା ବସେଁ ରଚି ।

(ଆଗାମୀ—ହୃଷ୍ଟିଏ ଲେଡ଼ା)

ଏହି ଦୁଇ କବିତାରେ ଭାଷା, ଭାବ ଓ ଦୃଷ୍ଟିଭଙ୍ଗୀର ପାର୍ଥକ୍ୟ ବିଷୟରେ କିଛି ସୂଚେଇ ଦେବା ନିଷ୍ପ୍ରୟୋଜନ । କାଳନ୍ଦୀଚରଣଙ୍କ କବିତା 'ସବୁଜ କବିତା'ର ସାଧାରଣମାନକୁ ପଛରେ ପକାଇ ବହୁ ଆଗକୁ ଅଗ୍ରସର ହୋଇଛି । କାଳନ୍ଦୀଚରଣ, ସଚ୍ଚିଦାନନ୍ଦ ଓ ଅନନ୍ତ ପଟ୍ଟନାୟକଙ୍କ କବିତାକୁ ଓଡ଼ିଶାର ପ୍ରଗତିଶୀଳ ବା ଅତ୍ୟାଧୁନିକ କବିତାର ପୂର୍ବାଭାସ କୁହାଯାଇପାରେ ।

ଅନ୍ନଦାଶଙ୍କରଙ୍କର କବିତାଗୁଡ଼ିକରୁ ତାଙ୍କର ଉନ୍ନତତମ ପ୍ରତିଭାର ପରିଚୟ ମିଳିଥାଏ । ସେଗୁଡ଼ିକରେ ଆମେ 'ପ୍ରଳୟ ପ୍ରେରଣା'ରେ ଉଦ୍‌ବୁଦ୍ଧ ହୋଇ 'କମଳବିଳାସୀର ବିଦାୟ' ଦେଖିବା ସଙ୍ଗେ ସଙ୍ଗେ 'ପ୍ରଣୟୀ-ପ୍ରଣୟିନୀ'ଙ୍କର'ପଶି-ମହଲ'ରେ 'ସୃଜନ ସ୍ୱପ୍ନ' ଦେଖୁଁ । ଅର୍ଥାତ୍ ଉଦ୍ଦାମ ବୈପ୍ଳବିକ ଭାବଧାରା ସହିତ ସୌନ୍ଦର୍ଯ୍ୟାଭୂର

କବି ମନ ଓ ତାର ପଳାୟନପର ମନୋବୃତ୍ତିର ପରିଚୟ ପାଇଥାଉଁ । ଯଥା, ବିପ୍ଳବର ଆହ୍ୱାନ ଜଣାଇ କବି ଲେଖିଛନ୍ତି—

"ମୁକ୍ତ ହୁଅ ମୁକ୍ତ ହୁଅ      ପତିତ ପାତିତ ଯେତେ ଜାତି
ପରାଧୀନ ଯେତେ ଦେଶ      ମୁକ୍ତିପାଇଁ ଉଠ ଥରେ ମାତି ।
ଜାତିର ଜୀବନେ ଯେତେ      ଅଛି ପାପ ଅଛି ଆବିଳତା
ବୈଷମ୍ୟ, ବିରୋଧ ଯେତେ      ଅବିଶ୍ୱାସ, ଭୀରୁତା, ଭଣ୍ଡତା
ସବୁ ଦିଅ ନିର୍ବହ୍ନିରେ      ନିର୍ବିକାରେ ଅନଳେ ଆହୁତି
ତେବେ ତ ଲଭିବ ଭାଇ      ଦାସତ୍ୱର ନିଗଡ଼ୁ ନିଷ୍କୃତି ।"

(ପ୍ରଳୟ ପ୍ରେରଣା)

ମାତ୍ର କବି ଏହା ପରେ ବିପ୍ଳବର ବିପରୀତ ଭାବନା ବ୍ୟକ୍ତ କରିଛନ୍ତି—

"କହୁଛି ସତ      ଶୁଣ ଗୋ ମିତ
ଧ୍ୱଂସେ ମୋର      ମନ ନାହିଁ ତ
ସେ ନୁହେଁ ମୋର ବ୍ୟସନ
ପ୍ରଳୟ ଧୂମ-      କେତୁ ମୁଁ ନୁହେଁ
ନୁହଁଇ ଭୂମି-      କମ୍ପ ମୁଁ ହେଁ
ସୃଷ୍ଟି ସ୍ଥିତି ନାଶନ ।"

ତେଣୁ କବି କହିଁଛନ୍ତି—

ନୟନ ପରେ      ନୟନ ରଖି
ମରମ ସାଥେ      ମରମ ଯୋଖି
ସ୍ୱପନ ସୁଖେ ଥିବା ଗୋ
ପ୍ରେମ ପୁରୁଣା      ନ ହୁଏ ଯହିଁ
ଚାଲ ସେ ପୁରେ      ଯିବା ଗୋ ସହି
ଚାଲ ସେ ପୁରେ ଯିବା ଗୋ ।"

(ସୃଜନ ସ୍ୱପ୍ନ)

ଏହା ସ୍ୱବିରୋଧୀ ଉକ୍ତି ଓ ପଳାୟନ ମନୋବୃତ୍ତିଭିନ୍ନ ଅନ୍ୟ କିଛି ନୁହେଁ ।

ଯାହାହେଉ ସବୁଜନାମିତ ଏହି କବିମାନଙ୍କ ପ୍ରେମ ଭକ୍ତି-ଯୁଗର ପ୍ରେମ ପରି ଅତି ସଂଭୋଗ-ଲାଳସାପୂର୍ଣ୍ଣ ନ ହୋଇ ସ୍ଥାନେ ସ୍ଥାନେ ତ୍ୟାଗପୂର୍ଣ୍ଣ, କର୍ମ-ସଙ୍ଗୀତର ପ୍ରେମ - ଧାରଣାରେ ଉଦ୍‌ବୁଦ୍ଧ ହୋଇପାରିଛି ।

ଏହି ସବୁଜନାମିତ କବିମାନଙ୍କ ବିରୁଦ୍ଧରେ ସାଧାରଣତଃ ୩ଟି ଅଭିଯୋଗ ଆଗତ କରାଯାଏ । ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ପ୍ରାଣିଗ୍ରାହୀ ସାହିତ୍ୟ ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି—* (୧) ପ୍ରାଚୀନ ଓଡ଼ିଆ କବିତାର ପ୍ରକାଶଭଙ୍ଗୀ ସହିତ ସବୁଜ କବିତାର କୌଣସି ସମ୍ବନ୍ଧ ନାହିଁ ; କିନ୍ତୁ ଆଧୁନିକ ବଙ୍ଗ କବିତାର ପ୍ରକାଶଭଙ୍ଗୀ ସହିତ ସମ୍ପୂର୍ଣ୍ଣ ସମ୍ପର୍କ ଅଛି । (୨) ଏଥିରେ ମାତ୍ରାବୃତ୍ତ ଛନ୍ଦ ବ୍ୟବହୃତ ହୋଇଛି । (୩) ଏହାର ଭାଷା ବଙ୍ଗଭାଷାର ନିକଟତମ ହୋଇପଡ଼ିଛି । ଏସବୁ ଅଭିଯୋଗ ବହୁ ପରିମାଣରେ ଠିକ୍ । ଏହି ସବୁଜପନ୍ଥୀ କବିମାନେ ଓଡ଼ିଶାର ପ୍ରାଚୀନ ସାହିତ୍ୟ ସହିତ ଘନିଷ୍ଠ ଯୋଗସୂତ୍ର ରଖିଥିଲେ ଏହି ଦୋଷ ସମ୍ଭବତଃ ବହୁ ପରିମାଣରେ ଦୂରୀଭୂତ ହୋଇପାରିଥାନ୍ତା । ଫକୀରମୋହନ, ରାଧାନାଥ, ମଧୁସୂଦନ ପ୍ରଭୃତିଙ୍କ ରଚନା ବିଦେଶୀପ୍ରଭାବ ସତ୍ତ୍ୱେ ସମ୍ଭବତଃ ଏହି କାରଣରୁ ବହୁପରିମାଣରେ ନିର୍ଦ୍ଦୋଷ । ସମାଜ ଓ ତାର ପରିପ୍ରେକ୍ଷୀ ବଦଳିବା ସଙ୍ଗେ ସାହିତ୍ୟର ପ୍ରକାଶ ରୀତି ପରିବର୍ତ୍ତିତ ହେବା ସ୍ୱାଭାବିକ ହେଲେହେଁ, ଗୋଟାଏ ଜାତିର ଶହ ଶହ ବର୍ଷର ପ୍ରକାଶଭଙ୍ଗୀ, ଭାଷା ପ୍ରତି ଉଦାସୀନତା ବା

*'ଓଡ଼ିଆ ସାହିତ୍ୟର ବାଣିଜ୍ୟ ମୂଲ୍ୟ' ଓ 'ସବୁଜଶୈଳୀ'—ଶଙ୍ଖ ୧ମ ବର୍ଷ ୪ର୍ଥ ଓ ୭ମ ସଂଖ୍ୟା

ପୃଷ୍ଠ ପ୍ରଦର୍ଶନ କଦାପି ସମୀଚୀନ ନୁହେଁ । ସବୁଜ ସାହିତ୍ୟରେ ଏହା ଘଟିଥିବାରୁ ଏହି ସାହିତ୍ୟ ଏଇ ପଚଶ ବର୍ଷ ମଧ୍ୟରେ ଆଶାନୁରୂପ ଆଦୃତି ଲଭ କରିପାରି ନାହିଁ ।

## ଏଇ କବିତାର ଛନ୍ଦ ବୈଚିତ୍ର୍ୟ—

ପ୍ରାଚୀନ ଓଡ଼ିଆ ସାହିତ୍ୟ ପଦ୍ୟବହୁଳ ଓ ତାହା ସ୍ୱର ସଂଯୋଗରେ ଗୀତ ହେଉଥିଲା । କାରଣ, ଓଡ଼ିଆ ଶବ୍ଦରେ ଦୀର୍ଘ ସ୍ୱରଧ୍ୱନିର ଅଭାବଯୋଗୁ ପଦ୍ୟରେ ଧ୍ୱନି-ଗୌରବ ସମ୍ପାଦିତ ହୋଇପାରୁ ନ ଥିଲା । ତେଣୁ ପ୍ରାଚୀନ ସାହିତ୍ୟରେ ପଦ୍ୟ ଅପେକ୍ଷା ଗୀତର ପ୍ରଚଳନ ଥିଲା ବେଶୀ । ଗାନ କରିବା ସମୟରେ ପ୍ରୟୋଜନମତେ ସ୍ଥାନେ ସ୍ଥାନେ ସ୍ୱରର ଗୁରୁ ଲଘୁ ଉଚ୍ଚାରଣ କରି ବା ତାଳ, ଲୟ ଦେଇ ପଦ୍ୟରେ ସ୍ୱରଝଙ୍କାର ସୃଷ୍ଟି କରା-ଯାଉଥିଲା । ଏହା ଫଳରେ ଯେଉଁ ଓଡ଼ିଆ ଭାଷା ସ୍ୱାଭାବିକ ଉଚ୍ଚାରଣ ଦୃଷ୍ଟିରୁ ନିସ୍ତରଙ୍ଗ, ଗୁରୁଲଘୁ ନିୟମବିବର୍ଜିତ ତାହା ତରଙ୍ଗାୟିତ ଓ ସୁଲଳିତ ହୋଇ ପାରୁଥିଲା । ଓଡ଼ିଶାର ପ୍ରାଚୀନ କବିଗଣ ତେଣୁ ପଦ୍ୟରେ ପ୍ରତ୍ୟେକ ଅକ୍ଷରକୁ ଏକମାତ୍ରା ବୋଲି ଗ୍ରହଣ କରି, ଅକ୍ଷରର ଗଣନା ଓ ତାର ସମତା ପ୍ରତି ଧ୍ୟାନ ଦେଇ କବିତା ଲେଖୁଥିଲେ । "ଅକ୍ଷର ଗଣିବ ହାତରେ । ତେବେ ସେ ଲେଖିବ ପତରେ ।" ଏଇଆ ଥିଲା ପଦ୍ୟରଚନାର ରୀତି । ଏହାକୁ ଅକ୍ଷର-ମାତ୍ରିକ ଛନ୍ଦ କୁହାଯାଏ । ଓଡ଼ିଆ ସାହିତ୍ୟରେ ଏହି ଛନ୍ଦର ପର-ମ୍ପରା ବଂଶ ଶତାବ୍ଦୀ ପର୍ଯ୍ୟନ୍ତ ଅବାଧରେ ଚଳି ଆସିଥିଲା ।

ସଂସ୍କୃତ ଅନୁକରଣରେ ଓ ପଦ୍ୟାବଳୀ ସାହିତ୍ୟ ପ୍ରଭାବରେ ମାତ୍ରାବୃତ୍ତ ଓ ଗୁରୁଲଘୁ ନିୟମାନୁଗ ପଦ୍ୟରଚନା ରୀତି କେତେକ ଓଡ଼ିଆ କବି ବେଳେ ବେଳେ ଅନୁକରଣ କରୁଥିବାର ବିରଳ

ନିଦର୍ଶନ ଥିଲେହେଁ, ଓଡ଼ିଆ ସାହିତ୍ୟରେ ସେ ସବୁକୁ ବ୍ୟକ୍ତିହିସ କିମ୍ବା ନବୀନଛନ୍ଦର ପରୀକ୍ଷାରୂପେ ଗ୍ରହଣ କରିବା ବିଧେୟ । ଦେବଦୁର୍ଲଭ, ବୃନ୍ଦ କବି, ଗୟୁ ଦାମୋଦର, ଗୋପାଳକୃଷ୍ଣ ପ୍ରଭୃତି ପ୍ରାଚୀନ କବିଙ୍କ ଲେଖାରେ ସ୍ଥାନେ ସ୍ଥାନେ ଏହା ପ୍ରତିଫଳିତ ।

ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶକ ମଧ୍ୟରେ ମଧ୍ୟ ମଧୁସୂଦନ, ଗଙ୍ଗାଧର, ଗୋପୀନାଥ ନନ୍ଦ, ଲକ୍ଷ୍ମୀକାନ୍ତ, ନନ୍ଦ-କିଶୋର, ପଦ୍ମଚରଣ ପଭୃତି କବିଗଣ ସେମାନଙ୍କ ଅକ୍ଷରମାତ୍ରିକ ରଚନାବଳୀ ମଧ୍ୟରେ ସ୍ଥାନେ ସ୍ଥାନେ ଏହି ମାତ୍ରାବୃତ୍ତର ପରୀକ୍ଷା କରିଯାଇଛନ୍ତି । ମାତ୍ର ସବୁଜନାମିତ କବିମାନେ ଏହି ମାତ୍ରାବୃତ୍ତ ଛନ୍ଦ ଅବଲମ୍ବନରେ ଯୁକ୍ତାକ୍ଷରିକ ଛନ୍ଦରେ କାବ୍ୟକବିତା ଲେଖି ଏହାକୁ ଅଧିକ ଜନପ୍ରିୟ କରିଅଛନ୍ତି । ଏହାର ସମୀଚୀନତା କେତେ ତାହା ବାସ୍ତବିକ ବିଶ୍ଳେଷ୍ୟ ବିଷୟ ।

ଆଧୁନିକ ଯୁଗରେ ମୁଦ୍ରଣ-ଯନ୍ତ୍ର ହେତୁ କାବ୍ୟ ରଚନା ଓ ପଠନ ରୀତି ପରିବର୍ତ୍ତିତ ହେଲା । କାବ୍ୟ ପଠିତ ହେବାରେ ପର୍ଯ୍ୟବସିତ ହେବାରୁ ଅର୍ଥାତ୍ ଓଡ଼ିଆ ପଦ୍ୟ ସ୍ୱରସଂଯୋଗରେ ଗୀତ ହେବା ରହିତ ହେବାରୁ ଓଡ଼ିଆ ପଦ୍ୟକୁ ଛନ୍ଦୋମୟ କରିବା ଲାଗି ସବୁଜ କବିଗଣ ରବୀନ୍ଦ୍ରନାଥଙ୍କ ପ୍ରବର୍ତ୍ତିତ ଛନ୍ଦକୁ ଓଡ଼ିଆରେ ବାଧ୍ୟ ହୋଇ ଅନୁକରଣ କଲେ । ମାତ୍ର ଓଡ଼ିଆ ଉଚ୍ଚାରଣରେ ସମସ୍ତ ହ୍ରସ୍ୱଦୀର୍ଘସ୍ୱରକୁ ସଂସ୍କୃତ ଅନୁକରଣରେ ହ୍ରସ୍ୱଦୀର୍ଘ କରିବା ସମ୍ଭବ ନ ହେବାରୁ କେବଳ ଯୁକ୍ତାକ୍ଷରମାନଙ୍କୁ ଦ୍ୱିମାତ୍ରିକଭାବେ ଗ୍ରହଣ କଲେ । ଏହାହିଁ ଯୁକ୍ତାକ୍ଷରିକ ଛନ୍ଦ । ଆଜିକାଲି ଏଇ ଛନ୍ଦକୁ ଓଡ଼ିଶାର ସବୁ ପ୍ରତିଷ୍ଠିତ ଲେଖକ ଅନୁସରଣ କରୁଛନ୍ତି । ମାତ୍ର ଯୁକ୍ତବର୍ଣ୍ଣକୁ ଦ୍ୱିମାତ୍ରିକଭାବରେ ଗ୍ରହଣ କରିବା ଯୋଗୁ ଆମକୁ ବାଧ୍ୟହୋଇ ବଙ୍ଗଳା ରୀତିରେ

ଉଚ୍ଚାରଣ କରିବାକୁ ପଡ଼ୁଛି । ଅର୍ଥାତ୍ ହସନ୍ତବର୍ଜିତ ଓଡ଼ିଆ ଉଚ୍ଚାରଣରେ ହସନ୍ତ ବ୍ୟବହାର କରିବାକୁ ପଡ଼ୁଛି ।

ପ୍ରାଚୀନ ଓଡ଼ିଆ ସାହିତ୍ୟର ଗୋଟିଏ ପଦ ସହିତ ଆଧୁନିକ ଓଡ଼ିଆ କବିତାର ଗୋଟିଏ ପଦ ତୁଳନା କଲେ ଏହା ସୁସ୍ପଷ୍ଟ ହେବ ।

"ବନ୍ଧୁ କଳୁକ ଦୁର୍ବିଗ୍ଭରକୁରେ
ବର୍ଜିଲୁ ଖଣ୍ଡ ଅର୍ଜି ଖାରକୁରେ ।
ଅକ୍ଷର ନ ଜାଣିବା ମୂରୁଖ ପରି ନିଜ
ବକ୍ଷରେ ଲକ୍ଷ୍ୟ କଲୁ ଶରକୁରେ ।"

"ବନ୍‌ଧୁ ସଜଳ ନୀଳ ଆଖି
ଉପର ଆକାଶ ହଏ ସାକ୍ଷୀ
ପାହାନ୍ତ ପବନ ପରିଏ ଉଡଲା
ପରାଣ ଦୁଆରେ ଯାଏ ଡାକ ।" (ଧୂସରିତ ସ୍ୱପ୍ନ)

ଶେଷୋକ୍ତ ପଦ୍ୟାଂଶରେ 'ବନ୍ଧୁ'ର ଉଚ୍ଚାରଣ ପ୍ରକୃତରେ ବନ୍+ଧୂ (ବନ୍ଧୁ ନୁହେଁ) ତେଣୁ ତାହା ଦୁଇ ମାତ୍ରିକ । ମାତ୍ର ପୂର୍ବରୁ କଥିତ ହୋଇଛି ଓଡ଼ିଆରେ ପ୍ରତ୍ୟେକ ଅକ୍ଷର ଗୋଟିଏ ଗୋଟିଏ syllable; ତେଣୁ ପ୍ରତ୍ୟେକ ଏକ ଏକ ମାତ୍ରା । ଓଡ଼ିଶାର ପ୍ରାଚୀନତମ ରଚନା ଡଗ, ଗାଉଁଲି ଗୀତ, ଡାକ ବଚନ, ଖାନ୍ଦଣା, ଚଷାଗୀତ, ଖେଳ ଗୀତ, ଜଣାଣ ପ୍ରଭୃତିରେ ମଧ୍ୟ ହସନ୍ତର ବ୍ୟବହାର ଦେଖାଯାଏ ନାହିଁ ।

ଯଥା—ଡଗ:—( କ ) ଅଖାଇ । କରିଛି । ଓଷା
ଢୋଲକ । ଗୁଡ଼ୁଲ । ଓଳକେ । ଖାଇଛି
ହାନ୍ତ ଅ- । ଛି ହର । ଘଷା

(ଖ) କ୍ଷୀରରେ । ଧୋଇଲେ । ଖଣ୍ଡରେ । ମୋହିଲେ ।
ନିମ୍ବ କ । ମଧୁର । ହୋଇବ ।
ଯେତେ ପ-। ରକାରେ । ବୁଝାଇ । କହିଲେ ।
ପର କ । ଆପଣା । ହୋଇବ ।

ଡାକ ବଚନ:— ପୂର୍ବେ ଆର୍ଦ୍ରାବଳୀ ପଶ୍ଚିମେ ରୋଇ
ନାଥ ବୋଲେ ପୁତା ନିଶ୍ଚୟ ଧୋଇ ।

ଚଷା ଗୀତ:— ଦୂରକୁ ସୁନ୍ଦର ଲୋ ପରବତ ମାଳ
ଗାଁକୁ ସୁନ୍ଦର ଲୋ ନଡ଼ିଆ ଗୁଆ ତାଳ
ଘରକୁ ସୁନ୍ଦର ଲୋ ଘରଣୀ
ଯେବେ ନ ଯିବ ବାପ ଘର ଲୋ ।

ପ୍ରାଚୀନ ଓଡ଼ିଆ କାବ୍ୟ-ସାହିତ୍ୟରେ ମଧ୍ୟ ସେଇ କଥା । —"ଠିକଣ ବର୍ତ୍ତୁଳ ଚନ୍ଦ୍ରାନନା ତୋ ଶତ୍ରୁରେ··· ( କବିସୂର୍ଯ୍ୟ ) ( ଠିକ୍ ନୁହେଁ ) ଆଧୁନିକ ପଦ୍ୟ ଉଚ୍ଚାରଣଭଙ୍ଗୀରେ ପ୍ରାଚୀନ ସାହିତ୍ୟକୁ ପଢ଼ିଲେ କିପରି ହାସ୍ୟକର ହେବ ତା ପରୀକ୍ଷା କଲେ ସମସ୍ତେ ଜାଣିପାରିବେ । ଉପର୍ଯ୍ୟୁକ୍ତ ଓଡ଼ିଆ ତଗ ସହିତ ହିନ୍ଦୀ ଓ ବଙ୍ଗଳାର ପ୍ରାଚୀନ ପଦର ଉଚ୍ଚାରଣ ତୁଳନୀୟ—

"ସୁଜନ୍ ପୀରତ୍ତ ହେମ ବରବର୍ ଦାହେ ତ ଜ୍ୟୋତି ବଢ଼ାଇ,
କୁଜନ୍ ପୀରତ୍ତ କାଚ୍ ବରବର୍ ଟୁଟେ ତ ଯୋଡ଼୍ ନ ଯାଇ ।"

"ବୃଷ୍ଟି ପଡ଼େ ଟାପୁର୍ ଟୁପୁର୍ ନଦେ ଏଲ ବାନ୍
ଶିବ୍ ଠାକୁରେର୍ ବିୟେ ହବେ ତିନ୍ କନ୍ୟେ ଦାନ୍ ।"

ହିନ୍ଦୀ ଓ ବଙ୍ଗଳା ଉଚ୍ଚାରଣରେ ହସନ୍ତର ବ୍ୟବହାର ଏବଂ ହ୍ରସ୍ୱ ଓ ଦୀର୍ଘ ସ୍ୱରର ଉତ୍‌ଥାନ ପତନ ରହିଛି; ମାତ୍ର ଓଡ଼ିଆ

ଉଚ୍ଚାରଣ ଏପରି ନ ହେଲେହେଁ ଓଡ଼ିଆରେ ଏହି ଛନ୍ଦ ପ୍ରବର୍ତ୍ତନର ଯାଥାର୍ଥ୍ୟ କେତେଦୂର ତାହା ନିରୂପଣ କରିବା ଏକାନ୍ତ କର୍ତ୍ତବ୍ୟ ।

ଏହି ସ୍ୱୈରବାଦୀ (Romantic) କବିଗଣ କିପରି ସଂସ୍କୃତ, ବଙ୍ଗଳାରୁ ବହୁ ଛନ୍ଦକୁ ଓଡ଼ିଆ ସାହିତ୍ୟରେ ଅନୁପ୍ରବିଷ୍ଟ କରିଛନ୍ତି ଓ ମାତ୍ରା ଚଳନର ନାନାବିଧ ପରୀକ୍ଷା କରିଛନ୍ତି ତାର କେତୋଟି ଉଦାହରଣ ଦେଇ ମୋର ବକ୍ତବ୍ୟ ଶେଷ କରିବି ।

(୧) "ଶୁଣିବି ଯଦି । ଶୁଣ ଗୋ ରାଣି
ସେ ନୁହେଁ ମୋର । ମରଣ ବାଣୀ
ସେ ନୁହେଁ ମନ । କଥା ମୋ ।
( ଅନ୍ନଦାଶଙ୍କର )

ଓଡ଼ିଆରେ ଏଇ ଚଉମାତ୍ରିକ ଛନ୍ଦ ସଂସ୍କୃତ ପଞ୍ଚମାତ୍ରିକ ଜୟଦେବୀୟ ମାତ୍ରାବୃତ୍ତର ପ୍ରତିଧ୍ୱନି—

ବଦସି ଯଦି । କିଞ୍ଚିଦପି । ଦନ୍ତରୁଚି । କୌମୁଦୀ
ହରତି ଦର । ତିମିର ମତି । ଘୋରଂ ।

(୨) ଫୁଲ-ସୁରଭିତ ବନ ଅନ୍ତରେ···ସଦା ସନ୍ତରେ
ଅଭିନବ ତବ ତନୁ ଗନ୍ଧ
ଅଳି-ମୁଖରିତ ମଧୁ କୁଞ୍ଜରେ ···ନିତି ଗୁଞ୍ଜରେ
ତବ ପଦ ମଞ୍ଜିର-ଛନ୍ଦ । (ଗଡ଼ନାୟକ)

ଏହା ନିମ୍ନୋକ୍ତ ସଂସ୍କୃତ ଛନ୍ଦର ଅନୁକୃତି ମାତ୍ର—

ମଧୁମୁର ନରକ ବିନାଶନ···ଗରୁଡ଼ାସନ
ସୁର କୁଳ କେଳି ନିଦାନମ୍ (ଗୀତଗୋବିନ୍ଦ)

(୩) ଚତୁର୍ମାତ୍ରିକ—ଫୁଲ ଫୁଟେ । ଫୁଲ ଝଡ଼େ । ପୁଣି ଫୁଟେ । ସେ
ପୁରନିମା । ଶଶୀ ବୁଡ଼େ । ପୁଣି ଉଠେ । ସେ
(ଅନ୍ନଦା)

"ସନ୍ଧ୍ୟାର । ପଛେ ପଛେ । ଆସିଅଛି । ଜ୍ୟୋତ୍ସ୍ନା
କୁଞ୍ଜେ ବ- । ଳସି ମୋର । ବଢ଼ାଇଛି । ତୃଷ୍ଣା" (ମାନସିଂ)

ଏହା ସଂସ୍କୃତ ପଜ୍‌ଝଟିକା ଛନ୍ଦର ଅନୁକୃତ—
ମା କୁରୁ ଧନ ଜନ ଯୌବନ ଗର୍ବଂ
ହରତି ନିମେଷାତ୍ କାଳଂ ସର୍ବଂ । (ଶଙ୍କରାଚାର୍ଯ୍ୟ)

ଏହି ଧରଣର କବିତାରେ ମାତ୍ରାଚଳନର କେତେକ ପରୀକ୍ଷା ମଧ୍ୟ ଉଲ୍ଲେଖଯୋଗ୍ୟ ।

( ୪+୪+୪+୩ )

ଆଜ ଆସି । ଅଛି ଫେରି । ଫାଲଗୁନୀ । ଜୋଛନା
ନିଶୀଥିନୀ । ସଚକିତ । ଲୋଚନା
ଥର ଥର । ତନୁ ତାର । ଥିର ଥିର । ମଳୟ
ଶକୁର ବ- । କୁଳହାରେ । ରଚନା
ଚରୁ ମର- । ମରେ ବାଜେ । ଚରଣର । ଛନ୍ଦ
ଭାସି ଆସେ । କୁନ୍ତଳ- । ଗନ୍ଧ

ଅନ୍ନଦା (ପଦ୍ମମହଲ)

( ୫+୩ )

ବସନ୍ତର । ଚମ୍ପାସମ ।
ତରୁଣୀ ଯେବେ । ଫୁଟିଲି
ସୌରଭର । ସୁଖ ତାହାର ।
ହର୍ ବହିବେ । ଲୁଟିଲି ।

(ପ୍ରଣୟୀ)

( ୩+୪ )

ସୁନ୍ଦର । ନୀଳାକାଶ । ବାଦଲ । ରଖେ ଆଜ । ଘୋଡ଼ାଇ
ମେଘର । ଶତ ଫାଟିଙ୍କ । ଅରୁଣ । ଥରେ ଯାଏ । ଅନାଇ
ଏସନେ । ତା ନୟନ
ପରଶି । ଯାଏ ମନ
ପାଦପ । ଲତା ଯଥା । ସମୀରେ
ଚରଣ । ଥରିଉଠେ । ଅଧୀରେ ।

(ରୂପକଥା)

ଏହିପରି ଏହି କବିମାନେ ରବୀନ୍ଦ୍ରନାଥଙ୍କ ପ୍ରବର୍ତ୍ତିତ ସମ (୨+୨), ଅସମ (୩+୩) ଓ ବିଷମ (୨+୩) ମାତ୍ରା-ଚଳନର ଛନ୍ଦସବୁ ଓଡ଼ିଆ ସାହିତ୍ୟରେ ମଧ୍ୟ ଅନୁପ୍ରବିଷ୍ଟ କରି-ଯାଇଅଛନ୍ତି । କାଳନ୍ଦୀଚରଣଙ୍କ 'ପୁଷ୍ପ ମନ୍ଦିର' କବିତାରେ, ବଙ୍ଗ-କବି ସତ୍ୟେନ୍ଦ୍ରନାଥଙ୍କ 'ବୈଶାଖ' କବିତାରେ ନିୟୋଜିତ ଛନ୍ଦର ବ୍ୟବହାର ସ୍ପଷ୍ଟ । ଏହାଛଡ଼ା ସବୁଜ କବିମାନଙ୍କ ରଚନାବଳୀରେ ଅମିତ୍ରାକ୍ଷର, ଅକ୍ଷରବୃତ୍ତ, ମାତ୍ରାବୃତ୍ତ, ମୁକ୍ତ ଛନ୍ଦ, ବଙ୍ଗଳା ଓ ଇଂରାଜୀ ଛନ୍ଦର ଅନୁସରଣ ପରିଲକ୍ଷିତ ହୁଏ ।

## ଉପସଂହାର—

ଅବଶେଷରେ ଏ ଯୁଗର ବାସ୍ତବ ପରିସ୍ଥିତି, ଯୁଦ୍ଧ, ସାମାଜିକ ବୈଷମ୍ୟ, ରାଷ୍ଟ୍ରବିପ୍ଳବ, ଦୈନ୍ୟ, ଦୁର୍ଭିକ୍ଷ, ସ୍ୱାଧୀନତା-ଆନ୍ଦୋଳନ ଏହି କବି ମାନଙ୍କ ଚେତନାକୁ ଦୀର୍ଘକାଳ ସ୍ୱପ୍ନପ୍ରବଣ ରଖି ପାରିନାହିଁ । ରୋମାଣ୍ଟିକ କବିମାନଙ୍କର ବ୍ୟକ୍ତିଗତ ବୈଶିଷ୍ଟ୍ୟ, ରୁଚି, ଅନୁଭବ, ଆତ୍ମ-ସଚେତନତା ସମସ୍ତ ହଜି ଯାଇଛି ସମାଜ ସଚେ-ତନତା ଭିତରେ । ସବୁଜ ସାହିତ୍ୟକମାନଙ୍କ ମଧ୍ୟରୁ ଅନେକଙ୍କର

ଦୃଷ୍ଟିଭଙ୍ଗୀ ପରିବର୍ତ୍ତିତ ହୋଇଯାଇଛି । ଫଳରେ ଆଜକାଲିର ଓଡ଼ିଆ ସାହିତ୍ୟର ଅତ୍ୟାଧୁନିକ କବିତାରେ ଏକ ଅଭିନବ ଦୃଷ୍ଟିଭଙ୍ଗୀ ଓ ଛନ୍ଦ କ୍ରମଶଃ ସ୍ପଷ୍ଟତର ହୋଇ ଉଠୁଛି । ମାତ୍ର ଏହା ଏପର୍ଯ୍ୟନ୍ତ ସୁପ୍ରତିଷ୍ଠିତ ହୋଇପାରି ନାହିଁ ।

ଓଡ଼ିଆ ଗଳ୍ପ, ଉପନ୍ୟାସ ଓ ନାଟକ କ୍ଷେତ୍ରରେ ମଧ୍ୟ ରୋମାଣ୍ଟିକ୍ ଭାବଧାରାର ପ୍ରଭାବ ଅନସ୍ୱୀକାର୍ଯ୍ୟ । ପରନ୍ତୁ, ବାସ୍ତବବାଦୀ ଦୃଷ୍ଟିକୋଣରୁ ସମାଜର ସତ୍ୟସ୍ୱରୂପକୁ କଥାସାହିତ୍ୟ ବା ନାଟକାଦିରେ ପ୍ରକଟିତ କରିବାରେ ଖୁବ୍ କମ ଓଡ଼ିଆ ସାହିତ୍ୟିକ ସଫଳକାମ ହୋଇଛନ୍ତି । ଅଧିକାଂଶ କଥା ସାହିତ୍ୟିକ ଓ ନାଟ୍ୟକାରଙ୍କ ରଚନାବଳୀରେ ପ୍ରଚୁର ଆବେଗୋଚ୍ଛ୍ୱାସ, ଅତିକଳ୍ପନା, ଅଲୌକିକତା ପରିଲକ୍ଷିତ ହୁଏ । ଅଶ୍ରୁତର କଥା ଓ କିମ୍ବଦନ୍ତୀ, ଆବେଗ ଜର୍ଜର ପ୍ରଣୟ-ପ୍ରଧାନ ବିଷୟକୁ ଉପଜୀବ୍ୟ କରି ଏବେ ମଧ୍ୟ ବହୁ ଗଳ୍ପ-ଉପନ୍ୟାସ ଲିଖିତ ହେଉଅଛି । ମାତ୍ର କ୍ରମଶଃ ଗଳ୍ପ, ଉପନ୍ୟାସ, ନାଟକରେ ବାସ୍ତବ ଜୀବନର ଦୁଃଖ-ସୁଖ, ଆଶା-ଆକାଙ୍କ୍ଷା ଓ ସମସ୍ୟାର ଆଲେଖ୍ୟ ରୂପାୟିତ କରିବାର ପ୍ରଚେଷ୍ଟା ବ୍ୟାପକ ଓ ବଳିଷ୍ଠତର ହେଉଅଛି ।

ଏହା ମଧ୍ୟରେ ଊନବିଂଶ ଶତାବ୍ଦୀର ମଧ୍ୟଭାଗଠାରୁ ବିଂଶ ଶତାବ୍ଦୀର ମଧ୍ୟଭାଗ ମଧ୍ୟରେ ଇଂରାଜୀ ସାହିତ୍ୟରେ କେତେକ ଭାବଧାରା ଓ ପ୍ରକାଶଭଙ୍ଗୀ ବା ଆଙ୍ଗିକର ପରୀକ୍ଷା ହୋଇଗଲାଣି । ପାଶ୍ଚାତ୍ୟ ଜାତୀୟ ଜୀବନ କେତେ ଉତ୍ଥାନ-ପତନର ସମ୍ମୁଖୀନ ହେଲାଣି; ମାତ୍ର ଓଡ଼ିଆ ସାହିତ୍ୟ ଏବେ ସୁଦ୍ଧା ସେଇ ରୋମାଣ୍ଟିକ୍ ଭାବଧାରାରେ ହିଁ ଆବର୍ତ୍ତିତ ହେଉଛି କହିଲେ ଭୁଲ ହେବ ନାହିଁ । ଓଡ଼ିଆ ସାହିତ୍ୟରେ ସଚ୍ଚି ରାଉତରାୟ, ଗୋପୀନାଥ ମହାନ୍ତି,

ଅନନ୍ତ ପଟ୍ଟନାୟକ, ରାଧାମୋହନ ଗଡ଼ନାୟକ, ଗୋଦାବରୀଶ ମହାପାତ୍ର ଏବଂ ଅନ୍ୟାନ୍ୟ ଲେଖକଗଣ ଏହି ୧୫।୨୦ ବର୍ଷ ମଧ୍ୟରେ ଅତ୍ୟାଧୁନିକ ବାସ୍ତବବାଦୀ ସାହିତ୍ୟ ସୃଷ୍ଟିର ଉଦ୍ୟମ କରିଛନ୍ତି। ଫଳରେ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ନାନାବିଧ ପରୀକ୍ଷାର ସୂତ୍ରପାତ ହୋଇଛି। ଏମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ରୋମାଣ୍ଟିକ୍ ଭାବଧାରାରେ ପ୍ରତିପାଳିତ ଏବଂ ଗୋଟାଏ ପଥରୁ ଅନ୍ୟ ପଥରେ ଯାତ୍ରାରମ୍ଭ ଲାଗି ପ୍ରଥମ ପଦକ୍ଷେପ ମାତ୍ର କରିଅଛନ୍ତି।

———

# ଓଡ଼ିଆ ଜାତୀୟବାଦୀ କବିତା

ଊନବିଂଶ ଶତାବ୍ଦୀର ଶେଷବିଂଶଦଶକରୁ ଓଡ଼ିଆ ଜାତୀୟବାଦୀ କାବ୍ୟଧାରାର ସୂତ୍ରପାତ । ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ଏହି ଧାରାର ଏକ ନିରବଚ୍ଛିନ୍ନ ବ୍ୟାପ୍ତି ଦେଖିବାକୁ ମିଳିଥାଏ । ବିଗତ ଶତାବ୍ଦୀ ଓ ଚଳିତ ଶତାବ୍ଦୀର ପ୍ରାୟ ମଧ୍ୟଭାଗ ପର୍ଯ୍ୟନ୍ତ ଜାତୀୟ ଜୀବନର ନାନା ଚେତନା, ଭାବନା, ଆଶା, ଆକାଙ୍କ୍ଷା ଓ ପରିବର୍ତ୍ତନଶୀଳ ଭାବାବେଗ ଏହି ଜାତୀୟବାଦୀ-କବିତା ମୁକୁରରେ ପ୍ରତିବିମ୍ବିତ ହୋଇଅଛି ।

ଊନବିଂଶ ଶତକର ଶେଷ ଦୁଇଦଶକ ମଧ୍ୟରେ ଓଡ଼ିଶାବାସୀ ସ୍ୱଦେଶପ୍ରେମ ବିଷୟରେ ପ୍ରଥମେ ଅବହିତ ହୁଅନ୍ତି । କବି ରାଧାନାଥ ରାୟଙ୍କ କାବ୍ୟରେ ଆମେ ପ୍ରଥମେ ତାହାର ଶୁଭ ଆବାହନ ଦେଖି-ବାକୁ ପାଉ । ରାଧାନାଥ ପରାଧୀନ ଉତ୍କଳର ଦୁର୍ଦ୍ଦଶା ସମ୍ବନ୍ଧରେ ଗଭୀର ଦୁଃଖ ଅନୁଭବ କରିଛନ୍ତି । ଜାତୀୟ ଭାବରେ ତାଙ୍କର ହୃଦୟ ପୂର୍ଣ୍ଣ ହୋଇଉଠିଛି । ସେ ସ୍ୱଦେଶକୁ ଚିହ୍ନିଛନ୍ତି; ଓଡ଼ିଶାର ନଦନଦୀ, ବନ, ପର୍ବତ, ହ୍ରଦ, ମନ୍ଦିର ପ୍ରତ୍ୟେକ ଯେ ସୁନ୍ଦର ତାହାକୁ ସେ ଆମ ଆଗେ ପ୍ରତିପାଦିତ ଓ ଉପସ୍ଥାପିତ କରିଛନ୍ତି । ଓଡ଼ିଶା ରାଜାଙ୍କର ଗୌରବାବହ ଘଟଣାକୁ ସେ ଚିତ୍ର କରିଛନ୍ତି । ଓଡ଼ିଶାର ଇତିହାସ, ଭୂଗୋଳକୁ ନେଇ ତାଙ୍କ କାବ୍ୟ-କବିତା ଓଡ଼ିଶାକୁ ନୂତନ ରୂପରେ ଚିହ୍ନାଇ ଦେଇଛି । ଓଡ଼ିଶାର ପ୍ରକୃତି ଯେ ଭାରତବର୍ଷର ବିଭିନ୍ନ ପ୍ରାନ୍ତର ପ୍ରକୃତିଠାରୁ ନିକୃଷ୍ଟ ନୁହେଁ,

ବରଂ ଉତ୍କୃଷ୍ଟ, ସେ ତାହାହିଁ ଚିଲିକାରେ (ପ୍ରଥମ ପ୍ରକାଶ ୧୮୯୧) ପ୍ରତିପାଦିତ କରିଛନ୍ତି । ସେଥିପାଇଁ ତାଙ୍କର ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ମହାଯାତ୍ରା ପ୍ରାୟ ପ୍ରତ୍ୟେକ କାବ୍ୟରେ ଉତ୍କଳୀୟ ନିସର୍ଗ-ଶୋଭା ବର୍ଣ୍ଣିତ । ମାତ୍ର ଚିଲିକା ଓ ଦରବାର କାବ୍ୟରେ କବି ଅଧଃପତିତ ଓଡ଼ିଶାର ଦୁର୍ଦ୍ଦଶା ଦେଖି 'ଖ୍ୟାତି-ଗନ୍ଧେ ଗାଢ଼' ପଡ଼ି ନଥିବା ଉପଲବ୍ଧି କରିପାରିଛନ୍ତି । ତେଣୁ ଖେଦୋକ୍ତି ପ୍ରକାଶ କରି ସେ ଲେଖିଛନ୍ତି—

ଏହି ଶିଳାବନ୍ଧ ଯାଙ୍କର କୀରତି
ପୁଣ୍ୟ ଶ୍ଲୋକ ମରକତ ମହୀପତି
ଦେଖି ନାହାନ୍ତି କି ମନେ ବସି ଲାଜ
କି ଥିଲି ଏ ରାଜ୍ୟ କି ହୋଇଛୁ ଆଜ ।

ମୋଟ ଉପରେ 'ଏହି କି ଥିଲି ଏ ରାଜ୍ୟ କି ହୋଇଛୁ ଆଜ'ହିଁ ହୋଇଛି ରାଧାନାଥଙ୍କର ପ୍ରଧାନ ବକ୍ତବ୍ୟ । ସେ କେବଳ ନୈରାଶ୍ୟର ହାହାକାର କରିଛନ୍ତି—ଜାତିକୁ ଏକତା ପ୍ରତିଷ୍ଠାଲାଗି ଆହ୍ୱାନ ଜଣାଇଛନ୍ତି—ଦେଶରେ ସ୍ୱାଧୀନତାର ସୁଫଳ ଓ ମହିମା ଅର୍ଜ୍ଜୁନ ଓ ଶିବାଜୀଙ୍କ ମୁଖରେ ପ୍ରଚାର କରି ଦେଶବାସୀଙ୍କ ଦୃଷ୍ଟି ତାହାପ୍ରତି ଆକର୍ଷଣ କରିଛନ୍ତି—

'ଏହି କି ସେ ଆର୍ଯ୍ୟଭୂମି ଏ ଭୂମିର ସୁତ
ଭୁବନେ ଥିଲେ କି ଆର୍ଯ୍ୟ ନାମ ବିଖ୍ୟାତ ଜଗତେ'

ଅଥବା

'ଏ ଭାରତ ଭୂମି ଆମ୍ଭର ଜନନୀ
ପୁଣ୍ୟଭୂମି ନାହିଁ ସର ଏହାର ।'

ଇତ୍ୟାଦି ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲେଖ କରାଯାଇପାରେ ।

ରାଧାନାଥଙ୍କ ପୂର୍ବରୁ ସ୍ୱଦେଶକୁ ଏପରି ସ୍ୱତନ୍ତ୍ର ଭାବେ ବର୍ଣ୍ଣନା କରାଯାଇଥିବାର ନିଦର୍ଶନ ପରିଦୃଷ୍ଟ ହୁଏ ନାହିଁ କହିଲେ ଚଳେ । ଏହି ସ୍ୱଦେଶ ମହିମା ଓ ଏକତାର ମାହାତ୍ମ୍ୟ ପାଶ୍ଚାତ୍ୟ, ବିଶେଷତଃ ଇଂରେଜୀ ଶିକ୍ଷାର ଫଳମାତ୍ର । ମୋଟ ଉପରେ ରାଧାନାଥହିଁ ପ୍ରଥମେ ଆଞ୍ଚଳିକ ତଥା ସର୍ବଭାରତୀୟ ଦେଶ ପ୍ରେମର ବାଣୀ ଉଚ୍ଚାରଣ କରିଯାଇ ଅଛନ୍ତି ।

ଏହାପରେ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠା ପର୍ଯ୍ୟନ୍ତ ରାଧାନାଥଙ୍କ ବାଣୀର ପ୍ରତିଧ୍ୱନିହିଁ ଆମେ ଅନ୍ୟାନ୍ୟ ସମସାମୟିକ କବିମାନଙ୍କ ରଚନାବଳୀରେ ଦେଖିବାକୁ ପାଇ-ଥାଉଁ । ବହୁବର୍ଷର ପରାଧୀନତାଜନିତ ଆତ୍ମବିସ୍ମୃତି ପରେ ଉତ୍କଳର ଏହି ନବଜାଗରଣ ଯୁଗରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ସୁଧୀଙ୍କର ପ୍ରୀତି ମଧ୍ୟ ଭାରତୀୟ ଆଦର୍ଶଭାବେ ପରିଗଣିତ ହୋଇ ଅଛି । ଏଣୁ ମଧୁସୂଦନ ସେତେବେଳେ ଲେଖିଥିଲେ—

'ମାତୃଭୂମି ମାତୃଭାଷା
ଉଭୟେ ଜନନୀ
ସେବି ତାଙ୍କୁ ଭକ୍ତିଭରେ
ଦିବସ ରଜନୀ
ଏ ମାନବ ଜନ୍ମ ହେଉ
ସଫଳ ମୋହର
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ
ପ୍ରଭୁ ମହେଶ୍ୱର;

ଗଙ୍ଗାଧର ମେହେର ଲେଖିଥିଲେ—

‘ମାତୃଭୂମି ମାତୃଭାଷାରେ ମମତା
ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ।’

ଊନବିଂଶ ଶତକର ଶେଷ ଦଶକର ଜାତୀୟତାବାଦୀ କବିଭାବରେ ଗୋବିନ୍ଦ ରଥଙ୍କ ନାମ ଉଲ୍ଲେଖଯୋଗ୍ୟ । ସମ୍ଭବତଃ ରାଧାନାଥ ଓ ମଧୁସୂଦନ ରାଜକର୍ମଚାରୀ ଥିବାରୁ ତତ୍କାଳୀନ ରାଜନୈତିକ ଓ ବାସ୍ତବ ସମସ୍ୟାକୁ ଦୃଢ଼ଭାବେ ବର୍ଣ୍ଣନା କରିବାକୁ ସାହସୀ ହୋଇ ପାରି ନାହାନ୍ତି । ମାତ୍ର କବିଙ୍କ ସ୍ୱାଧୀନଚେତା ଗୋବିନ୍ଦ କୁଣ୍ଠାହୀନ ଓ ସ୍ପଷ୍ଟଭାବରେ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା, ଅଭାବ-ଅଭିଯୋଗ ବର୍ଣ୍ଣନା କରିଯାଇଅଛନ୍ତି । ତତ୍କାଳୀନ ଲାଟ ଟେମ୍ପଲଙ୍କ ଉତ୍କଳ ଆଗମନ ଉପଲକ୍ଷେ ରଚିତ ‘ଲାଟଦର୍ଶନ’ କବିତାରେ ପ୍ରଜାଙ୍କ ପ୍ରାର୍ଥନା ଛଳରେ କହିଛନ୍ତି—

‘ଭିନ୍ନଭିନ୍ନ ଶାସନରେ ଏ ଉତ୍କଳ
ପଡ଼ିନ୍ତେ ଉନ୍ନତ ନ ହୁଏ ଚଞ୍ଚଳ,
ନାନା ଭେଦାଭେଦ ବଢ଼ୁଛି ପ୍ରବଳ
ଦେଶ ରୀତି ନୀତି ରାଜବିଧିରେ,
ଗଞ୍ଜାମ ସମ୍ବଲପୁରର ଯେସନ
କଟକ ସଙ୍ଗରେ ହୋଇବ ମିଳନ
କରିବ ହେ ଲାଟ ତହିଁର ଯତନ,
ଅକ୍ଷୟ କୀରତି ହେବ ମହୀରେ । (୧୫ଶ ପଦ)

୧୮୮୫ରେ ଲିଖିତ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ଲାଗି ଏହି ନିବେଦନ ତାହାଙ୍କ ଦେଶ ପ୍ରୀତିର ଉଜ୍ଜ୍ୱଳ ନିଦର୍ଶନ । ସେହିପରି ୧୮୮୩ ମସିହାରେ ଅନୁଷ୍ଠିତ କଲିକତାର ଏକ୍‌ଜିବିସନ୍ ବା 'ମହାମେଳା ଦର୍ଶନ' କବିତାରେ କବିଙ୍କର ବୈପ୍ଳବିକ ଭାବନା ଅଭିବ୍ୟକ୍ତ ଲାଭ କରିଅଛି । ସ୍ୱଦେଶୀ ଶିଳ୍ପର ଅନାଦର, ସ୍ୱଦେଶୀୟ ବେଶଭୂଷା, ରୀତିନୀତି ପ୍ରତି ଉପେକ୍ଷା ମଧ୍ୟ କବିଙ୍କୁ ବିବ୍ରତ କରିଛି । ଏଣୁ ବିପ୍ଳବୀ ଗୋବିନ୍ଦ ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତିତ ଖଦୀଆନ୍ଦୋଳନର ବହୁ ପୂର୍ବରୁ ଯେପରି ବିଦେଶୀ ଦ୍ରବ୍ୟ ଓ ପୋଷାକ ପରିବର୍ଜ୍ଜନ କରିବାକୁ ପରାମର୍ଶ ଦେଇ ଦୂରଦୃଷ୍ଟି ଓ ନିର୍ଭୀକ, ସ୍ୱାଧୀନ ଚେତାର ପରିଚୟ ଦେଇଯାଇ ଅଛନ୍ତି ତାହା ପ୍ରଣିଧାନଯୋଗ୍ୟ ।

'ବିନୟ ବଚନ ମୋହର
ଭାଇମାନେ ଶୁଣିବ
ବିଦେଶୀ ପୋଷକେ କିପାଇଁ
ନିଜ ଅଙ୍ଗ ସାଜିବ ?
ପୁତ୍ର କନ୍ୟାଗଣେ ଦେଉଛ
ବିଦେଶୀୟ ଭୂଷଣ ?

× × ×

ଛାଡ଼ି ଏହି ପ୍ରଥା କେମନ୍ତ
ନେହ ଅପ୍ରୀତିକର
ଭାରତ ସନ୍ତାନେ କରନ୍ତୁ
ବେଗେ ଏଥି ଶତ୍ରୁର ।'

( ମହାମେଳା ଦର୍ଶନ ପୃ ୭ )

ଊନବିଂଶ ଶତକର ଶେଷଦଶକରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଏକଶାସନାଧୀନ କରିବାପାଇଁ ଓଡ଼ିଶାରେ ଆଲୋଚନା, ଆବେଦନ ଓ ନିବେଦନର ସୂତ୍ରପାତ ହୋଇଥିଲା । ତାପରେ ୧୯୦୧ ମସିହାରେ ଗଞ୍ଜାମ ଜାତୀୟ ସମିତି ସ୍ଥାପିତ ଏବଂ ପରେ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ଓ ଦେଶମିଶ୍ରଣ ଆନ୍ଦୋଳନ ଉତ୍କଳବ୍ୟାପୀ ପ୍ରସାର ଲାଭ କରିଥିଲା । ଏହାହିଁ ହେଲା ଜାତୀୟତାବାଦୀ କବିତା ରଚନାର ନୂତନ ପ୍ରେରଣା ଓ ଏହି ସମୟରୁହିଁ ଜାତୀୟତାବାଦୀ କବିତାର ଏକ ବଳିଷ୍ଠ ପରମ୍ପରା ପରିଦୃଷ୍ଟ ହୁଏ ।

ଏହି ସମୟର ପ୍ରାୟ ସମସ୍ତ କବିଙ୍କ ରଚନାରେ ଜାତୀୟତା ଅଭିବ୍ୟକ୍ତି ଲାଭ କରିଛି । ବିଶେଷତଃ ଫକୀରମୋହନ, ମଧୁସୂଦନ, ଗୋପବନ୍ଧୁ, ନନ୍ଦକିଶୋର, ରାମଶଙ୍କର ରାୟ, ପଦ୍ମଚରଣ, ଚନ୍ଦ୍ରମୋହନ, ବ୍ରଜସୁନ୍ଦର ଦାସ, ଶଶୀଭୂଷଣ, ମୃତ୍ୟୁଞ୍ଜୟ ରଥ ପ୍ରଭୃତିଙ୍କ ରଚନାରେ ତାହା ଦେଖିବାକୁ ମିଳିଥାଏ । ଉକ୍ତ କବିମାନଙ୍କର କବିତାରେ (୧) ଉତ୍କଳର ମାତୃରୂପରେ ବର୍ଣ୍ଣନା, (୨) ଉତ୍କଳର ଅତୀତ ଗୌରବ, (୩) ଭାରତ ଜନନୀର ବନ୍ଦନା, (୪) ଦେଶ ସେବା ଲାଗି ଆତ୍ମୋତ୍ସର୍ଗ ଓ ତ୍ୟାଗବରଣର ଗୌରବ, (୫) ମାତୃଭାଷାର ସେବା, (୬) ଉତ୍କଳବ୍ୟାପୀ ଏକତା ଓ ଭ୍ରାତୃଭାବର ଜାଗରଣ ଇତ୍ୟାଦି ଭାବଧାରାର ସନ୍ଧାନ ମିଳେ । ଉତ୍କଳର ପ୍ରାୟ ସମସ୍ତ କବି ସେ ସମୟରେ ଉତ୍କଳ ସମ୍ମିଳନୀ ବାର୍ତ୍ତାରେ ଉଦ୍‌ବୁଦ୍ଧ ହୋଇଥିଲେ । ଦେଶମିଶ୍ରଣ ଲାଗି ଯତ୍ନଶୀଳ ହେବାକୁ ଦେଶବାସୀଙ୍କୁ ସେମାନେ ଆହ୍ୱାନ କରିଛନ୍ତି । ଉତ୍କଳର ସୁଦିନ ଫେରାଇ ଆଣିବା ଲାଗି ଉତ୍କଳୀୟମାନଙ୍କୁ ଏକତାବଦ୍ଧ ହେବାକୁ ଓ ଉଜ୍ଜୀବିତ ହେବାକୁ ଆହ୍ୱାନ କରିଛନ୍ତି । ଓଡ଼ିଶାର ରାଜନୈତିକ ଆନ୍ଦୋଳନକୁ ଏହିସବୁ କବିମାନଙ୍କ ବାଣୀ ଯେ ଯଥେଷ୍ଟ ପ୍ରେରଣା ଯୋଗାଇଛି, କହିବା ବାହୁଲ୍ୟ ମାତ୍ର ।

ଏହାପରେ 'ବନ୍ଦେ ମାତରଂ' ଆନ୍ଦୋଳନର ପ୍ରଭାବ ମଧ୍ୟ ଓଡ଼ିଶାର କବିଚିତ୍ତକୁ ପ୍ରଭାବିତ କରିଥିଲା । ସମାଜର କୁସଂସ୍କାର-ଦୂରୀକରଣ ଲାଗି ମଧ୍ୟ କବିଗଣ ଦେଶବାସୀଙ୍କୁ ଆହ୍ୱାନ ଜଣାଇ-ଥିଲେ । ସାମନ୍ତ ଶ୍ୟାମବନ୍ଧୁ ଦାସଙ୍କ ବିରଚିତ ଓ ଉତ୍କଳ ସେବାଶ୍ରମ ପକ୍ଷରୁ ୧୯୦୮ରେ ପ୍ରକାଶିତ 'ଜାତିପୂ ଚମ୍ପୂ, ପୁସ୍ତକରୁ ତାହାହିଁ ପ୍ରତିପନ୍ନ ହୁଏ ।

"ବନ୍ଧୁବର ହେ !
ବନ୍ଧ ବାନ୍ଧ ବଳ ଥାଉ ଥାଉ ଏ ଦେହର ।
"ବଂନ୍ଦେ ମାତରଂ କହି ସେ ମନ୍ତ୍ର
ବଳେ ବ୍ୟକ୍ତିଗତ ହୃଦଯନ୍ତ୍ର ବୀଣାପାଣୀଙ୍କର ବୀଣାତନ୍ତ୍ର
ବିଧାନରେ କରୁଥାଉ ଗତି ବାରମ୍ବାର ।"

ଉତ୍କଳ ସମ୍ମିଳନୀ ଉପଲକ୍ଷେ ରଚିତ କେତେଗୋଟି କବିତା ଆଜି ମଧ୍ୟ ତାହାର ରଚନାଗତ ଉତ୍କର୍ଷ, ଭାଷା ଓ ଭାବାଭି-ବ୍ୟକ୍ତିର ଚମତ୍କାରିତା ଯୋଗୁଁ ଅବିସ୍ମୃତ ହୋଇରହିଛି । ଏହି ସମ୍ମିଳନୀ ଉପଲକ୍ଷେହିଁ କବିବର ରାଧାନାଥ ତାଙ୍କର ସୁପ୍ରସିଦ୍ଧ ସଂସ୍କୃତ କବିତା—"ସର୍ବେଷାଂ ନୋ ଜନନୀ ଭାରତ-ଧରଣୀ କଳ୍ପ-ଲତେୟମ୍, ଜନନୀବତ୍ସଳ ତନୟଗଣେ ପ୍ରତି ସମ୍ୟକ ଶର୍ମ-ବିଧେୟମ୍' ରଚନା କରିଥିଲେ । ଏହା ବହୁ ବର୍ଷବ୍ୟାପି ଉତ୍କଳ ସମ୍ମିଳନୀର ପ୍ରତ୍ୟେକ ଅଧିବେଶନରେ ଗୀତ ହେଉଥିଲା । ଏହା ଛଡ଼ା ଲକ୍ଷ୍ମୀକାନ୍ତଙ୍କର କବିତା 'ବନ୍ଦେ ଉତ୍କଳ ଜନନୀ' ଉତ୍କଳ ଗୌରବ ମଧୁସୂଦନଙ୍କର 'ମାଆ ମାଆ ବୋଲି କେତେ ମୁଁ ଖୋଜିଲି ମାଆକୁ ପାଇଲି ନାହିଁ' ଭିକାରୀଚରଣଙ୍କର—'ଯେ ଜାତିରେ ଜାତ ଯଯାତି ମର୍କତ କପିଳେନ୍ଦ୍ର ନରବର,' ଗୋବିନ୍ଦଚନ୍ଦ୍ର

ସୁରଦେଓଙ୍କର—'ଯହିଁ ଦରେନ୍ଦ୍ରଦକୁ ଉଠି, ସୁଖେ ଖାଏ ଅନ୍ନମୁଠି,' 'ମାଆ ମାଆ ଏତେଦିନେ ପଡ଼ିଲୁ କି ମନେ' ବ୍ରଜସୁନ୍ଦରଙ୍କ—'ମାଆ ମାଆ ବୋଲି ଡାକୁଛ କି ମୋତେ ଆରେ ମୋ ଦୁଃଖପାଶୋରା' ଗୀତଗୁଡ଼ିକ ଏକଦା ଉତ୍କଳ ସମ୍ମିଳନୀ ମଣ୍ଡପକୁ ତଥା ଓଡ଼ିଆ ଜାତିର ହୃଦୟକୁ ସ୍ପନ୍ଦିତ କରୁଥିଲା ।

ଉତ୍କଳ ସମ୍ମିଳନୀ ୧୯୨୧ ପର୍ଯ୍ୟନ୍ତ ପ୍ରବଳ ଉତ୍ସାହ ଓ ଉନ୍ମାଦନାର ସହିତ କାର୍ଯ୍ୟ କରି ଉତ୍କଳ ଜାତୀୟ ଜୀବନକୁ ବିପୁଳଭାବେ ପ୍ରଭାବିତ କରିଥିଲା । ୧୯୨୧ ପର୍ଯ୍ୟନ୍ତ ଓଡ଼ିଶାର ଦେଶପ୍ରେମ ଏକ ପ୍ରକାର ଆଞ୍ଚଳିକ ଥିଲା—ତାହା ସଂଗ୍ରାମୀ ବା ଯୁଯୁତ୍ସୁ ମନୋବୃତ୍ତି ସମ୍ପନ୍ନ ନ ଥିଲା । କାରଣ ପୂର୍ବବର୍ତ୍ତୀ କବି ବା ରାଜନୈତିକ ନେତୃବୃନ୍ଦ କେହି ଇଂରାଜୀ ଶାସନର ପ୍ରତ୍ୟକ୍ଷ ବିରୋଧୀ ନ ଥିଲେ । ଅବଶ୍ୟ ଇଂରାଜ ସଭ୍ୟତା, ରୀତି-ନୀତି ଓ ସଂସ୍କୃତିବିରୋଧୀ ମନୋଭାବ ଫକୀରମୋହନ ଓ ଗୋବିନ୍ଦ ରଥଙ୍କଠାରେ ଆମେ କିଞ୍ଚିତ୍ ଦେଖିବାକୁ ପାଇଥିଲେହେଁ ତାହା ଇଂରେଜୀ ଶାସନର ପ୍ରତ୍ୟକ୍ଷ ବିରୋଧିତା ଉପରେ ପ୍ରତିଷ୍ଠିତ ନୁହେଁ ।

ମହାଭାରତୀୟ ରାଜନୀତିକ୍ଷେତ୍ରରେ ଇଂରେଜ ରାଷ୍ଟ୍ରଶକ୍ତି ସହିତ ସଂଘର୍ଷର ସୂତ୍ରପାତ ହେବାପରେ ଓଡ଼ିଶାର କବିବୃନ୍ଦ ତାହାର ବାର୍ତ୍ତାବହ ହୋଇଛନ୍ତି । ପରବର୍ତ୍ତୀ କାଳରେ ଭାଷାସୂତ୍ରରେ ପ୍ରଦେଶ ଗଠନ ଓ ଭାରତର ସ୍ୱାଧୀନତାଲାଭ ମଧ୍ୟରୁ କେଉଁଟି ଗୁରୁତ୍ୱପୂର୍ଣ୍ଣ ଏ ବିଷୟ ନେଇ ଉତ୍କଳର ନେତୃତ୍ୱ ଦ୍ୱିଧା ବିଭକ୍ତ ହୋଇଗଲା । 'ମହାଭାରତୀୟ ଜାତୀୟ ପ୍ରବାହେ ମିଶୁ ଉତ୍କଳ ପ୍ରବାହ'ହିଁ ହୋଇଥିଲା ଗୋପବନ୍ଧୁଙ୍କ ଆଦର୍ଶ । କୁଳବୃଦ୍ଧ ମଧୁସୂଦନ ଉତ୍କଳ ସମ୍ମିଳନୀର କାର୍ଯ୍ୟକ୍ରମକୁ ୧୯୩୪ ପର୍ଯ୍ୟନ୍ତ ବଞ୍ଚାଇ ରଖିଥିଲେ ହେଁ, ଓଡ଼ିଶାର ରାଜନୀତି କ୍ଷେତ୍ରରେ ଗୋପବନ୍ଧୁଙ୍କ

ନେତୃତ୍ୱ ସର୍ବଶେଷ ଜନସ୍ୱୀକୃତି ଲାଭ କରିଥିଲା । ୧୯୩୬ ଏପ୍ରିଲ ପହିଲାରୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଘୋଷିତ ହେଲା । ଓଡ଼ିଶାବାସୀଙ୍କ ବହୁ ଦିନର ଆକାଙ୍‌କ୍ଷା ଏହାଦ୍ୱାରା କେତେକପରିମାଣରେ ସାର୍ଥକ ହେଲା ସତ୍ୟ, ମାତ୍ର ସ୍ୱାଧୀନତା ପ୍ରାପ୍ତି ଲକ୍ଷ୍ୟ ତଥାପି ସାଧିତ ହୋଇ ନଥାଏ । ପୂର୍ବପରି ଏହି ଭାରତୀୟ ଲକ୍ଷ୍ୟ ସାଧନରେ ଓଡ଼ିଶାର ରାଜନୈତିକ କର୍ମୀମାନଙ୍କଭଳି କବିବୃନ୍ଦ ମଧ୍ୟ ମୁକ୍ତି ଆନ୍ଦୋଳନକୁ ସାହାଯ୍ୟ କରିଥିଲେ ।

୧୯୨୧ରେ ଅସହଯୋଗ ଆନ୍ଦୋଳନଠାରୁ ଜାତୀୟ ସଙ୍ଗୀତର ବ୍ୟାପକ ବ୍ୟବହାର ପରିଲକ୍ଷିତ ହେଲା । ବହୁ କବି 'ସ୍ୱାଧୀନତା ଭାରତର ଜନ୍ମ ଅଧିକାର' ଏହି ମନ୍ତ୍ରରେ ଉଜ୍ଜୀବିତ ହୋଇ ବହୁ କବିତା ରଚନା କରିଛନ୍ତି । ସେମାନଙ୍କ ମଧ୍ୟରେ ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର, କୁନ୍ତଳାକୁମାରୀ, କୃଷ୍ଣପ୍ରସାଦ ବସୁ, ବାଞ୍ଛାନିଧି ମହାନ୍ତି, ଦ୍ୱାରକାଶୋର ଦାସ, କୃଷ୍ଣମୋହନ ପଟ୍ଟନାୟକ, ଗୋବିନ୍ଦଚନ୍ଦ୍ର ସୂରଦେଓ, ଗୋଦାବରୀଶ ମହାପାତ୍ର ପ୍ରଭୃତିଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ପଟୁଆର, ମାର୍ଚ୍ଚିଂ, ପ୍ରଭାତଫେରି, ପତାକା ବନ୍ଦନା, ବେଳେ ଏହିସବୁ ସଙ୍ଗୀତ କର୍ମୀ, ସେବକ ଓ ଜନତା ହୃଦୟରେ ପ୍ରବଳ ଉତ୍ତେଜନା ଆଣିଥିଲା ।

'ଗାଅ ସ୍ୱାଧୀନ ଭାରତ
ସ୍ୱାଧୀନ ଭାରତ
ସ୍ୱାଧୀନ, ସ୍ୱାଧୀନ, ସ୍ୱାଧୀନରେ ।
ଗାଏ ସାଗର ଭୂ-ଧର
ଅମ୍ବର ଚୁମ୍ବିତ,

ଘନ ହିମାଚଳ
ଗିରିବର କମ୍ପିତ
କମ୍ପେ ବିନ୍ଧ୍ୟଗିରି
କାନନ କୁଞ୍ଜ,
କମ୍ପେ ନିର୍ଝରିଣୀ
ପ୍ରପାତ ପୁଞ୍ଜ,
ଚପଳା ଚମକେ
ଗଗନେ ପୁଲକେ
ନୀରଦ ବନ୍ଦନରେ ।୧।

× × ×

ଜାତୀୟ କେତନ
ଉଡ଼ଇ କି ଗର୍ବ,
ଅରିକୁଳ ଦର୍ପ
କରିବ କି ଖର୍ବ
(ସେତ) ଜାତୀୟ ଗୌରବ
ଜାତୀୟ ସମ୍ପଦ
ଜାତୀୟ ଜୀବନରେ ।୪।

ବାଞ୍ଛାନିଧିଙ୍କ ରଚିତ ଏହି ପତାକାର ଗୀତଟି ଅତ୍ୟନ୍ତ ଜନପ୍ରିୟ । ସହସ୍ର ସହସ୍ର ଜନତା ଏହି ଗୀତ ଗାଇ ଦିନେ ଓଡ଼ିଶାର ଗଗନ ପବନକୁ ମୁଖରିତ କରିଥିଲେ; ବିଦେଶୀ ଶାସକର ବହୁ ନିର୍ମମ ନିର୍ଯାତନା ସହ୍ୟ କରିଥିଲେ । ଜାତୀୟ କେତନର ଗୌରବ ରକ୍ଷା ଲାଗି ଜୀବନ ପଣକରି ଲଢ଼ିଥିଲେ ।

ବିଦ୍ରୋହୀ ଜନତା ମାର୍ଚ୍ଚିଂ କଲାବେଳେ ମଧ୍ୟ ବହୁ କବିଙ୍କ ରଚିତ ଉତ୍ତେଜନାପୂର୍ଣ୍ଣ ସଙ୍ଗୀତ ଗାଉଥିଲେ । ସେମାନଙ୍କ ମଧ୍ୟରୁ ଗୋବିନ୍ଦଚନ୍ଦ୍ର ସୂରଦେଓଙ୍କ ଜନପ୍ରିୟ ଗୀତ ହେଉଚି—

ଅଙ୍ଗେ ଅଙ୍ଗେ ବହ ନବ ତେଜ
ସଙ୍ଗେ ସଙ୍ଗେ ମୋହ ମନୁ ତେଜ;
ଅମ୍ବର ଚୁମ୍ବିତ କଣ୍ଠେ ଗାଅ
ଜନନୀର ଜୟ ଜୟ ସଙ୍ଗୀତ ।

ଏହା ଛଡ଼ା ପଣ୍ଡିତ ଗୋଦାବରୀଶଙ୍କ 'ରଞ୍ଜିତ ଅସିଧାରେ, ଶତ୍ରୁ ରକ୍ତ ଗାତରେ, ଲେଖିଦେ ଆଜ ବିଜୟ ବିଭବ ଜନ୍ମଭୂମି ସ୍ଥଳେ' କମ୍ବା ଲକ୍ଷ୍ମୀକାନ୍ତଙ୍କର—

'ଗର୍ଜି ଉଠୁଛି ତୂର୍ଯ୍ୟ ନାଦ
ଉଡ଼ୁଚି ବିଜୟ କେତୁ,
ଆର୍ଯ୍ୟ ବାହିନୀ ଆସୁଛି ଫେରି
ବର୍ଜି ସମର କ୍ଷେତ୍ର;

ପ୍ରଭୃତି କବିତା ଉଲ୍ଲେଖଯୋଗ୍ୟ ।

ଇଂରେଜ ଶାସନ ପ୍ରତି ତୀବ୍ର ବିରୋଧ ଓ ବିଦ୍ୱେଷ ଏହିସବୁ କବିତାରେ ସୁସ୍ପଷ୍ଟ । ଅତୀତର ମୋହ ଭାଙ୍ଗିଯାଇଛି । ଯେଉଁ ଇଂରେଜ ଶାସନ ପ୍ରଶସ୍ତି ଊନବିଂଶ ଶତାବ୍ଦୀର ରଚନାରେ ପରିଲକ୍ଷିତ ହେଉଥିଲା, ଏହି ଭ୍ରାନ୍ତି ଅପସାରଣ ଯୁଗରେ ତାହାର ଅସାରତା ଉପଲବ୍ଧ ହୋଇଛି । ତେଣୁ ବାଞ୍ଛାନିଧିଙ୍କର ଏକ ଉଦ୍‌ବୋଧନାତ୍ମକ କବିତାରେ ପୁଚ୍ଛିଛି—

'କିଏ ଜାଣିଥିଲା ଏତେ କୁତ୍ସିତ
ଅଛି ଏ ବିଦେଶୀ ଶାସନେ,

ଜାଣିଥିଲେ କେବେ ବସାଇ ଥାନ୍ତୁ କି
ଆପେ ତାଙ୍କ ରାଜ ଆସନେ ।'

ହିନ୍ଦୁ ମୁସଲମାନ ସମସ୍ତେ ଭେଦଭାବ ଭୁଲି ସ୍ୱାଧୀନତା ସମରରେ ଆଗେଇ ଆସିଛନ୍ତି । ଗୋଟିଏ ଲକ୍ଷ୍ୟ ସ୍ୱାଧୀନତା । ସେଥିପାଇଁ ସବୁ କଷ୍ଟ ବରଣ କରିବାକୁ ଓଡ଼ିଶାର କବି କେବଳ ସ୍ୱପ୍ନ ଦେଖି ନାହାନ୍ତି, କବି ବୀରକିଶୋରଙ୍କୁ ଜାତୀୟ ସଙ୍ଗୀତ ରଚନା କରିଥିବା ଯୋଗୁ ବହୁବାର କାରାକାରାବରଣ କରିବାକୁ ପଡ଼ିଛି । ତାଙ୍କର ବହୁ ପୁସ୍ତକ ପ୍ରକାଶ ପାଇ ନ ପାଇଣୁ ବାଜ୍ୟାପ୍ତ ହୋଇଛି । ତାଙ୍କୁ ଅର୍ଥ ଦଣ୍ଡରେ ଦଣ୍ଡିତ ହେବାକୁ ପଡ଼ିଛି । ନିଜେ ସୈନିକ ଭାବେ ସେ ଅହିଂସା ସଂଗ୍ରାମ ମଧ୍ୟ କରିଛନ୍ତି । ଏଣୁ ସେହି କବି କେବଳ ଗାଇଛନ୍ତି—

'କଣ୍ଟକ ପଥର କରି ସବୁ ଦୁଃଖ ସହିବି, ସହିବି,
ଲୋଡ଼ାନାହିଁ ମୋର ସରଗ
ଯିବିପଛେ ନରକ
ମୋ ଦେଶ ଉଦ୍ଧାର ଲାଗି
ଫାସୀ କାଠେ ଝୁଲିବି, ଝୁଲିବି ।'

କେବଳ ତରୁଣ ନୁହନ୍ତି, ବହୁ ତରୁଣୀ ମଧ୍ୟ ଦେଶ ମାତୃକାର ଆହ୍ୱାନରେ ଆବେଗ-ପ୍ରମତ୍ତ ହୋଇଛନ୍ତି; ବିପ୍ଳବ କବିତା ରଚନା କରିଛନ୍ତି । ସେମାନଙ୍କ ମଧ୍ୟରୁ କବି କୁନ୍ତଳାକୁମାରୀ ଅନ୍ୟତମ । ପ୍ରଭୂତ ଆଶାବାଦିନୀ ହୋଇ ସେ ଗାଇଛନ୍ତି—

ମିଶାଇ ଗିରି ନ ଘୋଷୁ ରସନା
ନ ବାଜୁ ତାହା ଏ ଜାତି ଶ୍ରବଣରେ
ଦେଢ଼ କୋଟି ପ୍ରାଣ ନବ ଜାଗରଣେ
ଦିଅ ଉଠିବାକୁ ନବ ବନ୍ଧମରେଁ ।

ଏହି ପରି ପ୍ରାକ୍ ସ୍ୱାଧୀନତାକାଳର ବହୁ କବିଙ୍କ ନାମୋଲ୍ଲେଖ କରିଯାଇପାରେ । ମାତ୍ର ଗୋପବନ୍ଧୁଙ୍କ ପରେ ଜାତୀୟ କବିତା ରଚନା କ୍ଷେତ୍ରରେ ସାରକିଶୋର ଅଗ୍ରଗଣ୍ୟ । ପ୍ରାକ୍ ସ୍ୱାଧୀନତା ତଥା ସ୍ୱାଧୀନତା ପରବର୍ତ୍ତୀ କାଳରେ କୁଞ୍ଜବିହାରୀ ଦାଶ,ରାଧାମୋହନ ଗଡ଼ନାୟକ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ବାଞ୍ଛାନିଧି ଦାସ ପ୍ରଭୃତି କେତେକ କବି ମଧ୍ୟ ଜାତୀୟ ଗୌରବ ସୂଚକ ବହୁ ଗାଥା-ଗୀତିକା (Ballad ଓ ଗୀତି-କବିତା ରଚନା କରି ଅଛନ୍ତି । ଦେଶ ମିଶ୍ରଣ ଆନ୍ଦୋଳନ ପରେ ଦେଶର ସ୍ୱାଧୀନତା ଲାଗି ଯେଉଁ ପ୍ରବଳ ଉନ୍ମାଦନା ଦେଖା ଦେଇଥିଲା, ତାହାର ଅବସାନ ହୋଇଯାଇଛି । ଏଣୁ ସ୍ୱାଧୀନତା ଲାଭପରେ,'ବୈଶ୍ୱି ଗରବ ଖର୍ବ'ହେଲାପରେ ଜାତୀୟବାଦୀ କବିତାର ପ୍ରୟୋଜନୀୟତା କମିଯାଇଛି । ଏତାଦୃଶ ଭାବନା ସମ୍ବଳିତ କବିତା ଆଉ ଏବେ ରଚିତ ହେଉନାହିଁ । ମାତ୍ର ଏହିସବୁ କବିତା ତାହାର ଐତିହାସିକ ମୂଲ୍ୟ, ଭାବ ଓ କଳାଗତ ଗୌରବ ଦୃଷ୍ଟିରୁ ଏ ଜାତିର ସାହିତ୍ୟ-ଇତିହାସରେ ନିଶ୍ଚୟ ସ୍ମରଣୀୟ ଓ ବରେଣୀୟ ହୋଇ ରହିବ ।

———

# ଆଧୁନିକ ଓଡ଼ିଆ ନାଟ୍ୟ-ସାହିତ୍ୟ *

ନାଟକ ଏକ 'ସମ୍ମିଶ୍ରିତ କଳା' ନାମରେ ଅଭିହିତ । ନାଟକର ସୃଷ୍ଟି ଓ ସଫଳତା ଲାଗି ବହୁ ବ୍ୟକ୍ତି, ବହୁ ଉପକରଣ, ବହୁ ବିଷୟ ଓ ଇନ୍ଦ୍ରିୟର ସହଯୋଗିତା ଅପରିହାର୍ଯ୍ୟ । କଥା, ସଂଳାପ, ରଙ୍ଗମଞ୍ଚ, ଦୃଶ୍ୟସଜ୍ଜା, ଅଭିନେତା-ଅଭିନେତ୍ରୀ, ପ୍ରଯୋଜକ ପ୍ରଭୃତିଙ୍କ ସୁସମାବେଶରେହିଁ ନାଟ୍ୟକଳାର ସୃଷ୍ଟି । ନାଟକର ପୂର୍ଣ୍ଣାଙ୍ଗ ଆଲୋଚନା ଲାଗି ଏଣୁ ପୂର୍ବୋକ୍ତ ବିଭବ-ମାନଙ୍କର ସମୀକ୍ଷା ଆବଶ୍ୟକ । ମାତ୍ର ଏଠାରେ କେବଳ ଓଡ଼ିଆ ନାଟ୍ୟ-ସାହିତ୍ୟ ସଂପର୍କରେ ହିଁ ସର୍ବସାମାନ୍ୟ ଆଲୋଚନା କରି ଯାଉଅଛି ।

ପ୍ରାୟ ୮୩ ବର୍ଷ ପୂର୍ବେ ଏ ଦେଶରେ ଏକ ନୂତନ ସ୍ରୋତରେ ନାଟ୍ୟ-ସାହିତ୍ୟ ରଚନାର ସୂତ୍ରପାତ ହୋଇଥିଲା । ଜଗନ୍ମୋହନଙ୍କ ରଚିତ 'ବାବାଜି' ନାଟକ ଓଡ଼ିଶାର ପ୍ରଥମ ନାଟକ । ଏହା ୧୮୭୭ ମସିହାରେ ମୁଦ୍ରିତ ହୋଇଥିଲା । ମୁଦ୍ରିତ ହେଲା ପରେ ଏହା ସଂପର୍କରେ 'ଉତ୍କଳଦୀପିକା'ରେ ପ୍ରଶଂସାପୂର୍ଣ୍ଣ ଅଭିମତ ପ୍ରକାଶ ପାଇ ନ ଥିଲେ ହେଁ 'ବାଲେଶ୍ୱର ସମ୍ବାଦ ବାହିକାରେ (ଡିସେମ୍ବର ୧ ତାରିଖ ୧୮୭୭) 'ବାବାଜି' ସଂପର୍କରେ ଅନୁକୂଳ ପ୍ରଶଂସା ପୂର୍ଣ୍ଣ ମନ୍ତବ୍ୟ ପ୍ରକାଶ ପାଇଥିଲା । 'ବାବାଜି' ରଚିତ ହେବା ଦଶ

---

* କଟକ 'ମୁକ୍ତ କଳା ମଣ୍ଡପ' ପକ୍ଷରୁ ଆୟୋଜିତ ନାଟକ ଆଲୋଚନା ଉପଲକ୍ଷେ ପଠିତ ଅଭିଭାଷଣ ।

ବର୍ଷ ପରେ ଜଗନ୍ମୋହନଙ୍କ ଦ୍ୱିତୀୟ ନାଟକ 'ସତୀ' ୧୮୮୭ ମସିହାରେ ମୁଦ୍ରିତ ହୋଇଥିଲା । ବସ୍ତୁତଃ ଆଧୁନିକ ଓଡ଼ିଆ ନାଟକ ଲେଖକ ମାନଙ୍କ ମଧ୍ୟରେ ଜଗନ୍ମୋହନଙ୍କ ନାମ ସର୍ବାଦୌ ସ୍ମରଣୀୟ । ବାବାଜି ନାଟକଟି ମଧ୍ୟ ସେ ସମୟରେ ଉଚ୍ଚ ପ୍ରଶଂସିତ ହୋଇଥିଲା । ଫେବ୍ରୁୟାରୀ ୧୩ ତାରିଖ 'ନବ ସମ୍ବାଦ'ରେ ସତୀ ନାଟକ ସଂପର୍କରେ ଏକ ସୁଚନ୍ତିତ ଅଭିମତ ପ୍ରକାଶ ପାଇଥିଲା—"ସତୀ ନାଟକ ଉତ୍କଳ ଭାଷାର ଖଣ୍ଡିଏ ଉତ୍କୃଷ୍ଟ ଗ୍ରନ୍ଥ ମଧ୍ୟରେ ପରିଗଣିତ ହେବାର ଯୋଗ୍ୟ । ଗର୍ଭଜାତ ଅତ୍ୟାଚାରର ଏପରି ଯଥାଯଥ ଚିତ୍ର ଆମ୍ଭେମାନେ ଆଜ ପର୍ଯ୍ୟନ୍ତ ଦେଖି ନ ଥିଲୁ ।" ଏହା ମଧ୍ୟ ଏକ ସାମାଜିକ ନାଟକ । ଜଗନ୍ମୋହନଙ୍କ ନାଟକର ମହତ୍ତ୍ୱକୁ ସ୍ୱୀକାରକରି ସୁସମାଲୋଚକ ବିଶ୍ୱନାଥକର ଯଥାର୍ଥତଃ ଲେଖିଥିଲେ—"ସାହିତ୍ୟ କ୍ଷେତ୍ରରେ ତାଙ୍କର କୃତିତ୍ୱ ନିତାନ୍ତ ସାମାନ୍ୟ ନୁହେଁ । ଉତ୍କଳର ନାଟ୍ୟ ସାହିତ୍ୟ ତାଙ୍କର ବାବାଜି ଓ ସତୀ ନାଟକ ଅପେକ୍ଷା ଯେ ଖୁବ୍ ବେଶୀ ଉପରକୁ ଉଠିଅଛି, ତାହା ମନେ ହେଉନାହିଁ ।"

୮. ଏହାଠାରୁ ମନ୍ତବ୍ୟରୁ ଜଗନ୍ମୋହନଙ୍କ ନାଟ୍ୟ ପ୍ରତିଭାର ମହତ୍ତ୍ୱ ଅନୁମେୟ । ଏଣୁ ଓଡ଼ିଆ ନାଟ୍ୟ-ସାହିତ୍ୟକୁ ତାଙ୍କର ସୁମହତ ଦାନ ବିସ୍ମୃତ ହେବାର ବିଷୟ ନୁହେଁ ।

ଜଗନ୍ମୋହନଙ୍କ ପରେ ଓଡ଼ିଆ ନାଟକ କ୍ଷେତ୍ରରେ ରାମଶଙ୍କର-ଙ୍କର ଆବିର୍ଭାବ । ରାମଶଙ୍କରଙ୍କ ପ୍ରଥମ ଐତିହାସିକ ନାଟକ କାଞ୍ଚି କାବେରୀ ୧୮୮୦ ମସିହାରେ ରଚିତ ହୋଇଥିଲା । ଏହାପରେ ସେ ବିଷମୋଦକ (୧୯୦୦) ଯୁଗଧର୍ମ (୧୯୦୨) କାଞ୍ଚନମାଳୀ (୧୯୦୪) ଲୀଳାବତୀ (୧୯୧୨) ପ୍ରଭୃତି ସମାଜ-ସଂସ୍କାରମୂଳକ ନାଟକ ରଚନା କରିଥିଲେ । ରାମଶଙ୍କର ସେକ୍ସପିୟରୀୟ ରୀତିରେ ନାଟକୀୟ

ଅମିତ୍ରାକ୍ଷର ଛନ୍ଦର ବହୁଳ ବ୍ୟବହାର ତାହାଙ୍କ ନାଟକାବଳୀରେ କରିଛନ୍ତି । ହିନ୍ଦୁସ୍ଥାନୀ ରାଗିଣୀଯୁକ୍ତ ବହୁ ସଙ୍ଗୀତ ମଧ୍ୟ ତାହାଙ୍କ ନାଟକରେ ସଂଯୋଜିତ । ପୌରାଣିକ, ଐତିହାସିକ, ସାମାଜିକ ସମସ୍ୟାମୂଳକ ବହୁସଂଖ୍ୟକ ନାଟକ ରଚନାକରି ସେ ଓଡ଼ିଆ ନାଟ୍ୟସାହିତ୍ୟକୁ ପରିପୁଷ୍ଟ ଓ ଉନ୍ନତ କରି ଯାଇଛନ୍ତି । ତାହାଙ୍କ ନାଟ୍ୟ ରଚନାରୀତିରେ ସଂସ୍କୃତ ଓ ପ୍ରାଚୀନ ଯାତ୍ରାର ପ୍ରଭାବ ମଧ୍ୟ ପରିଲକ୍ଷିତ ହୁଏ । ସେ ଯୁଗରେ ଅନ୍ୟତମ ନାଟ୍ୟକାର କାମପାଳ ମିଶ୍ରଙ୍କ ପୌରାଣିକ ନାଟକ 'ସୀତା ବିବାହ' ଓ 'ବସନ୍ତ ଲତିକା' ବିଷୟ ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ନାଟକର ଦ୍ୱିତୀୟ ପର୍ଯ୍ୟାୟରେ ଅର୍ଥାତ୍ ଖ୍ରୀ ୧୯୦୦ରୁ ୧୯୨୦ ପର୍ଯ୍ୟନ୍ତ ସମୟ ମଧ୍ୟରେ ଓଡ଼ିଆ ନାଟକକ୍ଷେତ୍ରରେ ଆମ୍ଭେମାନେ ଭିକାରୀଚରଣ ପଟ୍ଟନାୟକ, ରାଧାମୋହନ ରାଜେନ୍ଦ୍ରଦେବ, ଗୋପୀନାଥ ନନ୍ଦ, ଗୋଦାବରୀଶ ମିଶ୍ର ପ୍ରଭୃତି ନାଟ୍ୟକାରଙ୍କୁ ଦେଖିବାକୁ ପାଉ । ଐତିହାସିକ 'କଟକ ବିଜୟ' ନାଟକ ଭିକାରୀଚରଣଙ୍କର ପ୍ରଥମ ନାଟକ । ଏହାପରେ ସେ ସାମାଜିକ, କମ୍ବଦନ୍ତୀମୂଳକ, କାଳ୍ପନିକ, ଐତିହାସିକ ନାଟକ ରୂପେ ସଫାଉରଶିକ (୧୯୧୫), ନନ୍ଦକେଶରୀ (୧୯୧୫), ରତ୍ନମାଳୀ (୧୯୧୫), ସୁଶୀଳା (୧୯୧୭), କପୌତୁକ (୧୯୨୪), ରାଜା ପୁରୁଷୋତ୍ତମଦେବ (୧୯୨୫) ଅଭୂତ ଆଦର୍ଶ, ନିରୂପମା ପ୍ରଭୃତି ନାଟକମାନ ପ୍ରଣୟନ କରିଥିଲେହେଁ ଓଡ଼ିଶାର ନାଟ୍ୟ ରଚନାରୀତିରେ କୌଣସି ପରିବର୍ତ୍ତନ ଆନୟନ କରିବାକୁ ସମର୍ଥ ହୋଇ ପାରିନାହାନ୍ତି । ଭିକାରୀଚରଣ, ଜଗନ୍ମୋହନ, ରାମଶଙ୍କର ଓ ଫକୀରମୋହନଙ୍କ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ । ତାଙ୍କର ଅଧିକାଂଶ ନାଟକର

ପ୍ରଥମରେ ଏକ ପ୍ରସ୍ତାବନାମୂଳକ ସଂଗୀତ ପରିଲକ୍ଷିତ ହୁଏ ; ପ୍ରତ୍ୟେକଟି ନାଟକ ପାଞ୍ଚଟି ଅଙ୍କ ଓ ପ୍ରତ୍ୟେକଟି ଅଙ୍କରେ ବହୁ ସଂଖ୍ୟକ ଦୃଶ୍ୟ ସଂଯୋଜିତ । ଏହାଛଡ଼ା ସଙ୍ଗୀତର ଅଯଥା ଓ ବହୁଳ ବ୍ୟବହାର, ଦୀର୍ଘ ସ୍ୱଗତୋକ୍ତି, ବହୁସଂଖ୍ୟକ ଚରିତ୍ରସମାବେଶ, କାବ୍ୟଧର୍ମୀ ଉତ୍ତେଜନାତ୍ମକ ସଂଳାପ, ତାହାଙ୍କ ନାଟକମାନଙ୍କରେ ପରିଦୃଷ୍ଟ ହୋଇଥାଏ ।

ଚିକିଟିର ରାଜା ରାଧାମୋହନ ରାଜେନ୍ଦ୍ରଦେବ 'ପ୍ରେମତରଙ୍ଗ', 'ପରିମଳା ସହଗମନ', 'ପ୍ରକୃତରହସ୍ୟ', 'ପ୍ରକୃତ ପ୍ରଣୟ', 'ଶ୍ରୀପ୍ରଭାତ' ପ୍ରଭୃତି ନାଟକ ରଚନା କରିଛନ୍ତି । ସେହିପରି ଗୋପୀନାଥ ନନ୍ଦ 'ଜାନକୀ ପରିଣୟ', 'ଉନ୍ମତ୍ତ ରାଘବ', ହରିହର ରଥ, 'ବେଣୀ ସଂହାର', 'ରାବଣ ବଧ', 'ରାମାଭିଷେକ', 'ବନବାସନ', 'ରାମଜନ୍ମ ନାଟକ' ଏବଂ ପାରଳାର ପଦ୍ମନାଭ ନାରାୟଣ ଦେବ 'ପ୍ରହ୍ଲାଦ', 'ଅହଲ୍ୟା ଶାପମୋଚନ', 'ଦାନପରୀକ୍ଷା' 'ବାଣ ଦର୍ପଦଳନ' ପ୍ରଭୃତି ନାଟକ ରଚନା କରିଥିଲେ । କହିବା ବାହୁଲ୍ୟ ମାତ୍ର ଯେ, ଏହି ନାଟ୍ୟକାରଗଣ ପୂର୍ବପୁରି ସଂସ୍କୃତ ନାଟକାଦର୍ଶରେହିଁ ଉକ୍ତ ନାଟକାବଳୀ ପ୍ରଣୟନ କରି ଅଛନ୍ତି । ସେହିପରି ସୁରଙ୍ଗିର ରାଜା କିଶୋରଚନ୍ଦ୍ରଙ୍କ 'ପ୍ରହ୍ଲାଦ ନାଟକ', ଗୌରଚନ୍ଦ୍ର ଗଜପତିଙ୍କ 'ଧ୍ରୁବ ନାଟକ', ଆଉ ବିକ୍ରମଦେବଙ୍କ 'ପ୍ରେମଲତା'ର ନାମ ମଧ୍ୟ ଉଲ୍ଲେଖ କରାଯାଇ ପାରେ । ମାତ୍ର ଏହିସବୁ ନାଟକ ତାହାର ଯୁଗୋଚିତ ନାଟକୀୟଗୁଣାବଳୀର ଅଭାବ ଯୋଗୁଁ ଜନପ୍ରିୟ ଓ ଯୁଗୋପଯୋଗୀ ହୋଇପାରି ନ ଥିଲା । ମାତ୍ର ଏହି ସମୟରେ ଅନ୍ୟତମ ନାଟ୍ୟକାର ଗୋଦାବରୀଶ ମିଶ୍ରଙ୍କ ରଚିତ 'ମୁକୁନ୍ଦ-ଦେବ', 'ପୁରୁଷୋତ୍ତମ ଦେବ' ନାଟକ ଦୁଇଟି ସମ୍ପୂର୍ଣ୍ଣ ଐତିହାସିକ

ହେଲେହେଁ ପୂର୍ବବର୍ତ୍ତୀ ନାଟକମାନଙ୍କ ଅପେକ୍ଷା ଅଧିକ ସମାଦୃତ ହୋଇ ପାରିଥିଲା । ଗୋଦାବରୀଶ ଇଂରାଜୀ ନାଟକର ଆଦର୍ଶରେ ତାହାଙ୍କର ନାଟକ ଦୁଇଟି ରଚନା କରିଥିଲେ ।

ଏହାପରେ ଓଡ଼ିଆ ନାଟକର ତୃତୀୟ ସ୍ତରଭାବେ ୧୯୨୦ରୁ ୧୯୪୫ ପର୍ଯ୍ୟନ୍ତ ସମୟକୁ ଗ୍ରହଣ କରାଯାଇ ପାରେ । ଏହି ସମୟ ମଧ୍ୟରେ ମଧ୍ୟ ନାଟକର ଉପଯୁକ୍ତ ଅଗ୍ରଗତି ଓ ବିକାଶ ସାଧିତ ହୋଇଥିଲା । କଟକରେ ସ୍ଥାୟୀ ରଙ୍ଗମଞ୍ଚ ସ୍ଥାପନ ଏହି ସମୟ ମଧ୍ୟରେ ଏକ ପ୍ରଧାନ ଘଟଣା । ବହୁ ବରେଣ୍ୟ ନାଟ୍ୟକାରଙ୍କ ସମବେତ ପ୍ରଚେଷ୍ଟାରେ ଏହି ସମୟ ମଧ୍ୟରେ ବହୁବିଧ ନାଟକ ଓ ପ୍ରହସନ ଲିଖିତ ହୋଇଅଛି । ସେମାନଙ୍କ ମଧ୍ୟରୁ ଗୋବିନ୍ଦ-ଚନ୍ଦ୍ର ସୁରଦେଓ, ମୋହନସୁନ୍ଦର ଦେବ ଗୋସ୍ୱାମୀ, ଅଶ୍ୱିନୀକୁମାର ଘୋଷ, କାର୍ତ୍ତିକକୁମାର ଘୋଷ, (ମୀର କାସିମ, ବୀର ଅଭିମନ୍ୟୁ) ରାମଚନ୍ଦ୍ର ମହାପାତ୍ର ( ସୁଦାମା, ରଘୁଅରକ୍ଷିତ, ), ବାଳକୃଷ୍ଣ କର (ଚନ୍ଦ୍ରଗୁପ୍ତ, ଶିବଦାସ); ରମାରଞ୍ଜନ (ଗୌଡ଼ ବିଜେତା ) ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଗୋବିନ୍ଦଚନ୍ଦ୍ର ସୁରଦେଓ ପଦ୍ମମାଳୀ, ପେଟେଣ୍ଟ ମେଡ଼ିସିନ ପ୍ରଭୃତି ରଚନାକୁ ନାଟ୍ୟରୂପ ଦେଇଥିଲେ ଓ ପ୍ରାଚୀନ ରାସଲୀଳାକୁ ପରିମାର୍ଜିତ କରିଥିଲେ । ଏହି ସମୟ ମଧ୍ୟରେ ଅଶ୍ୱିନୀକୁମାର ବିବିଧ ବିଷୟ ସମ୍ବଳିତ ନାଟକ ପ୍ରଣୟନ କରିବା ବିଷୟରେ ଅଗ୍ରଣୀ ନାଟ୍ୟକାରଭାବେ ପ୍ରସିଦ୍ଧି ଅର୍ଜନ କରିଥିଲେ । ମୁଖ୍ୟତଃ ଐତିହାସିକ ଓ ପୌରାଣିକ ଚରିତ୍ରମାନଙ୍କୁ ନେଇ ସେ ନାଟକ ରଚନା କରିଅଛନ୍ତି । ଅଶ୍ୱିନୀକୁମାର 'ଗୋବିନ୍ଦ ବିଦ୍ୟାଧର', 'ସୁନ୍ଦରମଣୀ', 'କଳାପାହାଡ଼', 'ପାଇକପୁଅ' 'ଭୁଞ୍ଜଭୁଜଙ୍ଗ', 'ସ୍ୱପ୍ନ', 'ଉତ୍କଳ ଗୌରବ', 'ଇରମା' 'କୋଣାର୍କ',

'ମାତୃପୂଜା', 'ମାଷ୍ଟର ବାବୁ' ପ୍ରଭୃତି ବହୁସଂଖ୍ୟକ ନାଟକ ରଚନା କରିଥିଲେହେଁ ତାହାଙ୍କ ନାଟକର ଭାଷା ତଥା ଚରିତ୍ର-ଚିତ୍ରଣରେ ବହୁ କୃତ୍ରିମତା ଓ ଅସ୍ୱାଭାବିକତା ପରିଲକ୍ଷିତ ହୁଏ । ଏଣୁ ଏହି ସମୟକୁ ଓଡ଼ିଆ ଐତିହାସିକ ଓ ପୌରାଣିକ ନାଟ୍ୟ-ସାହିତ୍ୟର ଯୁଗ କୁହାଯାଇପାରେ ।

ଏହି ସମୟର ଶେଷଭାଗରେ ଅବତୀର୍ଣ୍ଣ ହୁଅନ୍ତି ନାଟ୍ୟକାର କାଳୀଚରଣ । କାଳୀଚରଣଙ୍କ ଦ୍ୱାରା ଓଡ଼ିଆ ନାଟ୍ୟ-କଳାର ବହୁ ଉନ୍ନତି ସାଧିତ ହୋଇଅଛି । ଯଥାର୍ଥ ଅଭିନୟ ଉପଯୋଗୀ ନାଟକପ୍ରଣୟନ କ୍ଷେତ୍ରରେ କାଳୀଚରଣ ଅନ୍ୟତମ ମାର୍ଗ ପ୍ରଦର୍ଶକରୂପେ ପରିଗଣିତ ହୁଅନ୍ତି । ପୂର୍ବବର୍ତ୍ତୀ ନାଟକ ଗୁଡ଼ିକରେ ଦୃଶ୍ୟମାନଙ୍କ ମଧ୍ୟରେ ଆନୁପାତିକ ସମତା ରକ୍ଷିତ ହେଉ ନଥିଲା । ଗୋଟିଏ ଗୋଟିଏ ନାଟକର ଆକାର ଥିଲା ଖୁବ ବଡ଼ । ଏଣୁ ଅଭିନୟ ବହୁ ସମୟସାପେକ୍ଷ ହେଉଥିଲା । ନାଟକର ଭାଷା ମଧ୍ୟ ଥିଲା କୃତ୍ରିମ ଓ କାବ୍ୟଧର୍ମୀ । ମୋଟ-ଉପରେ କାଳୀଚରଣଙ୍କ ପୂର୍ବରୁ ନାଟକଗୁଡ଼ିକ ମଞ୍ଚୋପଯୋଗିତା ଦୃଷ୍ଟିରୁ ଥିଲା ବହୁ ତ୍ରୁଟିପୂର୍ଣ୍ଣ । କାଳୀଚରଣ ନାଟକମାନଙ୍କରେ ଓଡ଼ିଆର କଥ୍ୟ ଭାଷା ସଂଯୋଜିତ କରିଛନ୍ତି । ସ୍ୱଳ୍ପ ସମୟ ମଧ୍ୟରେ ଯେପରି ନାଟକଟିର ଅଭିନୟ ସମାପ୍ତ ହୋଇପାରିବ, ସେହି ଦୃଷ୍ଟିରୁ ରଚନାକୁ ନିୟନ୍ତ୍ରିତ କରିଛନ୍ତି । Cover scene ପ୍ରଭୃତି ସଂଯୁକ୍ତ କରି ନାଟ୍ୟାଭିନୟକୁ ସହଜ କରାଇ ଅଛନ୍ତି ଓ ଓଡ଼ିଶାର ଲୋକଗୀତ ସୁରରେ ବହୁ ସଙ୍ଗୀତ ରଚନାପୂର୍ବକ ତାହାକୁ ସୁକୌଶଳରେ ନାଟକରେ ସଂଯୋଜିତ କରିଅଛନ୍ତି । ଏହି ସମସ୍ତ କାରଣରୁ କାଳୀଚରଣଙ୍କ ନାଟକଗୁଡ଼ିକ ଏକଦା ପ୍ରଚୁର

ଜନପ୍ରିୟତା ଅର୍ଜନ କରିବା ସଙ୍ଗେ କାଳୀଚରଣଙ୍କୁ ଓଡ଼ିଆ ନାଟ୍ୟକଳାରେ ଏକ ପରମ୍ପରାର ପ୍ରବର୍ତ୍ତକରୂପେ ସ୍ୱନାମଧନ୍ୟ କରିଅଛି ।

୧୯୪୪ ମସିହାରେ କାଳୀଚରଣଙ୍କ 'ଘର' ନାଟକଟି ପ୍ରକାଶିତ ହୁଏ । ତାପରେ ତାହାଙ୍କ ପ୍ରଣୀତ 'ରକ୍ତମାଟି', (୧୯୫୭) 'ଫଟା ଭୂଇଁ', 'ଗର୍ଲସ୍ ସ୍କୁଲ' ପ୍ରଭୃତି ସାମାଜିକ ନାଟକମାନଙ୍କରେ ଏ ଦେଶର ତତ୍କାଳୀନ ବହୁସମସ୍ୟା ଅଭିବ୍ୟକ୍ତ ଲାଭକରିଛି । ଏତଦ୍‌ବ୍ୟତୀତ ସେ ଜୟଦେବ, ଅଭିରାମ ଜଗନ୍ନାଥଦାସ, ସାରଳାଦାସ ଭଳି କେତେଗୋଟି ଚରିତ-ନାଟକ, ପୌରାଣିକ ନାଟକ 'ଚଣ୍ଡୀ' ଏବଂ ଐତିହାସିକ ନାଟକ 'ଅଭିଯାନ' ଓ 'ରକ୍ତ ମନ୍ଦାର' ପ୍ରଭୃତି ରଚନାକରି ଓଡ଼ିଆ ନାଟ୍ୟ-ସାହିତ୍ୟକୁ ପରିପୁଷ୍ଟ କରିଅଛନ୍ତି ।

ମାତ୍ର କାଳୀଚରଣ ଏକ ପରମ୍ପରାର ପ୍ରବର୍ତ୍ତକରୂପେ ସମ୍ମାନାର୍ହ ହେଲେହେଁ ଏବଂ ତାହାଙ୍କ ନାଟକଗୁଡ଼ିକ ରଙ୍ଗମଞ୍ଚସଫଳତା ଦୃଷ୍ଟିରୁ ପ୍ରଶଂସନୀୟ ହେଲେହେଁ, ଚରିତ୍ରସୃଷ୍ଟିକ୍ଷେତ୍ରରେ କାଳୀଚରଣଙ୍କ ବ୍ୟର୍ଥତା ସୁସ୍ପଷ୍ଟ । ରସ ସୃଷ୍ଟି ଦୃଷ୍ଟିରୁ ମଧ୍ୟ ତାହାଙ୍କ ନାଟକାବଳୀରେ କେତେକ ତ୍ରୁଟି ପରିଲକ୍ଷିତ ହୁଏ । ସସ୍ତା ହାସ୍ୟରସ, ନୃତ୍ୟ ସଙ୍ଗୀତର ବହୁଳ ବ୍ୟବହାର, ଅନାବଶ୍ୟକ ଚରିତ୍ର ସୃଷ୍ଟି, ନାଟକୀୟ କୈନ୍ଦ୍ରିକତାର ଅଭାବ ପ୍ରଭୃତି କେତୋଟି ବିଷୟ ଏଠାରେ ଦୃଷ୍ଟାନ୍ତରୂପେ ଉଲ୍ଲେଖ କରାଯାଇପାରେ ।

କାଳୀଚରଣଙ୍କ ପରେ ଅର୍ଥାତ୍ ଯୁଦ୍ଧୋତ୍ତର ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ନାଟକର ଏହି ସମସ୍ତ ଅଭାବ ଓ ଦୋଷ ତ୍ରୁଟି ଆଧୁନିକ କେତେକ ଉଦୀୟମାନ ଓ ଲବ୍ଧପ୍ରତିଷ୍ଠ

ନାଟ୍ୟକାରଙ୍କ ଦ୍ୱାରା ଦୃଢ଼ୀଭୂତ ଓ ପରିମାର୍ଜିତ ହୋଇଅଛି । ସେମାନଙ୍କମଧ୍ୟରେ ଗୋପାଳ ଛୋଟରାୟ, ମନୋରଞ୍ଜନ ଦାସ, ଅଦ୍ୱୈତଚରଣ ମହାନ୍ତି, ପ୍ରାଣବନ୍ଧୁ କର, ରାମଚନ୍ଦ୍ର ମିଶ୍ର, ଭଞ୍ଜକିଶୋର ପଟ୍ଟନାୟକ ଓ କମଳଲୋଚନ ମହାନ୍ତି ପ୍ରଭୃତିଙ୍କ ନାମୋଲ୍ଲେଖ କରାଯାଇପାରେ । ଏହି ଯୁଦ୍ଧୋତ୍ତର କାଳର ନାନା ସାମାଜିକ ଓ ରାଜନୈତିକ ସମସ୍ୟା ଆଧୁନିକ ନାଟକରେ ପ୍ରତିଫଳିତ ହୋଇଅଛି । ଅନ୍ନାଭାବ, ଅର୍ଥାଭାବ, ଯୌତୁକ ପ୍ରଥାର କୁପରିଣାମ, ଶରଣାର୍ଥୀ ସମସ୍ୟା, ସାମ୍ପ୍ରଦାୟିକ ବିବାଦ, ଚୋରାବଜାର, ଲାଞ୍ଚ ଓ ଲୋଭର କୁପରିଣାମ ଇତ୍ୟାଦି ନାନା ବାସ୍ତବ ସମସ୍ୟାକୁ କେନ୍ଦ୍ରକରି ସାମ୍ପ୍ରତିକ ନାଟ୍ୟକାରଗଣ ନାଟକ ରଚନାରେ ପ୍ରବୃତ୍ତ ।

ଅତ୍ୟାଧୁନିକ ନାଟ୍ୟ-ସାହିତ୍ୟର ଅନ୍ୟ ଏକ ବିଭାବଭାବେ ଏକାଙ୍କିକା କ୍ରମଶଃ ବିଗତ ୨୦ ବର୍ଷ ମଧ୍ୟରେ ଜନପ୍ରିୟ ହେବା ପରିଲକ୍ଷିତ ହେଉଅଛି । ବେତାର କେନ୍ଦ୍ରରେ, ସଭାସମିତିରେ ବିଭିନ୍ନ କାର୍ଯ୍ୟକ୍ରମରେ, ସ୍କୁଲ୍-କଲେଜ ରଙ୍ଗମଞ୍ଚରେ ଏହା ବିଶେଷଭାବେ ପ୍ରଦର୍ଶିତ ହୋଇଥାଏ । କାଳୀଚରଣ ପଟ୍ଟନାୟକ, ହରେକୃଷ୍ଣ ମହତାବ, ପ୍ରାଣବନ୍ଧୁ କର, ମନୋରଞ୍ଜନ ଦାସ, ଗୋପାଳ ଛୋଟରାୟ, ଲକ୍ଷ୍ମଣ ଦାସ, ଶ୍ରଦ୍ଧାକର ସୂପକାର, ସରଳା ଦେବୀ, ସୁରେନ୍ଦ୍ର ମହାନ୍ତି ପ୍ରଭୃତି ନାଟ୍ୟକାର ଓ ଲେଖକ-ଗଣ ଏକାଙ୍କିକା ରଚନା କରି ନାଟ୍ୟ ସାହିତ୍ୟର ଏହି ବିଭବକୁ ପରିପୁଷ୍ଟ କରୁଅଛନ୍ତି । ଏମାନଙ୍କମଧ୍ୟରୁ ବିଭିନ୍ନ ବିଷୟରେ ବହୁ ଏକାଙ୍କିକା ରଚନାକରି ପ୍ରାଣବନ୍ଧୁ କର ସୁଖ୍ୟାତି ଅର୍ଜନ କରିଅଛନ୍ତି । ଐତିହାସିକ, ମନସ୍ତାତ୍ତ୍ୱିକ, ସାମାଜିକ ସମସ୍ୟା-ମୂଳକ, ବ୍ୟଙ୍ଗ-ବିଦ୍ରୂପାତ୍ମକ, ଚରିତ୍ର-ପ୍ରଧାନ, ପରିବେଶ-ପ୍ରଧାନ

ଏକାଙ୍କିକାସମୂହ ବିଭିନ୍ନ ନାଟ୍ୟକାରଙ୍କ ଲେଖନୀରେ ସାର୍ଥକ ରୂପ ଲାଭକରି ଓଡ଼ିଆ ନାଟ୍ୟ-ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରୁଅଛି । ବରଂ କୁହାଯାଇପାରେ ନାଟକ ଅପେକ୍ଷା ଏକାଙ୍କିକା ରଚନାରେ ଓଡ଼ିଶାର ନାଟ୍ୟକାରଗଣ ଅଧିକ ଦକ୍ଷତା ଓ ସାଫଲ୍ୟ ଅର୍ଜନ କରିବାକୁ ସମର୍ଥ ହୋଇପାରି ଅଛନ୍ତି ।

ଏହିପରି ଭାବେ ଆମର ନାଟ୍ୟ-ସାହିତ୍ୟ କ୍ରମଶଃ ଉନ୍ନତି ପଥରେ ଅଗ୍ରସର ହେଉଥିଲେହେଁ ଓଡ଼ିଆ ନାଟ୍ୟସାହିତ୍ୟ ଯେ ପୂର୍ଣ୍ଣ ବିକଶିତ ଓ ସମୁନ୍ନତ ହୋଇପାରିଛି ଏହା କହି ହେବନାହିଁ । ସାମ୍ପ୍ରତିକ କାଳରେ ଓଡ଼ିଆ ନାଟକକ୍ଷେତ୍ରରେ ବହୁ ପରୀକ୍ଷା ଓ ପ୍ରୟୋଗର ସୂତ୍ରପାତ ହୋଇଛି । 'ଡାକ୍ତରଖାନା' 'ଅର୍ଦ୍ଧାଙ୍ଗିନୀ' 'ଏକ ଦୁଇ ତିନି' 'ଟେବଗମକୋଠି' ଭଳି କେତେକ ପୂର୍ଣ୍ଣାଙ୍ଗ ନାଟକକୁ ଏକ ଏକ ଦୃଶ୍ୟସଜ୍ଜା ମଧ୍ୟଦେଇ ସଫଳତାର ସହିତ ମଞ୍ଚସ୍ଥ କରାଯାଇ ପାରିଅଛି । 'କାଚ କାଞ୍ଚନ' (ଭୁବନେଶ୍ୱର ମହାପାତ୍ର) ଭଳି ଏକ ରହସ୍ୟଭେଦମୂଳକ ନାଟକ ରଙ୍ଗମଞ୍ଚରେ ସଫଳତାର ସହିତ ଅଭିନୀତ ହୋଇପାରିଛି । 'ଘର କଲମ' ଭଳି ସମ୍ପୂର୍ଣ୍ଣ ଏକ ରାଜନୈତିକ ସମସ୍ୟାକୁ ମନୋଜ୍ଞ ରୀତିରେ ପରିବେଷଣ କରାଯାଇ ପାରିଛି । ମାତ୍ର ଆଧୁନିକ ନାଟକ ମଧ୍ୟରେ ଆମ ଜୀବନର ଯଥାର୍ଥ ପ୍ରତିଫଳନ, ଆମ ଜାତୀୟ ଜୀବନର ଗଭୀର ସ୍ପନ୍ଦନ ଯେ ଜୀବନ୍ତଭାବେ ଅଭିବ୍ୟକ୍ତି ଲାଭକରି ପାରୁନାହିଁ; ଏହା ଏକ ଅପ୍ରୀତିକର ସତ୍ୟ । ବହୁ ନାଟକରେ ଅଦ୍ଭୁତ, ଅବାସ୍ତବ ଓ କଳ୍ପିତ କମାକାର କାହାଣୀ, ଅସ୍ୱାଭାବିକ ସ୍ଥିତି, ଉଚ୍ଚକଣ୍ଠରେ ଚିତ୍କାର, ହୋ ହା, ପ୍ରଚୁର ଆକସ୍ମିକତା ଓ ଉତ୍ତେଜନାର ଅଭିବ୍ୟକ୍ତିହିଁ ଅଧିକ ଦେଖିବାକୁ ମିଳୁଅଛି । ଓଡ଼ିଆ ନାଟ୍ୟ-

ସାହିତ୍ୟରେ ଏପରି ଯେଉଁ ଏକ ଐତିହ୍ୟ ଗଢ଼ିଉଠିଛି ଏଥିପାଇଁ ମୁଖ୍ୟତଃ ଆମ ଦେଶର ଯାତ୍ରାଦଳଗୁଡ଼ିକୁହିଁ ଦାୟୀ କରାଯାଇପାରେ । ଶସ୍ତା ପ୍ରଣୟର ଚର୍ବଣ ମଧ୍ୟ ଅଧିକାଂଶ ନାଟକର ଉପଜୀବ୍ୟ ହୋଇଛି ।

ଏଣୁ ନାଟକ ଆଜି ଅବସର ବିନୋଦନ, ଫୁର୍ତ୍ତି, ଆଡ୍‌ଡାର ସାମଗ୍ରୀ ହୋଇଛି । ରଙ୍ଗମଞ୍ଚ ଓ ନାଟ୍ୟ-ସାହିତ୍ୟ ଦେଶକୁ ଜାଗ୍ରତ, ଉଦ୍‌ବୁଦ୍ଧ ଓ ଜୀବନ ସମ୍ବନ୍ଧରେ ଆମକୁ ଅବହିତ କରିବା ପରିବର୍ତ୍ତେ ଏକ ଅସ୍ୱାଭାବିକ 'ନାଟକୀୟ ଜଗତ ରଚନା' କରିବାରେ ସୀମିତ ହୋଇପଡ଼ିଛି । ଅଧିକାଂଶ ନାଟକ ଏଥିପାଇଁ ପଠନ ଉପଯୋଗୀ ସାହିତ୍ୟ-ଭାବେ ପରିଗୃହୀତ ହୋଇ ପାରୁନାହିଁ ।

ଏତଦ୍‌ବ୍ୟତୀତ ୧୯୪୮ରେ କଟକରେ ଆକାଶବାଣୀ କେନ୍ଦ୍ର ସ୍ଥାପିତହେବା ପରେ ବିଶେଷତଃ ୧୯୫୦ଠାରୁ ଗତ ଦଶ ବର୍ଷ ମଧ୍ୟରେ ଏହି ଆକାଶବାଣୀକୁ କେନ୍ଦ୍ର କରି ଓଡ଼ିଆ ନାଟକ-କ୍ଷେତ୍ରରେ ମଧ୍ୟ ଉନ୍ନତର ସୂଚନା ମିଳିଛି । ବିଭିନ୍ନ ପ୍ରକାର ଶବ୍ଦକୁ ରେକର୍ଡିଂ କରାଯାଇ ତାହାର ସଂଯୋଜନାରେ ଓ ନାନା ବିଧ ଗୀତର ସମାବେଶରେ ଓଡ଼ିଆ ନାଟକକ୍ଷେତ୍ରରେ ବିବିଧ ପରୀକ୍ଷା ଓ ପ୍ରୟୋଗର ସୂତ୍ରପାତ ହୋଇଅଛି । ବେତାର ନାଟ୍ୟ-ମାଧ୍ୟମରେ ଗାଈ, ବିଲେଇ, କୁକୁର, ଶୁଆ ପ୍ରଭୃତି ମାନବେତର ପ୍ରାଣୀମାନଙ୍କୁ ନାଟକୀୟ ପ୍ରଧାନ-ଚରିତ୍ର (Hero) ଭାବେ ଗ୍ରହଣ କରି ନାଟକ ରଚିତ ଓ ପରିବେଷିତ ହୋଇ ଅଛି । 'ସାଗର ମନ୍ଥନ' ପର୍ଯ୍ୟାୟଭୁକ୍ତ ବିବିଧ ମନସ୍ତାତ୍ତ୍ୱିକ ବିଷୟକୁ ନାଟ୍ୟରୂପ ଦିଆଯାଇ ପରିବେଷଣ କରାଯାଇଅଛି । ବହୁ ପୌରାଣିକ,

ଐତିହାସିକ ବିଷୟ ମଧ୍ୟ ରେଡ଼ିଓ-ନାଟକଭାବେ ଅତ୍ୟନ୍ତ ସଫଳତାର ସହିତ ସେଥିରେ ଅଭିନୀତ ହୋଇଅଛି । ଏହାଛଡ଼ା ବହୁସଂଖ୍ୟକ ରୂପକ, 'ଆପଣମାନଙ୍କ ସେବାରେ', '୭୫ ବର୍ଷ ପୂର୍ବେ ଓଡ଼ିଶା', 'ସ୍ୱର୍ଗରେ ସାକ୍ଷାତ' ପରି ତଥ୍ୟ-ସମ୍ବଳିତ ରୂପକ, 'ଗୋପବନ୍ଧୁ', 'ହ. ବର୍ମା', 'ଚନ୍ଦ୍ରଶେଖର' ଭଳି ଚରିତ-ନାଟକ ମଧ୍ୟ ଧାରାବାହିକଭାବେ ସେଠାରେ ଅଭିନୀତ ହୋଇ ଯାଇଅଛି । ପରିପୂର୍ଣ୍ଣ ପାରିବାରିକ, ଗୃହଦଶା-ଚହମା ଭଳି ହାସ୍ୟରସାତ୍ମକ ନାଟକ ଧାରାବାହିକଭାବେ ଅଭିନୀତ ହୋଇ ସମାଦୃତ ଓ ପ୍ରଶଂସିତ ହୋଇଅଛି । ରେଡ଼ିଓ ଉପଯୋଗୀ ପୂର୍ବୋକ୍ତ ଶ୍ରେଣୀର ରୂପକ ଓ ନାଟକ ଲେଖକଭାବେ, ଗୋପାଳ ଛୋଟରାୟ, ସୁରେନ୍ଦ୍ର ମହାନ୍ତି, ମନୋରଞ୍ଜନ ଦାସ, ସାମୁଏଲ ନାୟକ, ନରସିଂହ ମହାପାତ୍ର, ନନ୍ଦଅଭିହାରୀ ମହାନ୍ତି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ମୋଟଉପରେ ଆକାଶବାଣୀକୁ କେନ୍ଦ୍ର କରି ଗତ କେତେ ବର୍ଷ ମଧ୍ୟରେ ଯେ ଉଚ୍ଚକୋଟିର ନାଟକ ରଚିତ ଓ ପରିବେଷିତ ହୋଇପାରିଛି ଏ ବିଷୟରେ ସନ୍ଦେହର ଅବକାଶ ନାହିଁ ।

ଏହି ସଂପର୍କରେ ଓଡ଼ିଶାର ପଲ୍ଲୀ-ପ୍ରଚଳିତ ନାଟ୍ୟ-ସାହିତ୍ୟ ବିଷୟ ମଧ୍ୟ ବିଚାର୍ଯ୍ୟ । ଆଧୁନିକ ଓଡ଼ିଆ ନାଟକ ରଚିତ ହେବା ପୂର୍ବରୁ ଏ ଦେଶରେ ଯେଉଁସବୁ ପାଲା, ଲୀଳା, ସୁଆଙ୍ଗ, ଗୀତାଭିନୟ ପ୍ରଭୃତି ପ୍ରଚଳିତ ଥିଲା ସେଗୁଡ଼ିକ ଶଂସିତ କାଳ ମଧ୍ୟରେ ପରିମାର୍ଜିତ, ସଂସ୍କୃତ ଓ ପରିବର୍ତ୍ତିତ ହୋଇଅଛି । ମଞ୍ଚାଭିନୟ ଆମର ଯାତ୍ରା ପ୍ରଭୃତିକୁ ପ୍ରଭାବିତ କରିଅଛି ଓ କରୁଅଛି । ଯାହାକୁ ପରି-ମାର୍ଜିତ ଓ ବିକଶିତ କରିବାରେ ବୈଷ୍ଣବ ପାଣିଙ୍କ ଦାନ ଅଗ୍ରଗଣ୍ୟ ।

ଯାହାରେ ଚରିତ୍ରମାନଙ୍କ ସଂଳାପରେ ଗଦ୍ୟର ସଂଯୋଜନା ବୈଷ୍ଣବ ପାଣିଙ୍କ କୃତିତ୍ୱ । ତା ଛଡ଼ା ଜଗନ୍ନାଥ ପାଣି, ଗୋପାଳ ଦାସ, ବାଲକୃଷ୍ଣ ମହାନ୍ତି ଓ ରାମଚନ୍ଦ୍ର ସ୍ୱାଇଁ ପ୍ରଭୃତିଙ୍କ ଯାତ୍ରାଗୁଡ଼ିକ ମଧ୍ୟ ଏ ସଂପର୍କରେ ଉଲ୍ଲେଖଯୋଗ୍ୟ । ନୂତନ ଷ୍ଟାଇଲରେ ପାଲା ରଚନା କରିବାରେ କୃଷ୍ଣପ୍ରସାଦ ବସୁ, ନିରଞ୍ଜନ କର ପ୍ରଭୃତିଙ୍କ ଉଦ୍ୟମ ମଧ୍ୟ ପ୍ରଶଂସନୀୟ ।

ଏହାହିଁ ଓଡ଼ିଆ ନାଟ୍ୟ-ସାହିତ୍ୟ ସଂପର୍କୀୟ ଏକ ସ୍ଥୂଳ ବିବରଣୀ । ଆଧୁନିକ ଓଡ଼ିଆ ନାଟକ ଯେ କ୍ରମଶଃ ଅଗ୍ରଗତି ପଥରେ ଗତିଶୀଳ ଏବଂ ଓଡ଼ିଆ ନାଟକ ସଂପର୍କରେ ଆନନ୍ଦିତ ଓ ଆଶାନ୍ୱିତ ହେବାର ଯେ ଯଥେଷ୍ଟ କାରଣ ଅଛି; ଏହାହିଁ ଆମର ଦୃଢ଼ ବିଶ୍ୱାସ ।



# ସତ୍ୟବାଦୀ-ସାହିତ୍ୟ

ଚଳିତ ଶତାବ୍ଦୀର ପ୍ରଥମ ପାଦରେ ସତ୍ୟବାଦୀର ବକୁଳ-ବନ ପରିସରରେ ଗୋପବନ୍ଧୁଙ୍କ ନେତୃତ୍ୱରେ ଯେଉଁ ସାହିତ୍ୟ-ସାଧକଗୋଷ୍ଠୀଙ୍କ ଦ୍ୱାରା ସାହିତ୍ୟ ସାଧନାର ସୂତ୍ରପାତ ହୋଇଥିଲା ତାହା ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ଏକ ଗୌରବମୟ ଅଧ୍ୟାୟ । ୧୯୦୮ ମସିହାରେ ରାଧାନାଥଙ୍କ ଦେହାନ୍ତ ହେଲା ଓ ତାର ପରବର୍ଷ ୧୯୦୯ ମସିହା ଅଗଷ୍ଟ ମାସରେ ସତ୍ୟବାଦୀଠାରେ ଗୋପବନ୍ଧୁଙ୍କ ଉଦ୍ୟମରେ ଏକ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ୧୯୧୧ରୁ ୧୯୧୪ ମଧ୍ୟରେ ଶ୍ରୀଯୁକ୍ତ ନୀଳକଣ୍ଠ ଦାଶ, ୰ ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଓ ୰ କୃପାସିନ୍ଧୁ ମିଶ୍ର ପ୍ରମୁଖ ଓଡ଼ିଶାର କୃତିସନ୍ତାନ-ଗଣ ଉକ୍ତ ବିଦ୍ୟାଳୟରେ ଶିକ୍ଷକଭାବେ ଯୋଗ ଦେଇଥିଲେ । ସେତେବେଳେ ସରକାରୀ ଚାକିରୀ ବା ସ୍ୱାଧୀନଭାବେ ଧନାର୍ଜନର ସମସ୍ତ ଅଭିଳାଷକୁ ବିସର୍ଜନ କରି ଏମାନେ ତ୍ୟାଗର ଯେଉଁ ମହିମାମୟ ଦୃଷ୍ଟାନ୍ତ ଦର୍ଶାଇଥିଲେ, ତାହା ଅତୁଳନୀୟ । ପରବର୍ତ୍ତୀ କାଳରେ ରାମଚନ୍ଦ୍ର ରଥ, ବାସୁଦେବ ମହାପାତ୍ର, ୰ ଲିଙ୍ଗରାଜ ମିଶ୍ର ପ୍ରଭୃତି ବହୁ କୃତିସନ୍ତାନ ଉକ୍ତ ବିଦ୍ୟାଳୟରେ ଶିକ୍ଷକଭାବେ ଯୋଗଦାନ କରିଥିଲେ । ୧୯୧୪ ମସିହାରେ ଉକ୍ତ ଅନୁଷ୍ଠାନ ପକ୍ଷରୁ 'ସତ୍ୟବାଦୀ' ନାମକ ଏକ ପତ୍ରିକା ମଧ୍ୟ ଅନିୟମିତଭାବେ ପାଞ୍ଚ ଛଅ ବର୍ଷ ପାଇଁ ପ୍ରକାଶ ପାଇଥିଲା । ୧୯୨୦ ମସିହାରେ ଏହା ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥିଲା ଓ କ୍ରମେ ଅସହଯୋଗ

ଆନ୍ଦୋଳନର ବାତ୍ୟାରେ ତଥା ଅନ୍ୟାନ୍ୟ ବହୁ ପ୍ରତିକୂଳ ପରିସ୍ଥିତି ଯୋଗୁ ଏହି ମହାନ୍ ଶିକ୍ଷାନୁଷ୍ଠାନର ଅପମୃତ୍ୟୁ ଘଟିଲା ।

ଭାରତବର୍ଷ ପରାଧୀନ ଥିଲାବେଳେ ଭାରତର ଯେ କୌଣସି ଚିନ୍ତାଶୀଳ ବ୍ୟକ୍ତି ପକ୍ଷେ ରାଜନୀତିଠାରୁ ଦୂରରେ ରହିବା ସମ୍ଭବପର ନଥିଲା । ୧୯୦୩ ଠାରୁ ୧୯୨୧ ପର୍ଯ୍ୟନ୍ତ ଓଡ଼ିଶାର ବିଶିଷ୍ଟ ବ୍ୟକ୍ତି-ଗଣ ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ ଓ ଉତ୍କଳର ସର୍ବାଙ୍ଗୀନ ଉନ୍ନତି ସାଧନ ବିଷୟରେ ଏକାନ୍ତ ମନୋଯୋଗୀ ଥିଲେ । ଭାରତୀୟ ଜାତୀୟ କଂଗ୍ରେସ ବା ସ୍ୱାଧୀନତା ଲାଗି ସକ୍ରିୟ ସଂଗ୍ରାମ ବା ବିପ୍ଳବର ଆହ୍ୱାନ ସେ ପର୍ଯ୍ୟନ୍ତ ଉତ୍କଳୀୟ ଯୁବ ଚିତ୍ତକୁ ଆନ୍ଦୋଳିତ କରି ନଥିଲା । ୧୯୨୧ ପର୍ଯ୍ୟନ୍ତ ଉତ୍କଳ-ସମ୍ମିଳନୀ ହିଁ ଥିଲା ଉତ୍କଳ-ବାସୀଙ୍କ ରାଜନୀତିର ପୀଠ ସ୍ଥଳୀ ଓ ମଧୁସୂଦନ ଦାସ ଥିଲେ ତାର କର୍ଣ୍ଣଧାର । ମାତ୍ର ଏହି ସମୟରେ ଯେଉଁ ଜନନାୟକ ତଥା ସାହିତ୍ୟ ସାଧକ ଆବିର୍ଭୂତ ହୋଇ ଓଡ଼ିଶାର ଜାତୀୟ ଜୀବନ ତଥା ସାହିତ୍ୟ-କ୍ଷେତ୍ରରେ ଅଭିନବ ପରିବର୍ତ୍ତନର ସୂତ୍ରପାତ କରିଥିଲେ ସେ ହେଉଛନ୍ତି ପଣ୍ଡିତ ଗୋପବନ୍ଧୁ ଦାଶ । କବିତ୍ୱ ପ୍ରତି ହିଁ ଥିଲା ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ସ୍ୱାଭାବିକ ପ୍ରବଣତା । ମାତ୍ର ସ୍ୱଦେଶର ତଥା ଦେଶବାସୀଙ୍କର ଦୁର୍ଗତି ସନ୍ଦର୍ଶନ କରି ଦରଦୀ କବିପ୍ରାଣ ଗୋପବନ୍ଧୁ ଜନସେବାକୁ ଜୀବନର ବ୍ରତଭାବେ ଗ୍ରହଣ କରି ନେଇଥିଲେ -- ଏଇ ଜନସେବା ଓ ଜନସାଧାରଣଙ୍କ ପ୍ରତି ଅକୃତ୍ରିମ ଓ ସୁଗଭୀର ଅନୁରାଗହିଁ ଗୋପବନ୍ଧୁଙ୍କୁ ରାଜନୀତିର ଦୁର୍ଗମ ମାର୍ଗକୁ ଟାଣି ନେଇଥିଲା ।

ଯାହାହେଉ ମହାନୁଭବ ତ୍ୟାଗୀ ଗୋପବନ୍ଧୁଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଯେଉଁ ପ୍ରତିଭାବାନ ବ୍ରାହ୍ମଣ ଓ ତରୁଣ ସାଧକ-

ଗୋଷ୍ଠୀ ସତ୍ୟବାଦୀ ବନ-ବିଦ୍ୟାଳୟରେ ଆତ୍ମନିୟୋଗ କରିଥିଲେ, ସେମାନେ ଜନସେବା, ସାହିତ୍ୟସେବା ଓ ଶିକ୍ଷାଦାନକୁ ସେମାନଙ୍କର ଜୀବନାଦର୍ଶଭାବେ ଗ୍ରହଣ କରିଥିଲେ ହେଁ ସେମାନଙ୍କର ମାନସିକ ପ୍ରବଣତା ଥିଲା ପରସ୍ପରଠାରୁ ପୃଥକ । ଭିନ୍ନ ମାନସିକ ଉପାଦାନ ଓ ପ୍ରବଣତାରେ ଗଠିତ ବରେଣ୍ୟ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ଲିଙ୍ଗରାଜ ପ୍ରଭୃତିଙ୍କୁ ଜାତୀୟତା, ସ୍ୱଦେଶ ପ୍ରୀତି, ଜନସେବା କେତେ ବର୍ଷ ପାଇଁ ଏକତ୍ରିତ କରାଇପାରିଥିଲା । ହୁଏତ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର କାଞ୍ଚନ ସ୍ପର୍ଶରେ ଏମାନେ ତ୍ୟାଗ ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇଥିଲେ । ମାତ୍ର ୧୯୨୮ ମସିହାରେ ଗୋପବନ୍ଧୁଙ୍କ ମୃତ୍ୟୁ ପରେ ଏଇ ସଂଯୋଗ ସୂତ୍ର ଛିନ୍ନ ହେଲା । ରାଜନୀତିର ପ୍ରବାହରେ ସତ୍ୟବାଦୀର ଅବଶିଷ୍ଟ ସାହିତ୍ୟସାଧକ-ଗଣ ଆପଣାକୁ ପୂର୍ଣ୍ଣ ପ୍ରାଣରେ ଭସାଇ ଦେଲେ । ଏହାର ଅବ୍ୟବହିତ ପରେ ଓଡ଼ିଆ ସାହିତ୍ୟରେ ଦେଖାଦେଲା ସ୍ୱପ୍ନବାଦୀ ତଥା ଉଗ୍ରତର ମାର୍କସୀୟ-ଦର୍ଶନ-ପୁଷ୍ଟ ସାହିତ୍ୟଧାରାର ପରିପ୍ଲାବନ । ସତ୍ୟବାଦୀର ସାହିତ୍ୟ ସାଧନା ପରେ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ନୂତନ ଭଙ୍ଗିମାର ସୂତ୍ରପାତ ହୋଇଛି ଓ ବିଭିନ୍ନ ସାହିତ୍ୟାଦର୍ଶ ସ୍ୱୀକୃତ ହୋଇଅଛି । ଏଣୁ ସତ୍ୟବାଦୀ ସାହିତ୍ୟ ସାଧନାର ମହତ୍ତ୍ୱ ଓ ତାହାର ସୁଦୂରପ୍ରସାରୀ ପ୍ରଭାବ ବିଶେଷ ବର୍ଣ୍ଣନୀୟ ।

କେହି କେହି ସତ୍ୟବାଦୀର ଏଇ ସ୍ୱଳ୍ପସମୟବ୍ୟାପୀ ସାହିତ୍ୟ ସାଧନାକୁ 'ସତ୍ୟବାଦୀ' ଯୁଗ ନାମରେ ଅଭିହିତ କରିବାର ପକ୍ଷପାତୀ । ମାତ୍ର ସତ୍ୟବାଦୀର ସାହିତ୍ୟ ସାଧକଗଣଙ୍କ ସାହିତ୍ୟ ସୃଷ୍ଟିର ବୈଶିଷ୍ଟ୍ୟ ତଥା ତାହାର ସମକାଳୀନ ଓ ପରବର୍ତ୍ତୀ ପ୍ରଭାବକୁ ବିଚାର କଲେ ଏହି ସମ୍ମିଳିତ ସାହିତ୍ୟସାଧକମାନଙ୍କୁ

ଯୁଗ ପ୍ରବର୍ତ୍ତକ ବା ଏଇ ସାଧନାକୁ ଓଡ଼ିଆ ସାହିତ୍ୟର "ସତ୍ୟବାଦୀ ଯୁଗ" ବୋଲି ଅଭିହିତ କରିବା ପ୍ରମାଦ ପୂର୍ଣ୍ଣ ମନେ ହୁଏ ।

ସତ୍ୟବାଦୀର ସମ୍ମିଳିତ ସାହିତ୍ୟ ସାଧକମାନଙ୍କ ମଧ୍ୟରୁ ଗୋପବନ୍ଧୁହିଁ ଉନ୍ନତତର ସୃଷ୍ଟିଶୀଳ ସାହିତ୍ୟିକ ପ୍ରତିଭାର ଅଧିକାରୀ ଥିଲେ । 'ଧର୍ମପଦ' 'ବନ୍ଦୀର ଆତ୍ମକଥା' 'କାରାକବିତା' 'ନଚିକେତା ଉପାଖ୍ୟାନ' 'ଗୋ-ମାହାତ୍ମ୍ୟ' 'ଅବକାଶଚିନ୍ତା' ପ୍ରଭୃତି କାବ୍ୟକବିତା ଓ ବହୁ ଚିନ୍ତାମୂଳକ, ମୌଳିକ ଭାବନା-ପ୍ରସୂତ ପ୍ରବନ୍ଧର ରଚୟିତା ଭାବେ ସେ ଓଡ଼ିଆ ସାହିତ୍ୟରେ ସ୍ମରଣୀୟ ହୋଇ ରହିବେ । ତାହାଙ୍କ ରଚିତ ପ୍ରବନ୍ଧାବଳୀ ସତ୍ୟବାଦୀ ପତ୍ରିକାର ସମ୍ପାଦକୀୟ ସ୍ତମ୍ଭମାନଙ୍କରେ 'ସମାଜ'ର ସମ୍ପାଦକୀୟ ସ୍ତମ୍ଭରେ ଓ ବିଭିନ୍ନ ଅଭିଭାଷଣଗୁଡ଼ିକରୁହିଁ ଆମ୍ଭେମାନେ ଅବଗତ ହୋଇଥାଉଁ । ସର୍ବଜନ-ବୋଧ୍ୟ ମାର୍ଜିତ ଗଦ୍ୟଶୈଳୀର ପ୍ରବର୍ତ୍ତକଭାବେ ଗୋପବନ୍ଧୁଙ୍କ କୃତିତ୍ୱ ମଧ୍ୟ ତାହାଙ୍କୁ ଆଧୁନିକ ଗଦ୍ୟ ସାହିତ୍ୟ କ୍ଷେତ୍ରରେ ଚିରସ୍ମରଣୀୟ କରି ରଖିବ ।

ସତ୍ୟବାଦୀର ଅନ୍ୟତମ ସାହିତ୍ୟ-ସାଧକ ନୀଳକଣ୍ଠ କୋଣାର୍କେ, ଖାରବେଳ, ପ୍ରଣୟିନୀ, ଦାସନାୟକ(କାବ୍ୟ),ଭକ୍ତଗାଥା (କବିତା) ଏବଂ ଆର୍ଯ୍ୟଜୀବନ, ଭାଷା ଓ ସାହିତ୍ୟ, ଓଡ଼ିଆ ସାହିତ୍ୟର କ୍ରମପରିଣାମ, ସଂସ୍କୃତ ଗୀତାର ଦ୍ୱନ୍ଦ୍ୱ ଭୂମିକା, ସଂସ୍କୃତ ଓ ସଂସ୍କୃତି ପ୍ରଭୃତି ପ୍ରବନ୍ଧ ଓ ସମାଲୋଚନାତ୍ମକ ସାହିତ୍ୟ ପୁସ୍ତକ ମଧ୍ୟ ରଚନା କରିଅଛନ୍ତି । ଏଇ ସମସ୍ତ ରଚନାବଳୀରୁ ନୀଳକଣ୍ଠଙ୍କ ଉନ୍ନତ ମୌଳିକ କବିପ୍ରତିଭା ଅପେକ୍ଷା ତାଙ୍କର ସୁଗଭୀର ପାଣ୍ଡିତ୍ୟ ବହୁଶାସ୍ତ୍ରଦର୍ଶିତା ବିଚାର-ବିଶ୍ଳେଷଣ-ମହତ୍ତ୍ୱର ପରିଚୟ ମିଳିଥାଏ ।

ଗଦ୍ୟର ପ୍ରକାଶ ରୀତିରେ ମଧ୍ୟ ସେ ଏକ ନୂତନ ଶୈଳୀ ନିୟୋଜିତ କରି ଆପଣାର ବୈଶିଷ୍ଟ୍ୟ ରକ୍ଷାକରିଅଛନ୍ତି ।

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ସମୃଦ୍ଧ ଓ ପରିପୁଷ୍ଟ କରିବାରେ ଗୋଦାବରୀଶ ସତ୍ୟବାଦୀ ସାହିତ୍ୟ ସାଧକମାନଙ୍କ ମଧ୍ୟରେ ଅଗ୍ରଣୀ । ରଚନାର ପରିମାଣ ଦୃଷ୍ଟିରୁ ଗୋଦାବରୀଶଙ୍କ ଦାନ ମଧ୍ୟ ସର୍ବାଧିକ । ସେ କଳିକା, କଣଳୟୁ, ଆଲେଖିକା,ଚୟନ, ଗୀତିଗୁଚ୍ଛ, ଗୀତାୟନ ପ୍ରଭୃତି କବିତା ସଂଗ୍ରହ, ପୁରୁଷୋତ୍ତମ ଦେବ ଓ ମୁକୁନ୍ଦଦେବ ନାଟକ, ୧୮୧୭, ଅଭିଗିମ୍ନା, ଘଟାନ୍ତର, ନିର୍ବାସିତ ପ୍ରଭୃତି ବିଦେଶୀ ଉପନ୍ୟାସ ଅବଲମ୍ବନରେ ରଚିତ ଉପନ୍ୟାସ, ନେପୋଲିୟନ ଓ ଦାସତ୍ୱମୋଚନ ଭଳି ଅନୂଦିତ ଜୀବନୀ ଗ୍ରନ୍ଥ, ବହୁ କ୍ଷୁଦ୍ର ଗଳ୍ପ, ଆତ୍ମଜୀବନୀ, (ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ) ପ୍ରବନ୍ଧ ଓ ବହୁ ଶିଶୁ ସାହିତ୍ୟ ରଚନାକରି ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଯାଇ ଅଛନ୍ତି ।

କୃପାସିନ୍ଧୁଙ୍କର ଅଳ୍ପ ବୟସରେ ବିୟୋଗ ହୋଇଥିଲେହେଁ ବହୁବିଧ ପ୍ରବନ୍ଧର ରଚୟିତା ହିସାବରେ ଓ କୋଣାର୍କ, ବାରବାଟୀ, ଓଡ଼ିଶାର ଇତିହାସ ପ୍ରଣେତାଭାବେ ସେ ଯଶସ୍ୱୀ । ୧୯୨୬ ମସିହାରେ ଏହି ପ୍ରତିଭାବାନ ସାହିତ୍ୟ ସେବୀ ତଥା ଐତିହାସିକଙ୍କର ଅକାଳ ମୃତ୍ୟୁ ଯୋଗୁଁ ଓଡ଼ିଆ ସାହିତ୍ୟ ଇତିହାସ ତଥା ଗବେଷଣାକ୍ଷେତ୍ର ତାହାଙ୍କ ଅମୂଲ୍ୟ ରଚନାବଳୀରୁ ଚିରଦିନପାଇଁ ବଞ୍ଚିତ ହେଲା ।

ସତ୍ୟବାଦୀ ସାହିତ୍ୟ ଗୋଷ୍ଠୀର ଅନ୍ୟତମ ସାଧକ ବାସୁଦେବ ମହାପାତ୍ର 'ଶାନ୍ତିଧାର', 'ଭବେଭୋଳା' ଏବଂ ଜାତୀୟତାପୂର୍ଣ୍ଣ ଐତିହାସିକ ଗଳ୍ପ-ସଂଗ୍ରହ 'ବୀର ଭରତ' ଓ ବହୁ ଶିଶୁ ଉପଯୋଗୀ

ପୁସ୍ତକ ରଚନା କରିଅଛନ୍ତି । ପଣ୍ଡିତ ଲିଙ୍ଗରାଜ ମିଶ୍ର ରାମାୟଣର ଅନୁବାଦ, କେତେକ ରାଜନୈତିକ ପ୍ରବନ୍ଧ, ଜୀବନୀ ଓ ଶିକ୍ଷାପ୍ରଦ ପୁସ୍ତକ ରଚନା କରିଅଛନ୍ତି ।

ସତ୍ୟବାଦୀ ସାହିତ୍ୟ ସାଧକମାନଙ୍କର ଏଇ ସମସ୍ତ ରଚନାବଳୀକୁ ଅନୁଧ୍ୟାନ କଲେ ଜଣାଯାଏ ଏମାନଙ୍କ ସମ୍ମିଳିତ ସାହିତ୍ୟ ସୃଷ୍ଟି ନିଶ୍ଚିତଭାବେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଅଛି । ମାତ୍ର ସତ୍ୟବାଦୀରୁ ସୃଷ୍ଟ ହୋଇଥିବା ତଥା ସତ୍ୟବାଦୀରେ ଶିକ୍ଷକଭାବେ ନିଯୁକ୍ତ ସାହିତ୍ୟ-ସାଧକମାନଙ୍କ ରଚନାବଳୀ ଯେ ଓଡ଼ିଆ ସାହିତ୍ୟର ଅଭିମୁଖ୍ୟକୁ ସମ୍ପୂର୍ଣ୍ଣ ପରିବର୍ତ୍ତିତ କରାଇ ନୂତନ ପରମ୍ପରା ଓ ପ୍ରଭାବ ସୃଷ୍ଟି କରିବାକୁ ସମର୍ଥ ହୋଇଛି, ଏହା ସତ୍ୟ ନୁହେଁ ।

ଗୋପବନ୍ଧୁ ପ୍ରଭୃତି ଜାତୀୟତାମୂଳକ ସାହିତ୍ୟ ସୃଷ୍ଟି କରୁଥିବା ସମୟରେ ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ଭିନ୍ନ ଦୃଷ୍ଟିକୋଣ ସମ୍ବଳିତ ପ୍ରଚୁର ସାହିତ୍ୟ ସୃଷ୍ଟି ହୋଇଛି । ନନ୍ଦକିଶୋର, ଚିନ୍ତାମଣି, ପଦ୍ମଚରଣ, କୁନ୍ତଳାକୁମାରୀ ପ୍ରଭୃତିଙ୍କ ଉପରେ ସତ୍ୟବାଦୀ ସାହିତ୍ୟର ସାମାନ୍ୟତମ ପ୍ରଭାବ ପଡ଼ିଥିବା ପରି ମନେ ହୁଏନାହିଁ । ସମକାଳୀନ ଲେଖକମାନଙ୍କ ଉପରେ ଶେଷୋକ୍ତ କବିମାନଙ୍କ ପ୍ରଭାବ ମଧ୍ୟ ଉପେକ୍ଷଣୀୟ ନୁହେଁ । ପରବର୍ତ୍ତୀକାଳରେ 'ସବୁଜ'ନାମିତ ସାହିତ୍ୟିକଗୋଷ୍ଠୀଙ୍କ ସାହିତ୍ୟାଦର୍ଶ ମଧ୍ୟ ସତ୍ୟବାଦୀର ସାହିତ୍ୟାଦର୍ଶଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଧର୍ମୀ । ଏହାଛଡ଼ା ସେ ଯୁଗର ସମସ୍ତ ଚେତନା କଣ ସତ୍ୟବାଦୀ ସାହିତ୍ୟରେ ରୂପାୟିତ ହୋଇ ପାରିଛି ? ଏଣୁ ସତ୍ୟବାଦୀ-ସାହିତ୍ୟ ପ୍ରସାରଣଶୀଳ ପ୍ରଭାବ ବିସ୍ତାର କରିବାକୁ ସମର୍ଥ ହୋଇପାରି ନାହିଁ କହିଲେ ଭୁଲ ହେବନାହିଁ ।

ରାଧାନାଥ ଥିଲେ କଳା ପାଇଁ କଳା (Art for Arts sake) ମତବାଦର ସମର୍ଥକ । ମାତ୍ର ରାଧାନାଥ-ସାହିତ୍ୟ ପ୍ରତି ପୃଷ୍ଠପ୍ରଦର୍ଶନ କରି ଆଦର୍ଶ ଲାଗି ସାହିତ୍ୟ ସୃଷ୍ଟି ସତ୍ୟବାଦୀ ସାହିତ୍ୟର ଉଦ୍ଦେଶ୍ୟ ହେଲା । ରାଧାନାଥଙ୍କ ରଚନାଶକ୍ତିକୁ ମଧ୍ୟ ଗୋପବନ୍ଧୁ ଓ ନୀଳକଣ୍ଠ ପ୍ରଭୃତି ସବୁପ୍ରଥମେ ହାର୍ଦ୍ଦିକ ସମର୍ଥନ ଜଣାଇ ପାରି ନଥିଲେ । ନୀଳକଣ୍ଠ 'କୋଣାର୍କେ' କାବ୍ୟରେ ସ୍ପଷ୍ଟଭାବେ ଏଣୁ ଲେଖିଥିଲେ—

ଘର ଛାଡ଼ି କମ୍ପା ଯିବେ ସେ ବୀରବାଳା ନାୟିକା
ଅନ୍ଧକାର ଭ୍ରମ ଗହଳେ ଭେଦି କ୍ଷୀଣ ଚନ୍ଦ୍ରିକା ।
× × × ×
କଲ୍ପନାର ଗାଙ୍ଗ ଧଉଳୀ ଏଇ ନୟନେ ନାଚେ
କହିଛି ସୁମରି ବାହାରେ ମୁହିଁ ଫେରାଅ ପଛେ ।

କବିବର ରାଧାନାଥଙ୍କୁ 'ବାହାରେ ସୁମରି ମୁହିଁ ଫେରାଇବାକୁ' ପରାମର୍ଶ ଦେଇଥିଲେ ହେଁ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ପ୍ରଭୃତି ପରୋକ୍ଷରେ ରାଧାନାଥଙ୍କଦ୍ୱାରା ହିଁ ପ୍ରଭାବିତ ହୋଇଛନ୍ତି । ଯେଉଁ ଜାତୀୟତାକୁ ସତ୍ୟବାଦୀ ସାହିତ୍ୟସାଧକମଣ୍ଡଳୀ କାବ୍ୟାଦର୍ଶଭାବେ ଗ୍ରହଣ କରିଥିଲେ ରାଧାନାଥ ସାହିତ୍ୟରେ ହିଁ ତାହାର ଆତ୍ମପ୍ରକାଶ ଅଭିବ୍ୟକ୍ତ ନାହିଁ । ବସ୍ତୁତଃ ରାଧାନାଥ ଓଡ଼ିଆ କାବ୍ୟକବିତା କ୍ଷେତ୍ରରେ ଜାତୀୟତାର ଆଦ୍ୟ କୃତି ବାର୍ତ୍ତାବହ । ସେ ଯାହାହେଉ, ତତ୍କାଳୀନ ଏହି ଜାତୀୟତା, ସ୍ୱଦେଶ ପ୍ରୀତି, ଜନସେବା ହିଁ ଭିନ୍ନ ମାନସିକ ଉପାଦାନ ଓ ପ୍ରବଣତାରେ ଗଠିତ ବରେଣ୍ୟ ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠ, କୃପାସିନ୍ଧୁ, ଲିଙ୍ଗରାଜ ପ୍ରଭୃତିଙ୍କୁ କେତେକ ବର୍ଷପାଇଁ ଏକତ୍ର କରାଇଥିଲା । ହୁଏତ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଏମାନଙ୍କୁ ପ୍ରତ୍ୟକ୍ଷଭାବେ ବାନ୍ଧି

କର୍ମରେ ତଥା ପରୋକ୍ଷ ଭାବରେ ବିବିଧ ସାହିତ୍ୟ ସୃଷ୍ଟିରେ ଉଦ୍‌ବୁଦ୍ଧ କରିଅଛି ।

ମାତ୍ର ୧୯୨୮ ଖ୍ରୀ: ଅ:ରେ ଗୋପବନ୍ଧୁଙ୍କ ମୃତ୍ୟୁ ପରେ ଏଇ ସଂଯୋଗସୂତ୍ର ଛିନ୍ନ ହେଲା ଓ ରାଜନୀତି ପ୍ରବାହରେ ସତ୍ୟବାଦୀର ଅବଶିଷ୍ଟ ମୁଖ୍ୟ ସାହିତ୍ୟସାଧକଗଣ ଦୂର ବିକ୍ଷିପ୍ତ ହୋଇପଡ଼ିଲେ । ତଥାପି ରାଜନୈତିକ ଜୀବନର ସ୍ୱଳ୍ପ ଅବକାଶରେ ହିଁ ନୀଳକଣ୍ଠ, ଗୋଦାବରୀଶ ସେମାନଙ୍କ ସାହିତ୍ୟ-ପ୍ରୀତିକୁ ଜୀବିତ ରଖିଥିଲେ । ନୀଳକଣ୍ଠଙ୍କର କବି ଜୀବନର ପରିସମାପ୍ତି ପ୍ରାୟ ସେଇ ସତ୍ୟବାଦୀରେହିଁ ଘଟିଥିଲା । ସତ୍ୟବାଦୀ ଛାଡ଼ି ସକ୍ରିୟ ରାଜନୀତିରେ ଯୋଗ ଦେଲା ପରେ ସେ ଆଉ କାବ୍ୟ କବିତା ରଚନା କରିନାହାନ୍ତି; ଗବେଷଣାତ୍ମକ ପ୍ରବନ୍ଧ ରଚନା, ଆଲୋଚନା, ପତ୍ରିକା ସମ୍ପାଦନା ପ୍ରଭୃତି କାର୍ଯ୍ୟରେହିଁ ସେ ଆପଣାକୁ ନିୟୋଜିତ କରିଅଛନ୍ତି । ମାତ୍ର କବି ଗୋଦାବରୀଶ ଆପଣାର କବିତ୍ୱକୁ କୌଣସିମତେ ଅନ୍ତିମ କାଳ ପର୍ଯ୍ୟନ୍ତ ବଞ୍ଚାଇ ରଖିଥିଲେ । ଗୋଦାବରୀଶ ଶେଷ ଜୀବନରେ ବହୁ କବିତା ରଚନା କରିଥିଲେ ହେଁ ତାହାଙ୍କ କବିତ୍ୱର ସର୍ବୋତ୍ତମ ବିକାଶ ସେଇ ସତ୍ୟବାଦୀ ସ୍କୁଲରେ ଥିବା ସମୟରେ ଓ ତାର ଅବ୍ୟବହିତ ପରେ ସିଂହଭୂମରେ ଶିକ୍ଷକତା କରୁଥିବା ସମୟରେ ଘଟିଥିଲା । 'କଳିକା', 'କିଶଳୟ', 'ଆଲେଖିକା' ଏଇ ସମୟର ରଚନା ।

ଗୋପବନ୍ଧୁଙ୍କ ଆଦର୍ଶ ଥିଲା ସରଳ ଭାଷାରେ ସର୍ବଜନ-ବୋଧ ସାହିତ୍ୟ ସୃଷ୍ଟି କରିବା । ଏତାଦୃଶ ସାହିତ୍ୟକୁ ସେ 'ଲୌକିକ ସାହିତ୍ୟ' ନାମରେ ଅଭିହିତ କରିଅଛନ୍ତି । ଏଇ ସମ୍ପର୍କରେ ସେ ଲେଖିଥିଲେ—'ଲୌକିକ ସାହିତ୍ୟ ବିନା ଜାତୀୟ ଉନ୍ନତି ଅସମ୍ଭବ । ସମାଜର କେତେକ ଉଚ୍ଚ ଶ୍ରେଣୀର ଲୋକେ ସମଗ୍ର ଜାତି ହୋଇ-

ଥିଲେ ଲୌକିକ ସାହିତ୍ୟର ପ୍ରୟୋଜନ ହୁଅନ୍ତା ନାହିଁ । ମାତ୍ର ଯେଉଁମାନେ ହଳରେ ହଳ କରୁଛନ୍ତି, ବଗିଚାରେ ପାଣି ଦେଉଛନ୍ତି, ନାଆ ବୋହୁଛନ୍ତି, ଜଙ୍ଗଲରେ କାଠ କାଟୁଛନ୍ତି, ତନ୍ତଶାଳରେ ଲୁଗା ବୁଣୁଛନ୍ତି ସେହିଇ ଶ୍ରେଣୀର ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ଅସଂଖ୍ୟ ଲୋକ-ସାଧାରଣତଃ ଜାତିର ଗଣ୍ଡି । ଉଚ୍ଚ ଶ୍ରେଣୀର କେତେକ ଶିକ୍ଷିତ ଲୋକେ ଜାତିର ମସ୍ତିଷ୍କ ହୋଇପାରନ୍ତି, ମାତ୍ର ଏହି ସାଧାରଣଙ୍କ ମଧ୍ୟରେ ଜାତିର ହୃଦୟ, ଜାତିର ଆତ୍ମାର ସ୍ଥାନ । × × × ଆମ୍ଭମାନଙ୍କ ସାହିତ୍ୟିକ ଉଦ୍ୟମରୁ ଲୋକସାଧାରଣଙ୍କୁ ବାଦ ଦେଲେ ଜାତୀୟ ସାହିତ୍ୟ ଅସମ୍ଭବ ହେବ । ଉଚ୍ଚ ଭାବ ଏବଂ ଉଚ୍ଚ ଭାଷାରେ ଯେ ସାହିତ୍ୟ ଲେଖା ନ ହେବ, ତାହା କେହି କହୁନାହିଁ । ତାହା ଯେତେ ଅଧିକ ଲେଖା ହୁଏ, ଜାତିର ଏବଂ ଭାଷାର ସେତେ ଗୌରବ । କିନ୍ତୁ ସେ ସବୁ ଭାବରାଶି ସରଳ ସ୍ୱଚ୍ଛ ପ୍ରଣାଳୀରେ ନିମ୍ନ ସ୍ତରକୁ ପ୍ରବାହିତ ନ ହେଲେ ତାହା ସମଗ୍ର ଜାତିର ସମ୍ପତ୍ତି ହେଲା ବୋଲି କୁହାଯାଇ ପାରିବ ନାହିଁ ।"

(ସତ୍ୟବାଦୀ— ୩ୟ ଖଣ୍ଡ ୪ର୍ଥ ସଂଖ୍ୟା)

ଏତଦ୍‌ବ୍ୟତୀତ ସମାଲୋଚନା ସାହିତ୍ୟର ଅଭିବୃଦ୍ଧି ମଧ୍ୟ ଗୋପବନ୍ଧୁଙ୍କର ଅନ୍ୟତମ ଅଭିପ୍ରାୟ ଥିଲା । ଏଣୁ ସେ ଲେଖିଥିଲେ— "ସମାଲୋଚନାର ଆଦର କରିବାକୁ ହେବ । ସାହିତ୍ୟସାଧନାର ଏହା ପ୍ରଥମ ସୋପାନ । ଆମ୍ଭେମାନେ ସାହିତ୍ୟରେ ଏହି ବିଭାଗ ଜାଗ୍ରତ କରିବା ଉଦ୍ଦେଶ୍ୟରେ ପ୍ରଥମେ 'ସତ୍ୟବାଦୀ' ଆରମ୍ଭ କରିଥିଲୁ । ମୁଖ୍ୟତଃ ସତ୍ୟବାଦୀରେ ତାହାହିଁ ପ୍ରକାଶ କରିଥିଲୁ । କିନ୍ତୁ କେତେକ ବନ୍ଧୁ ଲୋକଙ୍କ ଛଡ଼ା ଅନ୍ୟମାନେ ତାହାର ସମ୍ମାନ କଲେ, ମାତ୍ର ଆସ୍ୱାଦନ କଲେ ନାହିଁ ।"

( 'ସତ୍ୟବାଦୀ' ୬ଷ୍ଠ ବର୍ଷ ୧ମ ସଂଖ୍ୟା )

ଗୋପବନ୍ଧୁ ଏଇ ଆଦର୍ଶକୁ ଅନୁସରଣ କରି ଯେ ସାହିତ୍ୟ ରଚନାରେ ବ୍ରତୀ ଥିଲେ କହିବା ଅନାବଶ୍ୟକ । ନୀଳକଣ୍ଠ ଆଲୋଚନାତ୍ମକ ପ୍ରବନ୍ଧ ରଚନା କରିବାରେ ଏବଂ ଗୋଦାବରୀଶ ସର୍ବଜନବୋଧ ସରଳ ଭାଷାରେ କବିତା, କଥା-ସାହିତ୍ୟ ରଚନାରେ ଆତ୍ମନିୟୋଗ କରିଥିଲେ । ନୀଳକଣ୍ଠ କାବ୍ୟ-କବିତା-କ୍ଷେତ୍ରରେ ସରଳତା ସମ୍ପାଦନ କରିବାକୁ ସମର୍ଥ ହୋଇ ପାରି-ନାହାନ୍ତି କିମ୍ବା ତାହାଙ୍କର ରଚନା ସର୍ବଜନ ବୋଧଗମ୍ୟ ନୁହେଁ । ଏଣୁ ବିଭିନ୍ନ ମାନସିକ-ପ୍ରବଣତା ସମ୍ପନ୍ନ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ପ୍ରଭୃତିଙ୍କର ସାହିତ୍ୟ-ସୃଷ୍ଟି ପରସ୍ପରଠାରୁ ବିଭିନ୍ନ ହୋଇପଡ଼ିଛି । ଅବଶ୍ୟ ଏଇ ବିଭିନ୍ନତା ମଧ୍ୟରେ ଏକତ୍ୱର ଅଭାବ ନଥିଲା ହେଁ ଏଣୁ ସାହିତ୍ୟ-ସାଧକମାନଙ୍କ ରଚନାରେ ବିଭିନ୍ନତା ଓ ସ୍ୱାତନ୍ତ୍ର୍ୟ ଅଧିକ ସ୍ପଷ୍ଟ ।

କୃପାସିନ୍ଧୁ ଓ ଗୋପବନ୍ଧୁଙ୍କର ଅକାଳ ବିୟୋଗ ପରେ ନୀଳକଣ୍ଠ, ଗୋଦାବରୀଶ ପ୍ରଭୃତି ବିଚ୍ଛିନ୍ନ ଭାବରେ ସାହିତ୍ୟ ସୃଷ୍ଟି କରିଛନ୍ତି । ସତ୍ୟବାଦୀ ବନ-ବିଦ୍ୟାଳୟ ଭାଙ୍ଗିଯିବା ଓ ସତ୍ୟବାଦୀର ସାହିତ୍ୟିକଗୋଷ୍ଠୀ ରାଜନୀତି ପ୍ରବାହରେ ଦୂର ବିକ୍ଷିପ୍ତ ହେବାର ଅବ୍ୟବହିତ ପରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଦେଖା ଦେଇଥିଲା ସ୍ୱପ୍ନବାଦୀ 'ସବୁଜ' ଏବଂ ମାର୍କସୀୟ-ଦର୍ଶନ-ପ୍ରଭାବିତ ଭାବଧାରାର ପରିପ୍ଲାବନ । ଏଣୁ ସତ୍ୟବାଦୀ ସାହିତ୍ୟର ସୁଦୂରପ୍ରସାରୀ ପ୍ରଭାବ ସମ୍ପର୍କରେ ସନ୍ଦେହାନ୍ୱିତ ହେବା ସ୍ୱାଭାବିକ । ମାତ୍ର ପନ୍ଦର ବର୍ଷ ପାଇଁ ଓଡ଼ିଆ ସାହିତ୍ୟରେ ଗୋଟାଏ 'ଯୁଗ' ଦେଖା ଦେଇ କୌଣସି ବ୍ୟାପକ ପ୍ରଭାବ ବିସ୍ତାର ନ କରି ଅଚିରେ ବିଦାୟ ନେଇଛି କହିବା ମଧ୍ୟ ସମୀଚୀନ ନୁହେଁ ।

ଯେଉଁ ଜାତୀୟତା, ଆଦର୍ଶବାଦିତା ଓ ସ୍ୱଦେଶର ଗୌରବାବହ ଐତିହାସିକ ବା କିମ୍ବଦନ୍ତୀମୂଳକ ବିଷୟକୁ ଅବଲମ୍ବନ କରି ରୂପଦାନ କରିବାକୁ ସତ୍ୟବାଦୀ ସାହିତ୍ୟର ବୈଶିଷ୍ଟ୍ୟ ସ୍ୱରୂପ ଉପସ୍ଥାପିତ କରାଯାଇ ଥାଏ, ସେହି ସବୁ ସାହିତ୍ୟାଦର୍ଶ ସତ୍ୟବାଦୀ ସାହିତ୍ୟିକମାନଙ୍କ ବହୁ ପୂର୍ବରୁ ରାଧାନାଥ, ମଧୁସୂଦନ, ଗଙ୍ଗାଧର, ଫକୀରମୋହନ ପ୍ରଭୃତିଙ୍କଦ୍ୱାରା ଓଡ଼ିଆ ସାହିତ୍ୟକ୍ଷେତ୍ରରେ ପ୍ରତିଷ୍ଠିତ ହୋଇଅଛି । ରାଧାନାଥ ଐତିହାସିକ ତଥା କିମ୍ବଦନ୍ତୀମୂଳକ ବିଷୟକୁ ସ୍ୱ-କଳ୍ପନାରେ ଅନୁରଞ୍ଜିତ ଓ ପରିବର୍ତ୍ତିତ କରି ଉପସ୍ଥାପିତ କରିଥିଲେ ହେଁ ତଦ୍ୱାରା ଉନ୍ନତ ଶିଳ୍ପ ସୃଷ୍ଟି କରିବାକୁ ସମର୍ଥ ହୋଇଅଛନ୍ତି । ରାଧାନାଥଙ୍କ ଅଧିକାଂଶ କାବ୍ୟରେ ଆଦର୍ଶ ପ୍ରତିଷ୍ଠା ପରିବର୍ତ୍ତେ ବାସ୍ତବ ଜଗତରେ ଭୋଗର ସୌନ୍ଦର୍ଯ୍ୟ, ପରିଣାମ ବର୍ଣ୍ଣିତ ହୋଇଅଛି । ଭୋଗ ଓ ତ୍ୟାଗ ଉଭୟକୁ ନେଇ ମଣିଷର ଜୀବନ ସୁନ୍ଦର ଓ ସାର୍ଥକ । ମାତ୍ର ସତ୍ୟବାଦୀ ସାହିତ୍ୟିକମଣ୍ଡଳୀ, ଭୋଗ ଅପେକ୍ଷା ତ୍ୟାଗର ଗୌରବ ପ୍ରତିପାଦନ କରିବାକୁ ସମଧିକ ଯତ୍ନଶୀଳ ଥିଲାପରି ଜଣାପଡ଼େ । ସେଥିପାଇଁ ଆତ୍ମତ୍ୟାଗର ଜ୍ୱଳନ୍ତ ମହିମା ପ୍ରଦର୍ଶନାର୍ଥେ ଗୋପବନ୍ଧୁ 'ଧର୍ମପଦ' ରଚନା କରିଥିଲେ । ନୀଳକଣ୍ଠଙ୍କ 'କୋଣାର୍କେ' କାବ୍ୟରେ ମଧ୍ୟ ସେହିପରି ସଂଯମ ଓ ତ୍ୟାଗର ମହିମା ଉଦ୍‌ଘୋଷିତ । ଗୋଦାବରୀଶଙ୍କ ରଚନାବଳୀରେ ମଧ୍ୟ ଆଦର୍ଶବାଦିତାର ଅଭାବ ନାହିଁ । କର୍ମହିଁ ଥିଲା ତାହାଙ୍କ ଜୀବନର ଲକ୍ଷ୍ୟ, ଦର୍ଶନ ।

"ସାଧି ଯାଉଅଛି ନିତି ପୁଲକିତ ମନେ
ପରାଣ ଦେବତା ପେଷିଛନ୍ତି ଯେ ଜୀବନେ,
କର୍ମକୁ କରିଛି ଯହିଁ ପ୍ରାଣର ପ୍ରତିମା
ଦେଖୁଁଛି କି ଆନ ଅଛି ମୋର କର୍ମବିନା ?

କର୍ମେ ମୁଁ କରିବି ଜାଣୁ ଏ ଅଙ୍ଗ ନିପାତ
ସମ୍ପଦ, ବିପଦ କାଳେ ତ୍ରୋଗ ନ ବଢ଼ାଇ ହାତ ।"

× × ×

—ପ୍ରବାସ ପ୍ରତ୍ୟେତ (ଗୀତାୟନ)

ଏହି କର୍ତ୍ତବ୍ୟର ହେତୁ ଘୋଷଣାକରି ଗୋପବନ୍ଧୁ ଲେଖି-
ଥିଲେ—

'ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ କିଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।'
(ଧର୍ମପଦ)

ଗୋପବନ୍ଧୁ ଓ ଗୋଦାବରୀଶ ଗୀତି-କବିଭାବେ ଓଡ଼ିଆ ସାହିତ୍ୟରେ ଚିରସ୍ମରଣୀୟ । ଉଭୟଙ୍କ ଗୀତି-କବିତାରେ ପ୍ରକୃତି ଅପେକ୍ଷା ଜୀବନ ପ୍ରତି କବି ମନର ସମଧିକ ଅନୁରକ୍ତି ପ୍ରତିଫଳିତ । ସଖ୍ୟ, ମମତାର ଆକର୍ଷଣ, ମାନବିକ ପ୍ରୀତି, ସମବେଦନା, ଦୁର୍ଗତ ପ୍ରତି ଅନୁକମ୍ପା ଉଭୟଙ୍କ କବିତାକୁ ରସମୟ କରିଅଛି । ଜୀବନରେ କର୍ମୀ ଓ ଶିକ୍ଷକଭାବେ ଉଭୟେ ବହୁ ତରୁଣଙ୍କର ସଖ୍ୟ, ମମତାରେ ଆବଦ୍ଧ ହୋଇଥିଲେ । ଏଣୁ ଉଭୟଙ୍କ କବିତାରେ ତାହାର ଗଭୀର ପ୍ରଭାବ ପରିଲକ୍ଷିତ ହୁଏ । ନାରୀର ପ୍ରଣୟ-ଭାବନା ବା ଆଧୁନିକ କବି ମାନସିଂହଙ୍କ କବିତା ପରି ପରକୀୟା ପ୍ରୀତିର ଉତ୍କଟ, ନଗ୍ନ ରୂପ ଏହି କବିମାନଙ୍କ କାବ୍ୟ-କବିତାରେ କୁତ୍ରାପି ପରିଲକ୍ଷିତ ହୁଏନାହିଁ । ପରନ୍ତୁ ଏହି ଦୁଇ କବିଙ୍କ ରଚନା ସୁଗଭୀର ମାନବ ପ୍ରୀତିରେ ରସାଣିତ, କରୁଣାରେ କୋମଳ ଓ ମମତାରେ ସୁସ୍ନିଗ୍ଧ । ବିଶେଷତଃ ଶିକ୍ଷକ ଓ ବିଦ୍ୟାର୍ଥୀର ମଧୁର ସସ୍ନେହ ସମ୍ପର୍କକୁ ନେଇ ଗୋଦାବରୀଶଙ୍କ ଭଳି ଅନ୍ୟ କୌଣସି ଉତ୍କଳୀୟ କବି ସରସ

ମନୋଜ୍ଞ କବିତା ଲେଖିଥିଲେ ଭଳି ମନେ ହୁଏନାହିଁ । ସତ୍ୟବାଦୀ-ବନ-ବିଦ୍ୟାଳୟର ମୁକ୍ତ ପରିବେଶ, ସରଳ ବିଦ୍ୟାର୍ଥୀଙ୍କ ସହ ମଧୁର ସମ୍ପର୍କକୁ ଉପଜୀବ୍ୟ କରି 'କାକାଳ', 'କାରାଳୟ'ର ଅଧିକାଂଶ କବିତା ରଚିତ । ସତ୍ୟବାଦୀ ସ୍କୁଲର ଜନୈକ ଛାତ୍ରର ଆକସ୍ମିକ ବିୟୋଗରେ ଗୋଦାବରୀଶଙ୍କ କବିଚିତ୍ତ କିପରି ବେଦନା ବିଧୁର, ମର୍ମାହତ ହୋଇଛି ତାହା ଏଥିରୁ ସହଜରେ ଅନୁମେୟ ।

'ରୋଗ ଶେଯ ପାଶେ ବାବୁ ହେ ଗୁହାଁଥିଲ ମୁଁ ବସି
କ୍ଷଣୁ କ୍ଷଣେ ପୁଣି ବଦନ ଆନ ଆସିଲ୍ ଦିଶି ।

× × ×

ମୁହିଁ ପାଶେ ବସି ରହିଲି ଏଣେ ନିଠୁର ପରି
ନିରେଖିଲି ଉଡ଼ି ଯିବାର ଶେଷ ପବନ ଧାରି ।
ନିଜ ହାତେ ଧରୁ ଭୂଇଁରେ କରି ଦେଲି ଅନ୍ତିମ
ନିଜ କାନ୍ଧେ ବହି ନେଲି ମୁଁ କାହିଁ ବନ ଭିତର ।
ନିଜେ ମୁହିଁ ଚିତା ଅନଳେ ଦେଲି ପରିତେ ଜାଳି
ଯେତେ ଭୁମ ଜଳା ଚିତାରେ ହେବେ ଥାଆନ୍ତା ଜଳି ।
ବନ୍ଧୁ ଗଣ ମେଳେ ବାବୁ ହେ ନେଲି ମଜ୍ଜନେ ବହି
ଫେରିଲି ଯା ପ୍ରାଣପ୍ରତିମା କାହିଁ ବିସର୍ଜି ଦେଇ ।
ସେ ସକଳ କଥା ଏବେ ମୁଁ ମନେ ହେଉଛି ଭଲ
ଆଉ ଥରେ ହେଲେ ତୁମରି ସେବା ଥାଆନ୍ତା କରି ।'
—ନିମିଷକେ ଦେଖା (କାରାଳୟ)

ଗୋପବନ୍ଧୁ ସେହିପରି 'ଜଣେ ଆଜୀବନ ସହକର୍ମୀଙ୍କ' ଉଦ୍ଦେଶ୍ୟରେ ଆବେଗପ୍ଲାବିତ ହୃଦୟରେ 'ବ୍ୟଥିତ ପ୍ରାଣର ଅନ୍ତିମ

ଅଶ୍ରୁ' ତାଳନ୍ତି । 'ଜୀବନ ନିଶାର ବାଳି' ନୁହେଁ ବା ସ୍ନେହ, ପ୍ରୀତି 'ମରୁର ମରୀଚିକା' ନୁହେଁ—ପ୍ରିୟ ବ୍ୟକ୍ତି ଲାଗି ତ୍ୟାଗରେ, ଆତ୍ମଦାନରେ ପ୍ରେମ ସାର୍ଥକ ହୁଏ—ଗୋପବନ୍ଧୁଙ୍କ ଜୀବନରେ ଏହା ସତ୍ୟ ହୋଇଛି । ତାଙ୍କର ପ୍ରେମ ସମସ୍ତ ସଙ୍କୀର୍ଣ୍ଣତାରୁ ମୁକ୍ତ ହୋଇ ବହୁ ବ୍ୟାପକ ଓ ଊର୍ଦ୍ଧ୍ୱଗାମୀ ହୋଇଛି—ବ୍ୟକ୍ତିଗତ ସ୍ତରରୁ ବହୁଜନ ଉଦ୍ଦେଶ୍ୟରେ ନିବେଦିତ ହୋଇଛି—ସମଗ୍ର ଜାତିପାଇଁ ତ୍ୟାଗ ଓ ଆତ୍ମଦାନରେ ପ୍ରଦୀପ୍ତ, ମହିମୋଜ୍ଜ୍ୱଳ ହୋଇଛି । ବନ୍ଦୀ ଅବସ୍ଥାରେ ତାଙ୍କର କବିମାନସ ସମଗ୍ର ଉତ୍କଳର ପ୍ରକୃତି ଓ ଜନତାକୁ ସସ୍ନେହ ଆଲିଙ୍ଗନରେ ଆବଦ୍ଧ କରିଛି—ଏହାହିଁ ଗୋପବନ୍ଧୁଙ୍କ ଜାତି ପ୍ରେମ । ଜାତିର ଅନ୍ତରାତ୍ମାକୁ ସେ ଯଥାର୍ଥତଃ ଉପଲବ୍ଧି କରିଥିଲେ । ଏଣୁ 'ବନ୍ଦୀର ଆତ୍ମକଥା' ଯଥାର୍ଥତଃ ବନ୍ଦୀ ଓଡ଼ିଆ ଜାତିର ମର୍ମ କଥାରେ ପରିଣତ ହୋଇଛି ।

ଗୋପବନ୍ଧୁଙ୍କ ପ୍ରକୃତି ପ୍ରୀତି, ମାନବ ପ୍ରୀତି, ସ୍ୱଦେଶ ପ୍ରୀତି ସମସ୍ତ ଯେପରି ଏକ ସୂତ୍ରରେ ଗ୍ରଥିତ । ଗୋପବନ୍ଧୁ ଏ ଦେଶର ଆତ୍ମାକୁ ଜନ-ଜୀବନର ବ୍ୟଥା, ବେଦନା, ଆଶା ଆନନ୍ଦକୁ ଯେପରି ହୃଦୟଙ୍ଗମ କରିଥିଲେ,ସେପରି ଦରଦୀ ମନ ଦେଇ ଏ ଜାତିକୁ ଭଲ ପାଇଥିଲେ ତାର ତୁଳନା ନାହିଁ । ତେଣୁ ଓଡ଼ିଆ ସାହିତ୍ୟରେ ସେହି ଅକୃତ୍ରିମ ସରଳ ପ୍ରାଣସ୍ପର୍ଶୀ ଅଭିବ୍ୟକ୍ତି ଅତୁଳନୀୟ ହୋଇ ରହିଛି—

'ଦେଖିଛି ଉତ୍କଳେ ଯେ ଦୃଶ୍ୟ ନୟନେ
ତରୁଏ ତା' ଭୂତ ପରୀଏ ଶୟନେ
କେତେ କେତେ ଋଷୀ ଭିକ୍ଷୁ ଭଲ ଲୋକ
ନପାନ୍ତି ଦି'ବେଳା ପେଟପୂରା ତୋକ

ଦେହେ ନାହିଁ ମାଂସ ହୋଇଲୁଛି କଣ୍ଠା
ଅନାହାରେ ଆହା ନ ଉଠଇ ଅଣ୍ଟା
ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।'

(ବନ୍ଦୀର ଆତ୍ମକଥା)

ଦୁର୍ଭିକ୍ଷ ପୀଡ଼ିତ, ଶ୍ରୀହତ ଉତ୍କଳର ଏପରି ଆଲେଖ୍ୟ ଅଙ୍କନ କରିବାରେ ଏକା ଗୋପବନ୍ଧୁହିଁ ସମର୍ଥ । ଗୀତି-କବିତାରେ ବାସ୍ତବତାର, ସମାଜ ସଚେତନତାର ସ୍ୱର ଗୋପବନ୍ଧୁଙ୍କ ପୂର୍ବରୁ ଫକୀରମୋହନ, ଗୋବିନ୍ଦ ରଥ ପ୍ରଭୃତିଙ୍କ ରଚନାବଳୀରେ ଧ୍ୱନିତ ହୋଇଥିଲେ ହେଁ ତାହା ଗୋପବନ୍ଧୁଙ୍କ ପରି ସୁଗଭୀର, ବଳିଷ୍ଠ ବା ବୈପ୍ଲବିକ ନୁହେଁ ।

ସତ୍ୟବାଦୀର କବିମାନଙ୍କ ରଚନାବଳୀରେ ଅଲୌକିକତା ଅଙ୍ଗାଦ୍ରିଯୁ ପରିପୂର୍ଣତା, ଅତ୍ୟଧିକ କଳ୍ପନାପ୍ରବଣତା ପରିବର୍ତ୍ତେ ବାସ୍ତବତାହିଁ ଅଧିକ ଉପଲବ୍‌ଧ ହୁଏ । ସମସ୍ତ କବିମାନଙ୍କ ରଚନାବଳୀରେ ତେଣୁ ସ୍ୱଦେଶର ମୁକ୍ତିପିପାସା, ବିଦେଶୀ ଶାସନର ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦର ବାଣୀ ଅଭିବ୍ୟକ୍ତ । ସ୍ୱଦେଶର କୁସଂସ୍କାର ଦୂରୀକରଣାର୍ଥେ ଗୋପବନ୍ଧୁ ଓ ଗୋଦାବରୀଶଙ୍କ ରଚନାବଳୀରେ ସଂସ୍କାରକ ମନୋବୃତ୍ତିର ଅଭାବ ନାହିଁ । ଗୋଦାବରୀଶଙ୍କ ଲେଖାରେ ତେଣୁ ସ୍ଥାନେ ସ୍ଥାନେ ଏହି ଉଦ୍ଦେଶ୍ୟରେ ବ୍ୟଙ୍ଗାତ୍ମକତା ଫୁଟି ଉଠିଛି । ପୁରୀ ମୁକ୍ତି ମଣ୍ଡପରେ ସମବେତ ଅଜ୍ଞ ବ୍ରାହ୍ମଣମାନଙ୍କୁ ସମ୍ବୋଧନ କରି ତେଣୁ ସେ ଲେଖିଥିଲେ—

'ପାହୁଲ ଅଧଲି ଅର୍ଜିବାର ଲୋଭେ
ଭାଇ ବନ୍ଧୁ ଧରି ତହିଁ

ମୋଗଲ ଶାସନରେ ଯେତେ ଗୋଦାବରୀ ଲୋ
ରୁଣ୍ଡ ହୋଉଛନ୍ତି ଯାଇ ।
ନାଆଁ ଲେଖିବାକୁ ଆସେ କି ନ ଆସେ
ପଣ୍ଡିତ ଜଣକୁ ଜଣ
ଦେଖି କୃଷ୍ଣବର୍ତ୍ତୁ ମସ୍ତକ ବଢ଼ାଇ
କାଢ଼ନ୍ତି ଗାରିମା ଗୁଣ ।'

( ଗ୍ରାମ୍ୟମାଧବ—ଆଲେଖିକା )

ଏହିପରି କବି ଓ କର୍ମୀର ଅପୂର୍ବ ସମନ୍ୱୟ ଘଟିଛି ଗୋପବନ୍ଧୁ ଓ ଗୋଦାବରୀଶଙ୍କ ଜୀବନରେ ତଥା ସେମାନଙ୍କର ରଚନାବଳୀରେ । ଏଣୁ କବି ଦେଶବାସୀଙ୍କ କଲ୍ୟାଣ କାମନାରେ ବହିଁଛନ୍ତି ସ୍ୱରାଜ୍ୟ । ଗୋପବନ୍ଧୁଙ୍କ ଲେଖାରେ ତେଣୁ ତାଙ୍କର ହୃଦୟର ବାଣୀ ଅମର ରୂପ ଲାଭ କରିଛି—

'ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା ପଥେ ଢଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।'

( ବନ୍ଦୀର ଆତ୍ମକଥା )

ଏହି ସମାଜ ସଂସ୍କାର ଯୋଗୁ ସତ୍ୟବାଦୀର ସାହିତ୍ୟ-ସାଧକମାନଙ୍କୁ ଜୀବନରେ କମ୍ ଦୁର୍ଯୋଗ ଭୋଗ କରିବାକୁ ପଡ଼ିନାହିଁ ।

ତଥାପି ନିର୍ଭୀକଭାବେ ମତ ରଖିବାଠାରୁ ଆରମ୍ଭ କରି ସାର୍ବଜନୀନ ସଂକ୍ରତଭୋଜନ, ଜାତିଗତ ଅଭିମାନ ଓ ଉପବୀତ ତ୍ୟାଗ ପ୍ରଭୃତି କାର୍ଯ୍ୟାବଳୀରେ ସେମାନେ ଆତ୍ମନିୟୋଗ କରିଛନ୍ତି । ମାତ୍ର ଏହି ଜାତୀୟତା, ସଂସ୍କାରଲିପ୍ସା ଅପେକ୍ଷା ଗୋଦାବରୀଶଙ୍କ କବିତା-ବଳୀରେ ରମ୍ୟତାବୋଧ ଓ ସୌନ୍ଦର୍ଯ୍ୟପ୍ରିୟତାର ଅଭିବ୍ୟକ୍ତି ଅଧିକ ପରିମାଣରେ ପରିଲକ୍ଷିତ ହୋଇଥାଏ ।

ପଣ୍ଡିତ ନୀଳକଣ୍ଠ ସାହିତ୍ୟରେ ଉନ୍ନତ ହୃଦୟ ଅପେକ୍ଷା ଉନ୍ନତତର ମସ୍ତିଷ୍କର ଅଧିକାରୀ । ଏଣୁ ଗୀତି-କବିତା ପରିବର୍ତ୍ତେ ଦୀର୍ଘ କଥାବସ୍ତୁ ସମ୍ବଳିତ କାବ୍ୟରଚନା, ଗବେଷଣାତ୍ମକ ନିବନ୍ଧ ଓ ପ୍ରବନ୍ଧ ରଚନା ହୋଇଛି ତାଙ୍କର ସ୍ୱଧର୍ମ । ଏପରିକି 'ଗ୍ରାମଚଣ୍ଡୀ-ଠାରେ ରାତି' ଭଳି ଅନୁଭୂତି-ପ୍ରଧାନ ବିଷୟ ମଧ୍ୟ ତାହାଙ୍କ ଲେଖନୀରେ ତଥ୍ୟ ସମ୍ବଳିତ ପଦ୍ୟରେ ପରିଣତ ହୋଇଅଛି । 'ଦାସ ନାୟକ' ଏବଂ 'ପ୍ରଣୟିନୀ' ଟେନିସନଙ୍କ 'ଦି ପ୍ରିନ୍‌ସେସ୍' ଓ 'ଏନୋକ୍ ଆର୍ଡେନ୍' କାବ୍ୟର ଅବଲମ୍ବନରେ ରଚିତ । ଏହି ଅନୁସରଣରେ ମଧ୍ୟ ନୀଳକଣ୍ଠଙ୍କର ମୌଳିକତା ସ୍ୱୀକାର୍ଯ୍ୟ । କୋଣାର୍କେ ଓ ଅସମ୍ପୂର୍ଣ୍ଣ କାବ୍ୟ 'ଖାରବେଳ'ରୁ କବିଙ୍କର କଳ୍ପନା, ବର୍ଣ୍ଣନା ପଟୁତା, ଶବ୍ଦାଡମ୍ବର, ବହୁ ଶାସ୍ତ୍ରଦର୍ଶିତା, କାବ୍ୟ ନିର୍ମାଣ ପରିପାଟୀଗତ ଉତ୍କର୍ଷ ପ୍ରଭୃତି ବିଷୟରେ ପାଠକ ଅବହିତ ହେଲେ ହେଁ ଉକ୍ତ କାବ୍ୟରେ କବି ଅନ୍ତଃପ୍ରକୃତିର ତଥା ନରନାରୀଙ୍କ ଗଭୀର ହୃଦୟାବେଗର ଚିତ୍ରଣରେ ସମ୍ପୂର୍ଣ୍ଣ ସମର୍ଥ ହୋଇ ପାରିଛନ୍ତି ବୋଲି କୁହାଯାଇ ପାରିବ ନାହିଁ । ସେହିପରି ଗୋପବନ୍ଧୁ ଓ ଗୋଦାବରୀଶ ସେମାନଙ୍କ ରାଜନୈତିକ ଜୀବନରୁ ରସ ଆହରଣ କରି ସାହିତ୍ୟ-ରଚନା କରିବାକୁ ସମର୍ଥ ହୋଇଥିଲେ ହେଁ ନୀଳକଣ୍ଠ

ତାହାଙ୍କ ରାଜନୈତିକ ଜୀବନକୁ ସାହିତ୍ୟରେ ଉପଯୋଗ କରିବାରେ ସମର୍ଥ ହୋଇଛନ୍ତି ବୋଲି କୁହାଯାଇ ପାରିବ ନାହିଁ । ସାହିତ୍ୟ-ସାଧନାରେ ଆପଣାକୁ ବନ୍ଦିଯୁକ୍ତ ରଖିଥିଲେ ନୀଳକଣ୍ଠଙ୍କ ପ୍ରତିଭା ଯେ ଓଡ଼ିଆ ସାହିତ୍ୟକୁ ଆହୁରି ପୁଷ୍କଳ, ଋଦ୍ଧିମନ୍ତ କରିପାରିଥାନ୍ତା ଏହା ଆଶା କରିବା ସ୍ୱାଭାବିକ । ଏଣୁ ନୀଳକଣ୍ଠ ଏ ଯୁଗର ଏକ ଅପୂର୍ଣ୍ଣ ମହାକାବ୍ୟ । ସକ୍ଷ୍ମଦର୍ଶୀ ସାହିତ୍ୟ ସମାଲୋଚକ, 'ନବଭାରତ'ର ସୁଦକ୍ଷ ସମ୍ପାଦକଭାବେ ତାହାଙ୍କର ଦାନ ମଧ୍ୟ ଅବିସ୍ମରଣୀୟ । ବିଶ୍ୱନାଥ-କରଙ୍କ ପରେ ନୀଳକଣ୍ଠ ହିଁ ଓଡ଼ିଶାର ସର୍ବଶ୍ରେଷ୍ଠ ପତ୍ରିକା-ସମ୍ପାଦକ ।

ସତ୍ୟବାଦୀ ସାହିତ୍ୟିକମାନଙ୍କ ମଧ୍ୟରୁ ଏକମାତ୍ର ଗୋଦାବରୀଶ ବହୁ କଥା-ସାହିତ୍ୟ (ଗଳ୍ପ,ଉପନ୍ୟାସ) ରଚନା କରି ପ୍ରସିଦ୍ଧି ଅର୍ଜନ କରିଅଛନ୍ତି । ଉପନ୍ୟାସ ଅପେକ୍ଷା କ୍ଷୁଦ୍ର ଗଳ୍ପ ରଚନାରେ ସେ ଅଧିକ ସଫଳକାମ ହୋଇପାରିଛନ୍ତି ବୋଲି କୁହାଯାଇ ପାରେ । ତାହାଙ୍କର ଅଭାଗିନୀ, ରୂପାନ୍ତର, ଦାସତ୍ୱମୋଚନ ଯଥାକ୍ରମେ, ଭିକ୍ଟର ହ୍ୟୁଗୋଙ୍କର 'ଲ ମିଜାରେବ୍ଲ'ଉପନ୍ୟାସ ଓ ଷ୍ଟିଭେନ୍‌ସନଙ୍କର 'ଡକ୍ଟର ଯେକଲ ଓ ମିଷ୍ଟର ହାଇଡ୍' ଗଳ୍ପ, ବୁକ୍‌ର ଓ୍ୟାସିଙ୍ଗଟନ୍‌ଙ୍କ ଅପ୍ ଫ୍ରମ୍ ସ୍ଲେଭରି ପୁସ୍ତକ ଅନୁସରଣରେ ଲିଖିତ । ଗୋଦାବରୀଶ ଇଂରାଜୀ ନାଟ୍ୟ-ସାହିତ୍ୟ ଆଦର୍ଶରେ ପୁରୁଷୋତ୍ତମ ଦେବ ଓ ମୁକୁନ୍ଦ ଦେବ ନାମକ ଦୁଇଟି ଐତିହାସିକ ନାଟକ ପ୍ରଣୟନ କରିଥିଲେ ହେଁ ଏହି ଦୁଇଟି ନାଟକ ଓଡ଼ିଆ ସାହିତ୍ୟରେ କେବଳ ତାହାର ଐତିହାସିକ ମୂଲ୍ୟ ଯୋଗୁ ହିଁ ସ୍ମରଣୀୟ ହୋଇରହିବ । ଚରିତ୍ର ଚିତ୍ରଣରେ ଲେଖକ ବାସ୍ତବତା ଅପେକ୍ଷା ଆଦର୍ଶ ସୃଷ୍ଟିଲାଗି ଏହି ନାଟକ-ଦ୍ୱୟରେ ଅଧିକ ମନଯୋଗୀ ଥିଲି ପରି ମନେ ହୁଏ । ଓଡ଼ିଆ ଶିଶୁ-ସାହିତ୍ୟ ଓ କିଶୋର ଉପଯୋଗୀ ସାହିତ୍ୟ ରଚନାରେ

ଗୋଦାବରୀଶଙ୍କ ଦାନ ମଧ୍ୟ ସ୍ୱଳ୍ପ ନୁହେଁ । ସତ୍ୟବାଦୀର ସାହିତ୍ୟିକମାନଙ୍କ ସାଧନା ଯୋଗୁ ସମୃଦ୍ଧ ଭାବେ ଓଡ଼ିଆ ଶିଶୁ ଓ କିଶୋର ସାହିତ୍ୟ ଏବଂ ଓଡ଼ିଆ ଗଦ୍ୟ ସାହିତ୍ୟ ଯେ ବଳିଷ୍ଠ ହୋଇଅଛି ଏହା ନିର୍ବିବାଦରେ କୁହାଯାଇ ପାରେ ।

ପରିଶେଷରେ ଏତିକି କୁହାଯାଇପାରେ ଯେ, ସତ୍ୟବାଦୀର ସାହିତ୍ୟ ସାଧକମାନଙ୍କର ଏକକ ବା ସମ୍ମିଳିତ ସାହିତ୍ୟସାଧନା ଫଳରେ ଓଡ଼ିଆ ସାହିତ୍ୟରେ ନବଯୁଗର ସୂତ୍ରପାତ ନ ହୋଇ ଥିଲେ ବି ସେମାନଙ୍କ ସାହିତ୍ୟ-ସାଧନାଦ୍ୱାରା ଓଡ଼ିଆ ସାହିତ୍ୟରେ ଏକ ବର୍ଣ୍ଣୋଜ୍ଜ୍ୱଳ, ସୁଚିହ୍ନିତ ନୂତନ ଅଧ୍ୟାୟ ଉଦ୍‌ଘାଟିତ ହୋଇ ଅଛି । ଊନବିଂଶ ଶତାବ୍ଦୀର ଶେଷ ବିଂଶକରେ ଯେଉଁ ଜାତୀୟ ଭାବର ଅଙ୍କୁରୋଦ୍‌ଗମ ହୋଇଥିଲା ତାହା ଏହି ସାହିତ୍ୟିକମାନଙ୍କ ରଚନାବଳୀରେ ସୁବିକଶିତ ହୋଇ ଅଛି; ଯେଉଁ ଭାବନା ରାଧାନାଥ ପ୍ରଭୃତି କବିମାନଙ୍କ ରଚନାବଳୀରେ ପରୋକ୍ଷ, ଅସ୍ପଷ୍ଟ ଥିଲା ତାହା ସ୍ପଷ୍ଟ, ବଳିଷ୍ଠ ଓ ଗମ୍ଭୀରତର ହୋଇଅଛି । ପରବର୍ତ୍ତୀ କାଳରେ ଆନ୍ତର୍ଜାତୀୟ ସମସ୍ୟା, ସାମାଜିକ ଶ୍ରେଣୀସଂଘର୍ଷ, ସାମ୍ୟବାଦ, ଯୌନ ଓ ଅପରାଧ ପ୍ରବଣତା ଏବଂ ବହୁ ପରସ୍ପର ବିରୋଧୀ ଭାବନା ଦ୍ୱାରା ସାହିତ୍ୟ କ୍ଷେତ୍ର ବିକ୍ଷୋଭିତ ହୋଇ ଉଠିଥିଲେ ହେଁ ସତ୍ୟବାଦୀ ସାହିତ୍ୟ ତାହାର ସର୍ବକାଳୀନ ମହତ୍ତ୍ୱ ଯୋଗୁଁ ଓଡ଼ିଆ ସାହିତ୍ୟରେ ମହିମାନ୍ୱିତ ହୋଇରହିବ ।

—o—

# ଓଡ଼ିଆ କବିତାର ପଚିଶ ବର୍ଷ

( ୧୯୩୭-୬୧ )

ମାତ୍ର ପଚିଶ ବର୍ଷ; ଅଥଚ ଏଇ ବିଗତ ପଚିଶ ବର୍ଷ ମଧ୍ୟରେ ଓଡ଼ିଆ କାବ୍ୟ-କବିତାର ଆଙ୍ଗିକ ଓ ଭାବସଂପଦରେ ଯେପରି ଦ୍ରୁତ ଓ ଆମୂଳ ପରିବର୍ତ୍ତନ ସାଧିତ ହୋଇଛି ତାହା'ର ପଟାନ୍ତର ନାହିଁ । ଏଇ ପରିବର୍ତ୍ତନ ଯେ ବିଶ୍ୱବ୍ୟାପି ବିବର୍ତ୍ତନଧାରାର ଏକ ସ୍ୱାଭାବିକ ପ୍ରତିକ୍ରିୟା କିମ୍ବା ନିଷ୍ପ୍ରୟୋଜନ ମାତ୍ର । ଏହି ସମୟ ମଧ୍ୟରେ ମନୁଷ୍ୟର ଜ୍ଞାନ, ବିଜ୍ଞାନ, ଶିକ୍ଷା, ସଭ୍ୟତା ଓ ସଂସ୍କୃତି କ୍ଷେତ୍ରରେ ବହୁ ପରିବର୍ତ୍ତନ ହୋଇଯାଇଛି । ଏଣୁ ଏଂସିତ କାଳ-ମଧ୍ୟରେ ଭାରତୀୟ ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟର କବିତା ତଥା ଅନ୍ୟାନ୍ୟ ବୈଦେଶିକ ସାହିତ୍ୟର କବିତା ଭଳି ଓଡ଼ିଆ କବିତା ମଧ୍ୟ ବହୁ ପରିବର୍ତ୍ତନ ଓ ଉତ୍‌ଥାନ-ପତନ ମଧ୍ୟଦେଇ ଗତି-କରିଛି ।

ତିରିଶ ବର୍ଷ ପୂର୍ବେ ଓଡ଼ିଆ କାବ୍ୟ-କବିତା କ୍ଷେତ୍ରରେ ପ୍ରଭାବ ବିସ୍ତାର କରୁଥିଲେ ସ୍ୱର୍ଗୀୟ ଚିନ୍ତାମଣି, ଗୋଦାବରୀଶ, ନନ୍ଦ-କିଶୋର, ପଦ୍ମଚରଣ ପ୍ରଭୃତି କବିବୃନ୍ଦ । ଏଇ ସକଳ କବି ସହଜ ସରଳଭାବରେ ଆପଣା ହୃଦୟର ଯାବତୀୟ ଅନୁଭୂତି ସାଧାରଣଭାବେ ପ୍ରକାଶ କରିଯାଇଛନ୍ତି । ଶବ୍ଦ ଯୋଜନାର ଚାତୁରୀ, ସୌନ୍ଦର୍ଯ୍ୟସୃଷ୍ଟିର ପ୍ରୟାସ ହିଁ ସେତେବେଳେ କାବ୍ୟ-କବିତାର ଆଦର୍ଶଭାବେ ଗୃହୀତ ହେଉଥିଲା । ଏହାପରେ ମଦନମୋହନ,

ବ୍ରଜମୋହନ, ଶଚୀନ୍ଦ୍ରନାଥ, ବୈକୁଣ୍ଠନାଥ, କାଳନ୍ଦୀଚରଣ, ଅନ୍ନଦାଶଙ୍କର ପ୍ରମୁଖ କବିମାନଙ୍କ ଗୀତି-କବିତାରେ ସ୍ୱଚ୍ଛନ୍ଦତା, ନୂତନ ଛନ୍ଦ ଓ ନୂତନ ପ୍ରକାଶଭଙ୍ଗୀର ପରିଚୟ ମିଳିଥିଲେହେଁ, ଶେଷୋକ୍ତ କବିମାନଙ୍କ ଗୀତି-ରଚନାବଳୀ ସ୍ୱପ୍ନବାଦିତା, କଳ୍ପନା-ବିଳାସ ଓ ଗଭୀର ଆତ୍ମକୈନ୍ଦ୍ରିକତା ଉପରେହିଁ ପ୍ରତିଷ୍ଠିତ ଥିଲା ।

ମାତ୍ର ଏହାପରେ କ୍ରମଶଃ ସାମାଜିକ ଅବସ୍ଥାରେ ପରିବର୍ତ୍ତନ ଦେଖାଦେଲା । ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଚେତନା, ପରିବର୍ତ୍ତିତ ସାମାଜିକ ଅବସ୍ଥା, ସମାଜ ଜୀବନରେ ତଥା କବି-ମାନସରେ ଏକ ନୂତନ ମୂଲ୍ୟବୋଧ, ନୂତନ ବିଚାରଧାରା ପ୍ରବର୍ତ୍ତନ କରିଥିଲା । ଫଳରେ ମୋଟାମୋଟି ଭାବେ କହିଲେ ଓଡ଼ିଶା ନୂତନ ପ୍ରଦେଶରୂପେ ଗଠିତହେବା ପରଠାରୁ ଓଡ଼ିଆ ଗୀତି-କବିତା କ୍ଷେତ୍ରରେ ନବ ରୂପାନ୍ତର ସ୍ପଷ୍ଟତରଭାବେ ଦେଖା ଦେଇଥିଲା । ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପୂର୍ବବର୍ତ୍ତୀ କାଳ ଅର୍ଥାତ୍ ୧୯୩୬ ଠାରୁ ୧୯୪୭ ପର୍ଯ୍ୟନ୍ତ ସମୟ ଓଡ଼ିଆ ଗୀତି-କବିତାର ଅଭିବୃଦ୍ଧି ପକ୍ଷେ ଅନୁକୂଳ ସମୟ ନଥିଲା । ଏହି ସମୟଟି ଥିଲା ଅତୀବ ସଂଘାତ-ସଂକୁଳ । ଗଡ଼ଜାତ ପ୍ରଜା ଆନ୍ଦୋଳନ, ମାର୍କ୍ସୀୟ ସାମ୍ୟବାଦୀ ଭାବଧାରାର ପ୍ରଚାର, ଦ୍ୱିତୀୟ ବିଶ୍ୱଯୁଦ୍ଧର ବିଭୀଷିକା, ସ୍ୱାଧୀନତା ଆନ୍ଦୋଳନ, ସତ୍ୟାଗ୍ରହ ଓ ଅବଶେଷରେ ଯୁଦ୍ଧକାଳୀନ ଅଭାବ, ଅନଟନ, ଆଲୋକ, ଖାଦ୍ୟ ଓ ବସ୍ତ୍ରର ନିୟନ୍ତ୍ରଣମଧ୍ୟରେ କବିତା ରଚନାଲାଗି କବିର ଅବକାଶ ଥିଲା ସ୍ୱଳ୍ପ । ଏଣୁ ଏହି ସମୟ ମଧ୍ୟରେ ହିଁ ସ୍ୱପ୍ନବାଦୀ କଳ୍ପନା-ମୁଖର କବିତାର ରୂପ ଭୂତ ବାସ୍ତବତା ସ୍ପର୍ଶରେ ବଦଳି ଯାଇଥିଲା । ଶଂସିତ କାଳର ପ୍ରଥମାର୍ଦ୍ଧରେ ଓଡ଼ିଆ ସାହିତ୍ୟକୁଞ୍ଜ ସ୍ୱପ୍ନବାଦୀ

କଳ୍ପନା-ବିଳାସୀ ସବୁଜ କବିତାର କାକଳୀରେ ମୁଖରିତ ହୋଇ-ଥିଲେହେଁ ଏହାର ଶେଷାର୍ଦ୍ଧ ବାସ୍ତବତାର ତିକ୍ତ ପ୍ରତିଘାତଯୋଗୁ ସମସ୍ତ ରମ୍ୟତାବୋଧ ଓ ସରସତା ହରାଇ ବସିଥିଲା । ଏହି ପ୍ରଥମାର୍ଦ୍ଧରେ ସହକାର, ଉତ୍କଳ ସାହିତ୍ୟ, ଯୁଗବାଣୀ (ପ୍ରଥମ ପ୍ରକାଶ ୧୯୩୪); ନବଭାରତ (ପ୍ର.ପ୍ର ୧୯୩୪), ଆଧୁନିକ (ପ୍ର.ପ୍ର ୧୯୩୭) ପ୍ରଭୃତି ସାହିତ୍ୟ ପତ୍ରିକାରେ ବହୁ କବିଙ୍କ କବିତାବଳୀ ପ୍ରକାଶ ପାଇଥିଲେ ହେଁ ଏହି ସମୟର ଶେଷଆଡ଼କୁ 'ଆରତି', 'ଝଙ୍କାର' ବ୍ୟତୀତ ଅନ୍ୟ ବହୁ ସାହିତ୍ୟ ପତ୍ରିକାର ଆକାର ସଙ୍କୁଚିତ ବା ତାହା ଏକ ପ୍ରକାର ବନ୍ଦ ହୋଇଯାଇଥିଲା ।

ଏହି ସମୟଟି ବିବିଧ ସ୍ୱ-ବିରୋଧୀ ଭାବଧାରାର ଘୂର୍ଣ୍ଣାବର୍ତ୍ତରେ ଆବିଳ ଥିବାଯୋଗୁଁ ଏହି ସମୟର କବିମାନଙ୍କ ରଚନାବଳୀର ଗୋଟିଏ ଦିଗରେ ଯେପରି ସ୍ୱପ୍ନବାଦିତା, ସେହିପରି ଅନ୍ୟ ଦିଗରେ ଉଗ୍ର ବାସ୍ତବ ସଚେତନତା ମଧ୍ୟ ପରିଲକ୍ଷିତ ହୋଇଥିଲା । ଏହି ବିପର୍ଯ୍ୟସ୍ତ, ସଙ୍ଘାତସଙ୍କୁଳ ସମୟର କବିମାନଙ୍କ ମଧ୍ୟରୁ ସର୍ବଶ୍ରୀ ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ବୈକୁଣ୍ଠ-ନାଥ, କାଳନ୍ଦୀଚରଣ, ମାୟାଧର ମାନସିଂହ, ନିକୁଞ୍ଜକିଶୋର ଦାସ, ହରିଶ୍ଚନ୍ଦ୍ର ବଡ଼ାଲ, କ୍ଷିତୀଶଚନ୍ଦ୍ର ଦେ, ହରିନାରାୟଣ ସିଂହ, ପ୍ରତାପ ସେନ, କୁଞ୍ଜବିହାରୀ ଦାଶ, ଜ୍ଞାନୀନ୍ଦ୍ର ବର୍ମା, କୁବେର ଦଳାଇ, ସଚ୍ଚିଦାନନ୍ଦ ରାଉତରାୟ, ରାଧାମୋହନ ଗଡ଼ନାୟକ, ବିନୋଦ ନାୟକ, ବୈକୁଣ୍ଠନାଥ ଦାସ, ଅନନ୍ତ ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ରଘୁନାଥ ଦାସ, କୃଷ୍ଣଚନ୍ଦ୍ର କର ଓ ପ୍ରାଣକୃଷ୍ଣ ସାମଲ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ କାଳରେ ଏହିମାନଙ୍କ ମଧ୍ୟରୁ ଅନେକେ ଗୀତି-କବିତା ରଚନାରୁ

ଅବ୍ୟାହତ ନେଇଛନ୍ତି ଓ ଅନେକେ ପୂର୍ବାପେକ୍ଷା ଅଧିକ ପ୍ରତିଷ୍ଠା ଅର୍ଜ୍ଜନ କରିଅଛନ୍ତି ।

ଆଲୋଚ୍ୟ କାଳ ମଧ୍ୟରେହିଁ ଓଡ଼ିଆ ଗୀତି-କବିତା କ୍ଷେତ୍ରରେ ନୂତନ ଛନ୍ଦ ଏବେ ମୁକ୍ତ ଛନ୍ଦ ଓ ଗଦ୍ୟ ଛନ୍ଦ ନିୟୋଜିତ ହୋଇଥିଲା । ଏ ବିଷୟରେ ଅନ୍ୟତ୍ର ଆଲୋଚନା କରାଯାଇଥିବାରୁ ଏଠାରେ ତାହାର ପୁନରୁଲ୍ଲେଖ ଅନାବଶ୍ୟକ । ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଏହି ଛନ୍ଦର ବ୍ୟାପକ ବ୍ୟବହାର କରି ଏହାକୁ ଅଧିକ ଆଦୃତ କରାଇଅଛନ୍ତି । ଏହାଛଡ଼ା ଏହି ସମୟ ମଧ୍ୟରେ ଯେଉଁ ବାସ୍ତବବାଦୀ ଓ ସମାଜ-ସଚେତନ ଜୀବନ-ବାଦୀ ଗୀତି-କବିତାର ସୂତ୍ରପାତ ହୋଇଥିଲା, ତାହାର ନିଦର୍ଶନ ଶ୍ରୀଯୁକ୍ତ ଗୋଦାବରୀଶ ମହାପାତ୍ର ଓ ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତାବଳୀରେ ସବିଶେଷ ପରିଲକ୍ଷିତ ହୁଏ । ଶ୍ରୀଯୁକ୍ତ ମହାପାତ୍ରଙ୍କ ବ୍ୟଙ୍ଗ-ରସାଶ୍ରିତ, ଗଣ-ଚେତନାସମ୍ବଳିତ ବହୁ ସରସ ଗୀତି-କବିତା ନିଆଁଖୁଣ୍ଟା (ପ୍ର. ପ୍ର. ୧୯୩୮)ରେ ପ୍ରକାଶିତ ହୋଇ ବହୁଜନାଦୃତ ଓ ପ୍ରଶଂସିତ ହୋଇଅଛି । ସେହିପରି ସାମ୍ୟବାଦୀ ଆଦର୍ଶ ଓ ଯୁଗଚେତନା ସମ୍ବଳିତ କବିତା-ସଙ୍କଳନଗୁଡ଼ିକ ସଚ୍ଚିଦାନନ୍ଦଙ୍କର ପାଣ୍ଡୁଲିପି, ଅଭିଯାନ ଓ ବାଜି ରାଉତ ପୁସ୍ତକ ଉଲ୍ଲେଖଯୋଗ୍ୟ । ଏକଦା ରୋମାଣ୍ଟିକ୍ କାବ୍ୟା-ଦର୍ଶରେ ଅନୁପ୍ରାଣିତ ହୋଇ କବିତା ରଚନା କରିଥିବା ବହୁ କବିଙ୍କର ଦୃଷ୍ଟିଭଙ୍ଗୀଗତ ପରିବର୍ତ୍ତନ ଆଲୋଚ୍ୟ କାଳର ଶେଷ ଆଡ଼କୁ ହୋଇଥିବା ସ୍ପଷ୍ଟରୂପେ ସେମାନଙ୍କ ରଚନାବଳୀରୁ ଜଣା ପଡ଼େ । ଏଣୁ 'ଧୂପ', 'ମରମ', 'ସ୍ୱପ୍ନଛାୟା', 'ପାଥେୟ', 'ମନେ ନାହିଁ', 'ରୂପ କଥା'ର କବିଙ୍କ ଲେଖନୀରୁ ପରବର୍ତ୍ତୀ

କାଳରେ 'ତଳିଆ ଜୀବନର ବିଳାପ', 'କାଳରଙ୍ଗ', 'ଛୁରିଟିଏ ଲୋଡ଼ା', 'ହେ ମୋର କଲମ', 'ପ୍ରତିମା ନାୟକ', 'ଉମା' ଭଳି କବିତାସୃଷ୍ଟି ସମ୍ଭବ ହୋଇଥିଲା । ଏହାହିଁ ଯୁଗଧର୍ମ ଓ ପରିବେଶାତ୍ମକ ପ୍ରଭାବର ସ୍ୱାଭାବିକ ପରିଣତି ।

ଏହାର ପରବର୍ତ୍ତୀ ଦଶ ବର୍ଷ ଅର୍ଥାତ୍ ୧୯୪୭ ରୁ ୧୯୫୭ ମଧ୍ୟରେ ନବଲବ୍ଧ ସ୍ୱାଧୀନତା ଲାଭର ଆଶା ଓ ଆନନ୍ଦ ଜନିତ ଆବେଗୋଚ୍ଛ୍ୱାସ ଏବଂ ଆଶାଭଙ୍ଗଜନିତ ବ୍ୟର୍ଥତାବୋଧ ଭଳି ପରସ୍ପର ବିରୋଧୀ ଭାବଧାରାର ପ୍ରତିଫଳନ ଓଡ଼ିଆ କବିତା-କ୍ଷେତ୍ରରେ ଦେଖିବାକୁ ମିଳିଥାଏ । ଏହାଛଡ଼ା ବହୁବିଧ ପ୍ରକାଶ ରୀତିର ପରୀକ୍ଷା, ପ୍ରୟୋଗ ମଧ୍ୟ ଏହି ସମୟର କବିତାବଳୀର ଅନ୍ୟତମ ବୈଶିଷ୍ଟ୍ୟ । ସ୍ଥୂଳତଃ ଦ୍ୱିତୀୟ ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ ପାଠକ କାବ୍ୟ-କବିତା ମାଧ୍ୟମରେ ତାର ପ୍ରାତ୍ୟହିକ ଜୀବନର ବେଦନାକୁ ବିସ୍ମୃତ ହେବାକୁ ଚାହୁଁଥିଲା । କବି ମଧ୍ୟ ସେହି ରୀତିର କବିତା-ରଚନା କରୁଥିଲା । ମାତ୍ର ଆଜିର ପାଠକ, ତଥା କବି ନିଜକୁ ଓ ନିଜର ଯଥାର୍ଥ ପ୍ରତିବିମ୍ବକୁ ସାହିତ୍ୟରେ ଦେଖିବାକୁ ତଥା ଦେଖାଇବାକୁ ଉଦ୍ୟତ । ଏଣୁ ସାହିତ୍ୟକ୍ଷେତ୍ର ଆଜି କେବଳ ଆତ୍ମ ଧ୍ୟାନଲୋକର, ରମ୍ୟବୋଧର, ଆଦର୍ଶ ବା ସୌନ୍ଦର୍ଯ୍ୟର କ୍ଷେତ୍ର ନ ହୋଇ, ଆଧୁନିକ ଜୀବନର ଆଶା-ଆକାଂକ୍ଷା, ଅଭାବ, ଅଭିଯୋଗ ଓ ଅତୃପ୍ତି-ପ୍ରକାଶର କ୍ଷେତ୍ର ହୋଇଛି । ଊନବିଂଶ ଶତକର ଶେଷ ଦ୍ୱିଦଶକ ମଧ୍ୟରେ ଓଡ଼ିଆ କାବ୍ୟ କବିତା ସହିତ ଇତିହାସ ଓ ଭୂଗୋଳର ଯୋଗସୂତ୍ର ସ୍ଥାପିତ ହୋଇଥିଲା । ମାତ୍ର ଆଲୋଚ୍ୟ କାଳ ମଧ୍ୟରେ ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ସମାଜନୀତି, ରାଜନୀତି, ଅର୍ଥନୀତି ଓ ବିଜ୍ଞାନ ପ୍ରଭୃତି ମାନବର ଜ୍ଞାନ-ଚିନ୍ତାର ବିବିଧ ବିଭାବ

ଦୃଢ଼ ଆସନ ଅଧିକାର କରି ନେଇଛନ୍ତି । ଫଳତଃ ଆଧୁନିକତମ କବିତା କେବଳ ଆଉ ହୃଦୟ ଗ୍ରାହ୍ୟ ନ ରହି ଅଧିକ ପରିମାଣରେ ବୁଦ୍ଧିଗ୍ରାହ୍ୟ ହେବାକୁ ବସିଛି ।

କେବଳ ପ୍ରାକୃତିକ ସୌନ୍ଦର୍ଯ୍ୟବିହ୍ୱଳତା ବା ନିର୍ଜନ ଆତ୍ମନିମଗ୍ନ ରୋମାଣ୍ଟିକ୍-ପ୍ରେମ-ସର୍ବସ୍ୱତା ପରିବର୍ତ୍ତେ ଜୀବନର ସର୍ବାଙ୍ଗୀନ-ବୋଧ, ଅନୁଭବ ଓ ଚିନ୍ତାକୁ ସ୍ୱ-ପରିସରଭୁକ୍ତ କରିବାକୁ କବିତା ଆଜି ସମୁଦ୍ୟତ । ଏଣୁ କବିତାର ବିଷୟବସ୍ତୁର କ୍ଷେତ୍ର ଆଜି ଆଉ ସୀମାବଦ୍ଧ ନ ରହି ସର୍ବବ୍ୟାପୀ ହୋଇଛି—ତୁଚ୍ଛ, ନଗଣ୍ୟ, ଅବହେଳିତ ବିଷୟ ପ୍ରତି ସମଧିକ ମମତା ପ୍ରଦର୍ଶନ ହୋଇ ତାହା କବିର ଉପଜୀବ୍ୟ ବିଷୟ । ଆଧୁନିକ ଜୀବନର ସମସ୍ତ ତୁଚ୍ଛ, ମହତ୍ ଆଶା, ନିରାଶା, ବ୍ୟଥା, ବେଦନା, ଆନନ୍ଦ-ନିରାନନ୍ଦଭାବକୁ ଏହା ମୂର୍ତ୍ତ କରିଏ । ଏହାହିଁ ବହୁ-ସମାଲୋଚିତ ସାମ୍ପ୍ରତିକ କବିତା । ଫଳତଃ କବି ମାନସିଂହଙ୍କ ପରିକଳ୍ପିତ-ପ୍ରଣୟ-ପ୍ରଧାନ କବିତାର ପ୍ରଭାବ ତଥା କବି ସଚ୍ଚିଦାନନ୍ଦଙ୍କ ସାମ୍ୟବାଦୀ ଭାବନାତ୍ମକ କବିତାର ପ୍ରଭାବ ଆଜି ପ୍ରାୟ ଶିଥିଳ ହୋଇଯାଇଛି କହିଲେ ଚଳେ ।

ସାମ୍ପ୍ରତିକ କବିତାର ରୂପରେ ମଧ୍ୟ ବହୁ ପରିବର୍ତ୍ତନ ପରିଲକ୍ଷିତ ହୁଏ । ପୂର୍ବାପେକ୍ଷା ଏହାର ରୂପ ବଦଳି ଯାଇଛି କହିଲେ ଚଳେ । ପୂର୍ବ ପରି ଛନ୍ଦୋବଦ୍ଧ କବିତାର ବହୁଳ ପ୍ରଚଳନ ପରିଲକ୍ଷିତ ହେଉନାହିଁ । ଛନ୍ଦ, ପଦ ମିଳନ, ଶବ୍ଦ ଯୋଜନାଦି କ୍ଷେତ୍ରରେ ବହୁ ପରିବର୍ତ୍ତନ ଆଜି ଦୃଷ୍ଟିପଥାରୂଢ଼ ହେଉଅଛି । ଅନେକେ କବିତାରେ ପଦ ମିଳନ ନ କରି ଗଦ୍ୟ ଛନ୍ଦରେ କବିତା ଲେଖୁଛନ୍ତି—ଯେଉଁମାନେ ବା ପଦ ମିଳାଇ

କବିତା ରଚନା କରୁଛନ୍ତି ସେମାନଙ୍କର ସେଇ ପଦ ମିଳନର ଧରଣ ମଧ୍ୟ ଅଭିନବ—

"ବେଣୀରେ କେତକୀ ଫୁଲ
ମାନ୍ଦ୍ରୀ ଠାଁର
ଆଖି ତଳେ ଚଲ ଚଲ
ଯଉବନର ନାଚ ।"

ସମକାଳୀନ କବିତାରେ ଶବ୍ଦ-ପ୍ରୟୋଗ କ୍ଷେତ୍ରରେ ମଧ୍ୟ ବହୁ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହେଉଅଛି । ଦୈନନ୍ଦିନ ପ୍ରୟୋଜନ ସାଧନରେ ନିୟୋଜିତ ଭାଷାକୁ କୃତ୍ରିମ କାବ୍ୟଧର୍ମୀ ନ କରାଇ ଅକୃତ୍ରିମ ଭାବରେ ନିୟୋଜିତ କରିବାହିଁ ହୋଇଛି ଆଜିର କବି-କର୍ମ । ଏହାର ମାତ୍ର ଗୋଟିଏ ଉଦାହରଣ ଦିଆଯାଇ ପାରେ—

"କିଏ ଜଣେ କବି ଥରେ କହିଥିଲେ
ସତ୍ୟ ଶିବ ହୋଇପାରେ, କିନ୍ତୁ [illegible] ସୁନ୍ଦର
କଥାଟା ତ ମିଛ ନୁହେଁ, ଯଦିଓ ଅବକାଶ ଥାଇପାରେ
ତର୍କର ପ୍ରଚୁର ।"

(ସୁନ୍ଦରମ୍)

ଏହିପରି 'ସାଧାରଣ କଥା ଦ୍ୱାରା ଅସାଧାରଣ ବ୍ୟଞ୍ଜନା ସୃଷ୍ଟିର ଚେଷ୍ଟା' ହିଁ ଆଜିର କବିମାନଙ୍କ ଲକ୍ଷ୍ୟ । ସେହିପରି ନୂତନ କବିତାରେ ପରିଚିତ ପରିବେଶରୁ ଭିନ୍ନ, ସାମାନ୍ୟ ବିଷୟକୁ ନେଇ ଅଭିନବ ଉପମା, ରୂପକ ଓ ରୂପକଳ୍ପର ନିୟୋଜନର ଉଦାହରଣ ଖୋଜିବାକୁ ଯିବା ଅନାବଶ୍ୟକ ।

ସ୍ୱାଧୀନତା ପରବର୍ତ୍ତୀ ତରୁଣତମ କବିମାନଙ୍କ କବିତା-ବଳୀରେ ପ୍ରଧାନତଃ ଏକ ମର୍ମାନ୍ତିକ ବ୍ୟର୍ଥତାବୋଧ, ଉପସ୍ଥିତ ସାମାଜିକ ଅସଙ୍ଗତି ଓ ଅବ୍ୟବସ୍ଥା ବିରୁଦ୍ଧରେ ଏକ ବିଦ୍ରୋହୀ ପ୍ରତିକ୍ରିୟା, ଅଥବା ଲଘୁ ଚପଳ କୃତ୍ରିମ ପରିବେଶରେ ନିଜକୁ ବିସ୍ମୃତ ହେବାର ଏକ ଅସୁସ୍ଥ ସ୍ପୃହା ପରିଲକ୍ଷିତ ହେଉଅଛି । ଏଇ ଯୁଗର ଅଶାନ୍ତି, ଅସ୍ଥିରତା, ପ୍ରାଚୀନ ମୂଲ୍ୟବୋଧର ବିପର୍ଯ୍ୟୟ, ଦ୍ୱିଧା, ଦ୍ୱନ୍ଦ୍ୱ ଓ ସହସ୍ର ଅଭିଶାପ କବି ଚିତ୍ତକୁ ନିରନ୍ତର ଖଣ୍ଡିତ ଓ ହତାଶ କରିଛି । ଏଣୁ ଏଇ ସ୍ଥୂଳ ବହିର୍ଜାଗତିକ ବିଷୟ ଓ ପ୍ରାତ୍ୟହିକ ଜଗତକୁ ସୌନ୍ଦର୍ଯ୍ୟମଣ୍ଡିତ, ବିଚିତ୍ର ତଥା ଆଶ୍ଚର୍ଯ୍ୟ ରୂପରେ ରୂପାୟିତ କରିବା କବିମାନଙ୍କ ପକ୍ଷେ ସମ୍ଭବ ହୋଇ ପାରିନାହିଁ । ସେଥିପାଇଁ ଆଧୁନିକତମ କବିତାରେ ଆଶା, ବିଶ୍ୱାସ, ଆନନ୍ଦ, ଉତ୍ସାହର ବାଣୀ ପରିବର୍ତ୍ତେ ଏହାର ବୈପରୀତ୍ୟହିଁ ସମଧିକ ପ୍ରକାଶିତ ହେଉଛି । ଯେଉଁ ଆନନ୍ଦ, ଆଶା, ଉତ୍ସାହ ଓ ଆତ୍ମ ପ୍ରତ୍ୟୟର ଉତ୍କଟତମ ଅଭାବ ପରିଲକ୍ଷିତ ହୋଇଛି ପରବର୍ତ୍ତୀ ତରୁଣତମ ଓ ସାମ୍ପ୍ରତିକ କବିମାନଙ୍କ ରଚନାବଳୀରେ ।

୧୯୪୭ରୁ ୧୯୫୭ ମଧ୍ୟରେ ଯେଉଁମାନେ କବିତା ରଚନା କରି ସୁପରିଚିତ ଓ ଆଦୃତ ହୋଇଛନ୍ତି, ସେମାନଙ୍କ ମଧ୍ୟରୁ ସର୍ବଶ୍ରୀ ଗୁରୁପ୍ରସାଦ ମହାନ୍ତି, ବେଣୁଧର, ସଚ୍ଚିଦାନନ୍ଦ, ଚିନ୍ତାମଣି, ଯଦୁନାଥ, ବିଦ୍ୟୁତପ୍ରଭା, ନିର୍ମଳା ଦେବୀ, ଗୋପାଳଚନ୍ଦ୍ର, ଦୁର୍ଗାଚରଣ ପରିଡ଼ା, ଦୁର୍ଗାମାଧବ ମିଶ୍ର, ଭାନୁଜି ରାଓ, ସୁଧାଂଶୁଶେଖର ରାୟ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହାଛଡ଼ା ଯେଉଁମାନଙ୍କ ରଚନାବଳୀ ସମକାଳୀନ ପତ୍ରପତ୍ରିକାକୁ ମଣ୍ଡିତ କରୁଛି ବା ଯେଉଁମାନଙ୍କ କବିତା ସଂକଳନ ଇତିମଧ୍ୟରେ ପ୍ରକାଶ ପାଇଛି ସେମାନଙ୍କ ରଚନାବଳୀର ମୂଲ୍ୟାଙ୍କନ

କରିବାକୁ ଯିବା ବା ସେମାନଙ୍କର ଏକ ନିର୍ଭରଯୋଗ୍ୟ ତାଲିକା ଦେବା କଷ୍ଟକର । ତଥାପି ସର୍ବଶ୍ରୀ ମନୋଜଦାସ, ବିନୋଦ ରାଉତରାୟ, ବ୍ରଜନାଥ ରଥ, ସୀତାକାନ୍ତ, ରମାକାନ୍ତରଥ, ଜୀବନାନନ୍ଦ ପାଣି, ଉମାଶଙ୍କର ଚଣ୍ଡୀ, ରବୀନ୍ଦ୍ରପ୍ରସାଦ ପାତ୍ରୀ, ରବୀନ୍ଦ୍ରନାଥ ସିଂହ, ଦେବେନ୍ଦ୍ର ଚଣ୍ଡୀ, ବଂଶୀଧର ଦାସ, ନୃସିଂହକୁମାର ରଥ, ବିଭୂଦତ୍ତ ମିଶ୍ର, କୃଷ୍ଣଚରଣ ବେହେରା, ଦୀପକ ମିଶ୍ର, ଶ୍ରୀମତୀ ବନଜବାସିନୀ ଦେବୀ, ବ୍ରହ୍ମୋତ୍ରୀ ମହାନ୍ତି, କୁମାରୀ ତୁଳସୀ ଦାସ ପ୍ରଭୃତିଙ୍କ ନାମ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ।

ପୂର୍ବୋକ୍ତ ତଥା ଶେଷୋକ୍ତ କବିମାନଙ୍କ ମଧ୍ୟରୁ କେହି ଏକକ ଭାବରେ ନେଇ ଏ ଯୁଗର ବହୁମୁଖୀ ଭାବ, ଚିନ୍ତାର ସମଗ୍ର ରୂପକୁ ପ୍ରକଟିତ କରି ପାରିନାହାନ୍ତି, ଏହା ଅକପଟରେ କୁହାଯାଇ ପାରେ । ତଥାପି ସମଷ୍ଟିଭୂତଭାବେ ଏମାନଙ୍କ କବିତାବଳୀରେ ଏ ଯୁଗର ସମାଜ-ସମସ୍ୟା, ସଙ୍କଟ, ଆଶା, ଆକାଂକ୍ଷା ଓ ସୁସ୍ଥ ସମୃଦ୍ଧ ଜନକଲ୍ୟାଣର ମଙ୍ଗଳ ଆଦର୍ଶର ବାଣୀ ଯେ ରୂପ ଲାଭ କରୁଛି, ଏହା ଅସ୍ୱୀକାର କରି ହେବ ନାହିଁ ।

ସମକାଳୀନ କବିତା, ଅତୀତ କବିତାର ପରମ୍ପରା ପରିତ୍ୟାଗ କରିଛି । ପୂର୍ବର ଜନପ୍ରିୟତା ହୁଏତ ହରାଇଛି—ମାତ୍ର ଏଥିପାଇଁ ଏ ଯୁଗର କବି ବା କବିତାକୁ ଦୋଷ ଦେବା ଅହେତୁକ । ପ୍ରବୀଣ-ମାନଙ୍କର ତଥା ପାଠକମାନଙ୍କର ଏଇ ନୂତନ ସୃଷ୍ଟି ପ୍ରତି ଅବଜ୍ଞା, ଅସହିଷ୍ଣୁତା, ସମ୍ବେଦନାହୀନ ଅନୁଦାର ମନୋବୃତ୍ତି ଓ ଯୁଗର ପରିବର୍ତ୍ତିତ ପରିସ୍ଥିତି ପ୍ରତି ଅନବହିତତା ହିଁ କବିତା-ବିତୃଷ୍ଣାର ମୁଖ୍ୟ ହେତୁ । ଆଧୁନିକ କବି ଓ କବିତା ଯେ କଠୋର ଆଲୋଚନାର ସରବ୍ୟ ହୋଇଛି, ଏହା ସ୍ୱୀକାର୍ଯ୍ୟ । ଆଧୁନିକ କେତେକ କବିଙ୍କ

ରଚନାରେ ଇଚ୍ଛାକୃତ ଦୁର୍ବୋଧତା, ରହସ୍ୟମୟତା, କୃତ୍ରିମତା, ଅନୁକରଣସର୍ବସ୍ୱତା, ବ୍ୟର୍ଥ ଅସ୍ଫାଳନ, ଚପଳ-ଲଘୁ ମନସ୍କତା, ଶବ୍ଦ ପ୍ରୟୋଗ ଓ ଭାବ ଅଭିବ୍ୟକ୍ତିଗତ ବହୁ ଅକ୍ଷମତା ମଧ୍ୟ ସ୍ଥାନେ ସ୍ଥାନେ ପରିଲକ୍ଷିତ ହେଉଥିଲେ ହେଁ ବହୁ ତରୁଣ କବି ସେମାନଙ୍କ କବିତାରେ ସଫଳତା ଓ ମହତ୍ ସମ୍ଭାବନାର ଉଜ୍ଜ୍ୱଳ ପ୍ରତିଶ୍ରୁତି ଦେଇଛନ୍ତି ।

ଗତ ୨୫ ବର୍ଷର ଓଡ଼ିଆ କବିତା ସୃଷ୍ଟି ଓ ବିଭିନ୍ନ ପରୀକ୍ଷା ପ୍ରୟୋଗ ବିଷୟରେ 'ଡଗର' ପତ୍ରିକାର ଏକ ଗୌରବମୟ ଭୂମିକା ବିଦ୍ୟମାନ । 'ଡଗର' ଓଡ଼ିଆ କବିତାର ଏଇ ନୂତନ ପରୀକ୍ଷା ଓ ପ୍ରୟୋଗକୁ ସ୍ୱାଗତ କରିଛି, ବହୁ ସ୍ଫୁଟୋନ୍ମୁଖ କବି-ପ୍ରତିଭାକୁ ଆଶ୍ରୟ ଦେଇ ପ୍ରତିପାଳନ କରିଆସିଛି । ଏଇ ପ୍ରବନ୍ଧର ଲେଖକ ମଧ୍ୟ ଏଥିପାଇଁ 'ଡଗର' ନିକଟରେ କୃତଜ୍ଞ । ୧୯୪୭ ମସିହାରୁ ଏଇ ଲେଖକର ବହୁ କବିତା, କେବେ ସ୍ୱନାମାଙ୍କିତ ବା କେବେ ଛଦ୍ମନାମାଙ୍କିତ ହୋଇ 'ଡଗର'ର ପୃଷ୍ଠା ମଣ୍ଡନ କରିଛି । ବିଗତ ପଚିଶ ବର୍ଷ ମଧ୍ୟରେ ଓଡ଼ିଆ ଗୀତି-କବିତା କ୍ଷେତ୍ରରେ ବ୍ୟଙ୍ଗ ବିଦ୍ରୂପଧର୍ମୀ ବା ହାସ୍ୟରସାତ୍ମକ ଯେତେ କବିତା ଲେଖାଯାଇଛି, ସେତେ ବା ସେଭଳି ରଚନା ପୂର୍ବରୁ କେବେ ଲେଖା ହୋଇନାହିଁ— ଏଇ ଧରଣର କବିତାମାନଙ୍କରୁ ସର୍ବାଧିକ କବିତା ମୁଖ୍ୟତଃ ଡଗରରେ ହିଁ ପ୍ରକାଶିତ । ଆଲୋଚ୍ୟ କାଳ ମଧ୍ୟରେ ଶିଶୁ ଓ କିଶୋର-ଉପଯୋଗୀ କବିତା ରଚନାକୁ 'ଡଗର' ମଧ୍ୟ କମ୍ ପ୍ରୋତ୍ସାହିତ କରିନାହିଁ ।

ପରିଶେଷରେ ଏତିକି ବକ୍ତବ୍ୟ ଯେ, ସମକାଳୀନ କବିତାର ବିସ୍ତୃତ ଆଲୋଚନା ଓ ରସୋପଲବ୍ଧି ଲାଗି ସର୍ବାଦୌ ଆଧୁନିକ

ଯୁଗର ସମଗ୍ର ପରିଚୟ ତଥା ସମାଜ ବ୍ୟବସ୍ଥା ଓ ଯୁଗ-ଚେତନା ସହିତ ପାଠକର ସମ୍ବନ୍ଧ ପରିଚୟ ଥିବା ଆବଶ୍ୟକ । ତା'ନୋହିଲେ କବି-ମାନସକୁ ଓ ତାର ଅଭିବ୍ୟକ୍ତିକୁ ବୁଝିବା ପାଠକ ପକ୍ଷେ ସମ୍ଭବ ହେବ ନାହିଁ । ପ୍ରାଚୀନ ଯୁଗର ଜୀବନ ଧାରଣ ଓ ଗ୍ରାସାଚ୍ଛାଦନ ବିଷୟରେ ସୁନିଶ୍ଚିତ ଅବସ୍ଥା ଆଜି ଆଉ ନାହିଁ । ଆଧୁନିକ ସମାଜର ସାଧାରଣ ବ୍ୟକ୍ତି ଭଳି ଆଧୁନିକ କବି ମଧ୍ୟ ଏଇ ଅବସ୍ଥାର ଦାସ । ଆଧୁନିକ କବିର ମାନସ-ମୁକୁରରେ ଏଣୁ ଏ ଯୁଗର ଏଇ ମ୍ଳାନ ରୂପ ଫୁଟି ଉଠିବା ସ୍ୱାଭାବିକ । ସେହିପରି ଆଧୁନିକ କବିଙ୍କର କର୍ତ୍ତବ୍ୟ ହେଉଛି ଏଇ ମ୍ଳାନିମା ଓ କଳୁଷ ପଙ୍କରୁ ପଙ୍କଜ ସୃଷ୍ଟି କରିବା ।

ଆଧୁନିକ ଯୁଗରେ ଆଦର୍ଶ ବଦଳି ଯାଇଛି—ସ୍ୱର୍ଗ, ଭଗବାନ ବା ପୁରାଣ ଆଧୁନିକ ମନୁଷ୍ୟ ନିକଟରେ ନୂତନ ଆଶା ଓ ବିଶ୍ୱାସର ବାଣୀ ଉପସ୍ଥାପିତ କରିବାକୁ ଅସମର୍ଥ । ଏ ଯୁଗର ପ୍ରଧାନତମ ଆଦର୍ଶ ହେଉଛି, ସମସ୍ତ ମାନବ ଜାତିର କଲ୍ୟାଣ ଓ ବିକାଶ ସାଧନ, ସମସ୍ତ ଜାତୀୟ ଭେଦଭେଦ, ବ୍ୟବଧାନ ଦୂରକରି ଆନ୍ତର୍ଜାତୀୟ ଭାବର ଉଦ୍‌ବୋଧନ । ଏଣୁ ଆଧୁନିକ କବିଙ୍କୁ ସମସ୍ତ ଛନ୍ଦ ଓ କପଟ-ଅଭିବ୍ୟକ୍ତିକୁ ପରିହାର କରିବାକୁ ପଡ଼ିବ । ଆଧୁନିକ କବିମାନଙ୍କ ବକ୍ତବ୍ୟ ସ୍ପଷ୍ଟ, ସର୍ବଜନ ନ ହେଉ, ବହୁଜନ-ବୋଧଗମ୍ୟ ହେବା ଏକାନ୍ତ ଆବଶ୍ୟକ । ସେହିପରି ଆନ୍ତରିକତାପୂର୍ଣ୍ଣ ସମଗ୍ର ମାନବ ଜାତିର ଏକୀକରଣର ବାଣୀ ବହନ କଲେହିଁ ଏ ଯୁଗର କବିତା ହେବ ସ୍ୱଚ୍ଛନ୍ଦ ଓ ରସୋତ୍ତୀର୍ଣ୍ଣ ।

---

# ଓଡ଼ିଆ ଶିଶୁ-ସାହିତ୍ୟ *

## ଶିଶୁ ସାହିତ୍ୟର ସ୍ୱରୂପ ଓ ସ୍ୱଧର୍ମ—

ଓଡ଼ିଆରେ ଶିଶୁସାହିତ୍ୟ ପର୍ଯ୍ୟାୟଭୁକ୍ତ ବହୁବିଧ ରଚନା ରଚିତ ହୋଇଥିଲେ ହେଁ, ସେ ବିଷୟରେ ଏଯାବତ୍ ଯଥୋଚିତ ଆଲୋଚନା ହୋଇନାହିଁ । ଏହି ସମ୍ପର୍କୀୟ ଆଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ଶିଶୁସାହିତ୍ୟର ସ୍ୱଧର୍ମ ଓ ସ୍ୱରୂପ ବିଷୟରେ ଅବହିତ ହେବା ଆବଶ୍ୟକ । 'ଶିଶୁ-ସାହିତ୍ୟ' ଏହି ସମାସାନ୍ତ ପଦର ଅର୍ଥ ଯେ ଶିଶୁମାନଙ୍କଦ୍ୱାରା ରଚିତ ସାହିତ୍ୟ ନୁହେଁ, ଏହା କହିବା ଅନାବଶ୍ୟକ । ଏହି ଶିଶୁସାହିତ୍ୟ କହିଲେ ଶିଶୁମାନଙ୍କ ଉପଯୋଗୀ ବୟସ୍କମାନଙ୍କଦ୍ୱାରା ରଚିତ ରଚନାବଳୀକୁ ହିଁ ବୁଝାଇ ଥାଏ । ମାତ୍ର ଶିଶୁ-ସାହିତ୍ୟ ପର୍ଯ୍ୟାୟଭୁକ୍ତ ରଚନାବଳୀ ସମ୍ପର୍କରେ ଗୁରୁତର ଅଭିଯୋଗ କରାଯାଇଥାଏ । ପ୍ରଥମତଃ ଯାହା କିଛି ବୟସ୍କମାନେ ଶିଶୁମାନଙ୍କ ଲାଗି ରଚନା କରିଥାନ୍ତି, ସେଗୁଡ଼ିକ 'ସାହିତ୍ୟ' ପଦବାଚ୍ୟ ନୁହେଁ । ଦ୍ୱିତୀୟତଃ ବୟସ୍କମାନଙ୍କଦ୍ୱାରା ଶିଶୁ-ସାହିତ୍ୟ ରଚନା ମଧ୍ୟ ସମ୍ଭବପର ନୁହେଁ । ବଙ୍ଗର ପ୍ରଖ୍ୟାତ ସାହିତ୍ୟ ରଥୀ ପ୍ରମଥ ଚୌଧୁରୀ (ବୀରବଲ)ଙ୍କ ଭାଷାରେ—"ଆମାର ଦୃଢ଼ ବିଶ୍ୱାସ ଯେ, ଶିଶୁ-ସାହିତ୍ୟ ବଲେ କୋନଓ ପଦାର୍ଥର ଅସ୍ତିତ୍ୱ ନେଇ ଏବଂ ଥାକ୍‌ତେ ପାରେନା । କେନ ନା ଶିଶୁ-ପଛନ୍ଦ-ସାହିତ୍ୟ ଶିଶୁ ବ୍ୟତୀତ ଅପର କେଉ ରଚନା କର୍‌ତେ ପାରେନା;

---

* 'ଉତ୍କଳ' ରଜତ ଜୟନ୍ତୀ ଉତ୍ସବରେ ପଠିତ ଅଭିଭାଷଣ ।

ଆର ଶିଶୁରା ସମାଜେର ଉପର ଆର ଯେ ଅତ୍ୟାଚାର କରୁନ୍ନା କେନ ସାହିତ୍ୟ ରଚନା କରେନା ।"

( ସାରବଲେର ହାଲ ଖାତା, ଶିଶୁ-ସାହିତ୍ୟ ୩୪୩ ପୃଷ୍ଠା )

ମାତ୍ର ଆମ୍ଭେମାନେ ସାମ୍ପ୍ରତିକ କାଳରେ ଶିଶୁମାନଙ୍କ ଉପଯୋଗୀ ବହୁବିଧ ରଚନା ସୃଷ୍ଟି କରି ଚାଲିଛୁଁ । ଏଗୁଡ଼ିକ ସାହିତ୍ୟର ସଂଜ୍ଞାନୁଯାୟୀ ସାହିତ୍ୟ-ପଦବାଚ୍ୟ ନ ହୋଇ ପାରିଲେ ହେଁ ଏହି ଧରଣର ରଚନା ସୃଷ୍ଟିର ଯେ ସର୍ବବିଧ ଉପଯୋଗିତା ଅଛି, ଏହା ଅନସ୍ୱୀକାର୍ଯ୍ୟ । ଆମ୍ଭେମାନେ ଚେଷ୍ଟା କଲେହେଁ ସାର୍ବଭୌମିକ ତଥା ଚିର କାଳୀନ ଶିଶୁ ଉପଯୋଗୀ ସାହିତ୍ୟ-ସୃଷ୍ଟି କରିପାରିବୁ ନାହିଁ । ତାର କାରଣ, ମନୁଷ୍ୟର ମନ ତଥା ପରିବେଶ ଆଜି ବଦଳି ଯାଇଛି । ମନୁଷ୍ୟ ତାର ସହଜ, ସରଳ, ଶିଶୁ-ସୁଲଭ ଭାବପ୍ରବଣତା, କୌତୁହଳ, କଳ୍ପନା ହରାଇ ବସିଛି । ଆଧୁନିକ ଯୁଗରେ ସର୍ବତ୍ର ତେଣୁ ସେହି ପ୍ରାଚୀନ ସ୍ୱର୍ଣ୍ଣୋଜ୍ଜ୍ୱଳ ଯୁଗରେ ରଚିତ ହୋଇଥିବା ରଚନାବଳୀକୁ ହିଁ ଶିଶୁମାନଙ୍କ ଉପଯୋଗୀ କରି ଆମ୍ଭେମାନେ ପୁନର୍ବାର ରଚନା କରୁଅଛୁଁ ।

ଏହାର ଅନ୍ୟତମ ପ୍ରମାଣ ହେଉଛି, ଶିଶୁମାନେ ଯେଉଁ ସାହିତ୍ୟ ପଢ଼ନ୍ତି ବା ପଢ଼ିବାକୁ ଭଲ ପାଆନ୍ତି, ତାହା ମୁଖ୍ୟତଃ ହେଉ ବା ଗୌଣତଃ ହେଉ, ପିଲାମାନଙ୍କ ପାଇଁ ନୁହେଁ; ବୟସ୍କ-ମାନଙ୍କ ପାଇଁ ହିଁ ଲେଖା ହୋଇଥିଲା । କାହାଣୀ, ରୂପକଥା, ରାମାୟଣ, ମହାଭାରତ, ଆରବ୍ୟ ଉପନ୍ୟାସ, ଅନକୁଲ୍ ଟମ୍ସ କ୍ୟାବିନ୍, ଗଲିଭର୍ସ ଟ୍ରାଭଲସ୍ 'ରବିନସନ କ୍ରୁସୋ'—ଏ ସମସ୍ତଙ୍କ ମଧ୍ୟରୁ କୌଣସିଟି ସର୍ବାଦୌ ଶିଶୁମାନଙ୍କ ଲାଗି ରଚିତ ହୋଇ ନାହିଁ । ଏଥିରୁ ପ୍ରମାଣିତ

ହୁଏ ଯେ ଉକ୍ତାଙ୍ଗ ସାହିତ୍ୟର ଏକ ବିଶେଷ ଅଙ୍ଗକୁ ପିଲମାନେ ଆସ୍ୱାଦନ କରନ୍ତିଅନ୍ତି ।

ସମ୍ଭବତଃ ଏଥିପାଇଁ ଅକ୍ସଫୋର୍ଡ଼ ଯୁନିଅର ଏନସାଇକ୍ଲୋପିଡ଼ିଆରେ 'ଶିଶୁ-ସାହିତ୍ୟ' ପରିବର୍ତ୍ତେ 'ଶିଶୁ-ପୁସ୍ତକ'(Childrens book) ଶବ୍ଦ ବ୍ୟବହୃତ ହୋଇଅଛି । ମାତ୍ର ଅନେକେ ଶିଶୁ-ସାହିତ୍ୟ ସୃଷ୍ଟିର ସମ୍ଭବପରତା ବିଷୟରେ ସମ୍ପୂର୍ଣ୍ଣ ଆସ୍ଥାବାନ । ଏଣୁ ଶିଶୁ-ସାହିତ୍ୟ ଆଲୋଚନା ପ୍ରସଙ୍ଗରେ ଅନ୍ୟତ୍ର କୁହାଯାଇଛି— "In its narrower meaning Childrens' literature consists of the written production shaped by creative imaginations to entertain and interest the child, but in its wider and truer sense, it embraces all literature, which contains dramatic action, purity and beauty of style and simplicity, warmth and sincerity of treatment.'

## ଓଡ଼ିଆ ଶିଶୁ-ସାହିତ୍ୟର ଆଦିମ ପର୍ବ—
## ପ୍ରାକ୍ ଊନବିଂଶ ଶତାବ୍ଦୀ—

ପ୍ରାଚୀନ ଓଡ଼ିଆ ତଥା ସଂସ୍କୃତରେ ଶିଶୁ-ସାହିତ୍ୟ ପଦବାଚ୍ୟ କୌଣସି ବିଷୟ ନଥିଲା । ପ୍ରାଚୀନ ଓଡ଼ିଆ ସାହିତ୍ୟରେ କେତେକ ଶିଶୁପାଠ୍ୟ ରଚନାବଳୀ ଥିଲେ ହେଁ ଆଧୁନିକ ଅର୍ଥରେ ଶିଶୁ-ସାହିତ୍ୟ ନଥିଲା । ସମ୍ଭବତଃ ସ୍ମରଣାତୀତ କାଳରୁ ଓଡ଼ିଆରେ ବର୍ଣ୍ଣମାଳା ଶିକ୍ଷା ଦେବା ଲାଗି 'ଚଉତିଶା' ଜାତୀୟ ଗୀତ-କବିତା

ପରିକଳ୍ପିତ ତଥା ନିୟୋଜିତ ହୋଇଥିଲା । ପୂର୍ବେ ଆମ ଦେଶର ଶିଶୁମାନେ ବର୍ଣ୍ଣ ପରିଚୟ ଧରିବ ବଳରାମ ଦାସଙ୍କ 'କମଳଲୋଚନ' ମାର୍କଣ୍ଡଦାସଙ୍କ 'କେଶବ କୋଇଲି' ଭକ୍ତଚରଣଙ୍କ 'ମନବୋଧ ଚଉତିଶା' 'କଳାକଳେବର ଚଉତିଶା' ପ୍ରଭୃତି ପାଠ କରୁଥିଲେ । ଏହାର ପରବର୍ତ୍ତୀ ସ୍ତରରେ ଦିନାଇ ଦାସଙ୍କ ଗୋପୀଭାଷା, ଜଗନ୍ନାଥ ଦାସଙ୍କ 'ଭାଗବତ', ଘନକୃଷ୍ଣଙ୍କ ଭୂଗୋଳବସିନ୍ଧୁ ଓ ତା'ପରେ ଛାନ୍ଦଗୀତ ବା 'ମଥୁରା ମଙ୍ଗଳ,' 'ବିଦଗ୍ଧ ଚିନ୍ତାମଣି' ପ୍ରଭୃତି ପ୍ରାଚୀନ କାବ୍ୟ କିଶୋର-ସାହିତ୍ୟଭାବେ ଅଧୀତ ହେଉଥିଲା । ଏତଦ୍‌ବ୍ୟତୀତ କେତେକ ପ୍ରାଚୀନ କବିଙ୍କ ବିରଚିତ 'ବୋଲି' ( ଯାହାକି 'ଗୁଣ୍ଠ ବୋଲି' ନାମରେ ପରିଚିତ ) ମଧ୍ୟ ସେ ଯୁଗରେ ଶିଶୁ-ଉପଯୋଗୀ ସାହିତ୍ୟ ନାମରେ ପରିଗଣିତ ହେଉଥିଲା ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ କବି ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ'ରେ ପାରମ୍ପରିକ କାହାଣୀ ଓ ବ୍ରତକଥା ଶ୍ରେଣୀର କେତେକ ଶିଶୁ-ଉପଯୋଗୀ ରଚନା ଥିଲେହେଁ ଏହା ପୂର୍ବୋକ୍ତ ରଚନାମାନଙ୍କ ଭଳି ମୁଖ୍ୟତଃ ବୟସ୍କମାନଙ୍କ ଉଦ୍ଦେଶ୍ୟରେହିଁ ରଚିତ ହୋଇଥିଲା ।

## ଊନବିଂଶ ଶତକର ଶିଶୁ-ସାହିତ୍ୟ ଓ ସାହିତ୍ୟିକ—

ଏହାପରେ ଇଂରାଜୀ ଶିକ୍ଷାର ପ୍ରବର୍ତ୍ତନ ପରେ ଅର୍ଥାତ୍ ଊନବିଂଶ ଶତାବ୍ଦୀର ଶେଷ ଭାଗରେ 'ଓଡ଼ିଆ ସ୍ୱତନ୍ତ୍ର ଭାଷାନଷ୍ଟ' ଆନ୍ଦୋଳନର (୧୮୬୮—୭୦) ପ୍ରତିବାଦ ସ୍ୱରୂପ ଯେତେବେଳେ ରାଧାନାଥ, ମଧୁସୂଦନ, ଫକୀରମୋହନ ଓ ଗୋବିନ୍ଦ ରଥ ପ୍ରଭୃତି ଶିଶୁ ଉପଯୋଗୀ ପାଠ୍ୟ ପୁସ୍ତକ ରଚନାରେ ପ୍ରବୃତ୍ତ ହେଲେ, ସେହି

ସମୟରୁହିଁ ଯଥାର୍ଥତଃ ଆଧୁନିକ ଓଡ଼ିଆ ସାହିତ୍ୟ ତଥା ଶିଶୁ-ସାହିତ୍ୟ ରଚନାର ସୂତ୍ରପାତ ହେଲା । ରାଧାନାଥ ପାଠ୍ୟ ପୁସ୍ତକ ରଚନା କରିଥିଲେ ହେଁ ଶିଶୁ ଉପଯୋଗୀ କୌଣସି ପୁସ୍ତକ ରଚନା କରିବାକୁ ସମର୍ଥ ହୋଇ ପାରି ନାହାନ୍ତି । ମାତ୍ର ଏ କ୍ଷେତ୍ରରେ ମଧୁସୂଦନ, ଫକୀରମୋହନ ଓ ଗୋବିନ୍ଦ ରଥ ବହୁ ପରିମାଣରେ ସାର୍ଥକତା ଅର୍ଜନ କରିଅଛନ୍ତି । ମଧୁସୂଦନଙ୍କ ଶିଶୁ ପାଠ୍ୟ 'ବର୍ଣ୍ଣବୋଧ' ରଚିତ ହେବା ପୂର୍ବରୁ ଗୋବିନ୍ଦ ରଥଙ୍କ 'ବର୍ଣ୍ଣବୋଧକ' ଓଡ଼ିଶାରେ ସର୍ବତ୍ର ପଠିତ ହେଉଥିଲା । ମଧୁସୂଦନଙ୍କ 'ପ୍ରଭାତ', 'ସନ୍ଧ୍ୟା', 'ସୁନ୍ଦର ସଂସାର', ସ୍ତବ, ଗ୍ରୀଷ୍ମ, ବର୍ଷାଦି ଷଡ଼ଋତୁ ଓ 'ପରିଶ୍ରମ' ପ୍ରଭୃତି କବିତାଗୁଡ଼ିକ ଶିଶୁ-ଗୀତିକାଭାବେ ଏକଦା ବହୁଳ ପ୍ରସିଦ୍ଧି ଅର୍ଜନ କରିଥିଲା । ଫକୀରମୋହନ ନିର୍ଦ୍ଦିଷ୍ଟଭାବେ ଶିଶୁମାନଙ୍କ ଉଦ୍ଦେଶ୍ୟରେ ଲେଖିଥିବାର ପ୍ରମାଣ ନଥିଲେ ହେଁ ତାହାଙ୍କ 'ଅବସର ବାସରେ' କବିତା ସଂଗ୍ରହସ୍ଥ 'ଦେଙ୍ଗଭାଇ' 'କୋଇଲିନାମା' 'ଡାହାଣୀ ଅ.ଲୁଅ' 'ଶଙ୍ଖ ବିରାଡ଼ି' 'ବଣିଚଢ଼େଇ' 'ସାହାଡ଼ା ଗଛ' 'ଭୂଆ ବିରାଡ଼ି' 'କାଳିଆ କୁକୁର' ପ୍ରଭୃତି କବିତା ଗୁଡ଼ିକ ଭାଷାର ସରଳତା, ବିଷୟବସ୍ତୁଗତ ସୁବୋଧତା ଓ ରସ ପରିବେଷଣର ସାରଲ୍ୟ ଦୃଷ୍ଟିରୁ ଉତ୍କୃଷ୍ଟ ଶିଶୁ-କବିତାଭାବେ ଗଣନୀୟ ।

## ବିଂଶ ଶତାବ୍ଦୀର ପ୍ରଥମ ପାଦ—୧୯୦୦-୧୯୨୫

ଊନବିଂଶ ଶତକର ସାହିତ୍ୟକମାନେ ଶିଶୁ ସାହିତ୍ୟ ଲେଖିବାରେ ଅଗ୍ରଣୀ ହେଲେହେଁ ଓଡ଼ିଆରେ ବିଧିବଦ୍ଧଭାବେ ଶିଶୁ-ସାହିତ୍ୟ ଲେଖିବାର ପ୍ରଚେଷ୍ଟା ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ହିଁ ସୂତ୍ରପାତ ହେଲା । ଏ ସମ୍ପର୍କରେ ଗୋପାଳଚନ୍ଦ୍ର ପ୍ରହରାଜ, ନନ୍ଦ-

କିଶୋର ବଳ, ଚନ୍ଦ୍ରଚରଣ ପଟ୍ଟନାୟକ ଓ ମୃତ୍ୟୁଞ୍ଜୟ ରଥଙ୍କ ନାମ ଉଲ୍ଲେଖଯୋଗ୍ୟ । ଗୋପାଳଚନ୍ଦ୍ର ପ୍ରହରାଜ ସର୍ବାଦୌ ଓଡ଼ିଶାର ଗ୍ରାମ୍ୟ ଗଳ୍ପର ପ୍ରଥମ ସଂଗ୍ରହ 'ଉତ୍କଳ କାହାଣୀ' ଓ 'ଆମ ଘରକରବାପାଙ୍କ କାହାଣୀ' ସଂକଳିତ କରିବା ସଙ୍ଗେ ସଙ୍ଗେ ସ୍ୱୟଂ ଅନେକଗୁଡ଼ିଏ ଶିଶୁ-କବିତା ମଧ୍ୟ ରଚନା କରିଥିଲେ; ତାହା 'ଧୋରେ ବାଇଆ ଧୋ' ନାମରେ ପ୍ରକାଶିତ । ମାତ୍ର ଆଧୁନିକ ଯୁଗରେ ସର୍ବୋତ୍କୃଷ୍ଟ ଶିଶୁ ସାହିତ୍ୟ ରଚୟିତାଭାବେ ନନ୍ଦକିଶୋର ହିଁ ଅଗ୍ରଗଣ୍ୟ । ତାହାଙ୍କର 'ନାନାବାୟା ଗୀତ' ଏକ ସଫଳ ସୃଷ୍ଟି । ଶୈଶବ-ପ୍ରକୃତି-ଭାବିତ ନନ୍ଦକିଶୋରଙ୍କ ଏହିସବୁ କବିତା ସହଜ, ସରଳ, ବାସ୍ତବ, ଅନାବିଲ ଓ ତତ୍ତ୍ୱ ନିରପେକ୍ଷ । ଶିଶୁ ଉପଯୋଗୀ କୌତୁହଳ ଉଦ୍ଦୀପକ ଅଥଚ ଅର୍ଥହୀନ କବିତା ରଚନା କରିବାରେ ନନ୍ଦକିଶୋର ଓଡ଼ିଆ ସାହିତ୍ୟରେ ଅଗ୍ରଣୀ ଓ ଅଦ୍ୱିତୀୟ । ତାହାଙ୍କର 'ସୁନାପଇତା' କବିତାଟି ଏ ସମ୍ପର୍କରେ ସ୍ମରଣ କରାଯାଇ ପାରେ ।

କାଶୀ ରଜା ଝିଅ ଲୋ ଭୁ ନଳରଜା ବୋହୂ
ନଳ ରଜା ବୋହୂ ଲୋ ଭୁ ନଈକି ଗାଧୋଇ ଯାଉ;
ନଈକି ଗାଧୋଇ ଯାଉ ଯାଉ ପାଇଲୁ ଗୋଡ଼ ବଳା
ଢେଙ୍କି କିଣିବାକୁ ନେଇଗଲୁ ସେହି ବଳା ।

(ନାନାବାୟା ଗୀତ)

ଏଇ ସ୍ତରର ଅନ୍ୟ କୌଣସି ଓଡ଼ିଆ କବିଙ୍କ ରଚିତ ଅର୍ଥହୀନ କବିତା (Nonsense Verse) ମୋର ଦୃଷ୍ଟିପଥାରୂଢ଼ ହୋଇ ନାହିଁ ।

ଏହାଛଡ଼ା ଓଡ଼ିଶାର ସୁପ୍ରଚଳିତ ଲୋକଗୀତମାନଙ୍କ ଭାବ ଭାଷା ଓ ପଦ୍ୟାଂଶକୁ ଅବଲମ୍ବନ କରି ସେ ଯେଉଁ ସଫଳ ପରୀକ୍ଷା କରିଛନ୍ତି ତାହା ମଧ୍ୟ ଉଲ୍ଲେଖଯୋଗ୍ୟ—'ମେଘ ବରଷଇ ଟପର ଟପର, କେଶୁର ମାଇଲି ଗଜା', 'ଆମ ଆମ ମାଗ ଯୋଉଳ ପୋ ପିଣ୍ଡାରେ ବସ', 'ଡାମରା କାଉରେ ଡାମରା କାଉ' ବା 'ହୋରେ ବାଇଆ ହୋ' ଇତ୍ୟାଦି ପଂକ୍ତି ଅବଲମ୍ବନରେ ରଚିତ ତାହାଙ୍କ କବିତାଗୁଡ଼ିକ ଏଣୁ ଅତୀବ ହୃଦୟସ୍ପର୍ଶୀ ।

ଏହାଛଡ଼ା ଏଂସିତ କାଳମଧ୍ୟରେ ଅର୍ଥାତ୍ ୧୯୨୫ ମଧ୍ୟରେ ରଚିତ ତଥା ପ୍ରକାଶିତ ବିବିଧ 'ଶିଶୁ-ପାଠ୍ୟ ପୁସ୍ତକମାନଙ୍କ ମଧ୍ୟରୁ ମୃତ୍ୟୁଞ୍ଜୟ ରଥଙ୍କର ରସାବଳୀ, ମଧୁସୂଦନ ଦାସଙ୍କ ସଚିତ୍ର ବାଳ ମହାଭାରତ, ପଦ୍ମଚରଣ ପଟ୍ଟନାୟକଙ୍କ ସୁନାର ଦେଶ, ନୀଳକଣ୍ଠ ଦାଶଙ୍କ ମହାଭାରତ , ପିଲଙ୍କ ରାମାୟଣ' ବାଳକୃଷ୍ଣ କରଙ୍କ ସଚିତ୍ର ଶିଶୁ ରାମାୟଣ, ଫୁଲକୁଣ୍ଢେଇ, ଚନ୍ଦ୍ରଶେଖର ନନ୍ଦଙ୍କ ଶିବ (ଗଳ୍ପ) ନୂଆ ଶିଶୁ ଗୀତ· ଜାନକୀନାଥ ରାଉତରାୟ ମହାପାତ୍ରଙ୍କ ପୁଷ୍ପାଞ୍ଜଳୀ, ବାଳକୃଷ୍ଣ ପଟ୍ଟନାୟକଙ୍କ ଗୁରୁ ଲବଙ୍ଗଲତା, ଫୁଲ ବଉଳବେଣୀ, କାଳୀଚରଣ ପଟ୍ଟନାୟକଙ୍କ କଳାହାଣ୍ଡିଆ ମେଘ, ହରେକୃଷ୍ଣ ଦାସଙ୍କ ଶିଶୁରଞ୍ଜନ ଗୀତିକା, ବ୍ରହ୍ମାନନ୍ଦ ଷଡ଼ଙ୍ଗୀଙ୍କ ଶିଶୁ ସଙ୍ଗୀତ, ଦ୍ୱିଜେନ୍ଦ୍ରଲାଲ ବସୁଙ୍କ ଚଢ଼େଇଖାନା, ବଳରାମ ଦାସଙ୍କ ଶିଶୁବୋଧ ରାମାୟଣ, ମଣିଚରଣ ମହାପାତ୍ରଙ୍କ ନୂତନ ଶିଶୁଖେଳ ଗୀତ, ବଙ୍କନିଧି ପଟ୍ଟନାୟକଙ୍କ ସାବିତ୍ରୀ, କଥା ଚିଠିକା, ସୀତା, ମିର୍ଜା ମହମ୍ମଦ ୟାକୁବ ବେଗ୍‌ଙ୍କ ଅପସରା କାହାଣୀ, ରାଘବାନନ୍ଦ ଦାସଙ୍କ ସହଧର୍ମିଣୀଙ୍କ କଥା ଲହରୀ, ଶ୍ରୀନିବାସ ସିଂହଙ୍କ ଶିଶୁଖେଳା ଗୀତ, ମୁନ୍‌ସି ଜାନସାହାଙ୍କ ଶୈଶବ ଗୀତିକା, ରାମଚନ୍ଦ୍ର ଆଚାର୍ଯ୍ୟଙ୍କ

ହିତକଥା ପ୍ରଥମ ଓ ଦ୍ୱିତୀୟ ଭାଗ, ଶିଶୁ ଭକ୍ତ, ଦୟାନିଧି ମିଶ୍ରଙ୍କ କଥାକଦମ୍ବ ପ୍ରଭୃତି ପୁସ୍ତକଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ ।

ମୋଟ ଉପରେ କହିଲେ ଓଡ଼ିଆ ଶିଶୁସାହିତ୍ୟ ରଚନାର ଏହି ପ୍ରାଥମିକ ସ୍ତର ତାହାର ଉଜ୍ଜ୍ୱଳ ସମ୍ଭାବନା ଓ ବିକାଶୋନ୍ମୁଖୀ ପ୍ରତିଶ୍ରୁତିରେ ରଞ୍ଜିତ । ୧୯୨୫ ରୁ ୧୯୪୭ ମଧ୍ୟରେ ଏହି ପ୍ରଚେଷ୍ଟାର ବିକାଶ ଶିଶୁସାହିତ୍ୟର ବିଭିନ୍ନ ବିଭାଗକୁ ଉଜ୍ଜୀବିତ କରିଥିଲା ।

ଓଡ଼ିଶାର ପ୍ରଥମ ଶିଶୁ ମାସିକ ପତ୍ରିକା 'ପଞ୍ଚାମୃତ' ୮ ଚିନ୍ତାମଣି ଆଚାର୍ଯ୍ୟ ଓ ଅଗଣି ଦାସଙ୍କ ଯୁଗ୍ମ ସମ୍ପାଦନାରେ କଟକ ଟ୍ରେଡ଼ିଂ-କମ୍ପାନୀ ପକ୍ଷରୁ ପ୍ରକାଶ ପାଇଥିଲା । ଏହି ପତ୍ରିକାଟି ପ୍ରାୟ ଛଅ ବର୍ଷ ପ୍ରଚଳିତ ଥିଲା ଓ ଏହା ଉନ୍ନତ ସ୍ତରର ଶିଶୁ ପତ୍ରିକାଭାବେ ଗଣ୍ୟ । ଗୋପାଳ ପ୍ରହରାଜ, ପୀତାମ୍ବରୀ ଦେବୀ, ଗୋଦାବରୀଶ ମିଶ୍ର, ସୁପ୍ରଭା ଦେବୀ, ପ୍ରତିଭା ଦେବୀ, ଦୟାନିଧି ମିଶ୍ରଙ୍କର ବହୁବିଧ ଗଳ୍ପ, ପଦ୍ମ-ଚରଣ, ଅଜୟଚନ୍ଦ୍ର ଦାସ, ଉପେନ୍ଦ୍ର ତ୍ରିପାଠୀ, କୃଷ୍ଣଚନ୍ଦ୍ର କର, ରମାରଞ୍ଜନ ମହାନ୍ତି ପ୍ରଭୃତିଙ୍କ ବହୁ କବିତା ଏଥିରେ ପ୍ରକାଶିତ ହୋଇଥିଲା ।

ଏହାପରେ ୧୯୩୧ ମସିହାରେ ସୁପ୍ରସିଦ୍ଧ ଓଡ଼ିଆ ଶିଶୁ ମାସିକ ପତ୍ରିକା 'ଜହ୍ନମାମୁ' ବାଳକୃଷ୍ଣ କରଙ୍କ ସମ୍ପାଦକତ୍ୱରେ ପ୍ରକାଶ ପାଇଥିଲା । ପ୍ରାୟ ବାର ବର୍ଷ ପର୍ଯ୍ୟନ୍ତ ଏହା ପ୍ରକାଶିତ ହୋଇ ଶିଶୁ-ସାହିତ୍ୟର ବିଭିନ୍ନ ବିଭାଗରେ ସମୁନ୍ନତି ସାଧନ କରିଅଛି । 'ଜହ୍ନମାମୁଁ'ର ପ୍ରଥମ ସଂଖ୍ୟାର ପ୍ରଥମ ରଚନାଟି ହେଉଛି କାନ୍ତକବି ଲକ୍ଷ୍ମୀକାନ୍ତଙ୍କର ରଚିତ 'ଆ ଜହ୍ନମାମୁଁ' ଶୀର୍ଷକ କବିତା । ଗଳ୍ପ କବିତା ବ୍ୟତୀତ ଏହି ସଚିତ୍ର ପତ୍ରିକାରେ ଜ୍ଞାନ-ବିଜ୍ଞାନ, ରଙ୍ଗରସ,

ଗୋଲକଧନ୍ଦା ଓ ତାର ଉତ୍ତର, 'ଗୁପ୍ତମନ୍ତ୍ର', ସୁନା ଫରୁଆ ପ୍ରଭୃତି ବିଭିନ୍ନ ଜ୍ଞାତବ୍ୟ ଓ କୌତୁକାବହ ବିଷୟ ସ୍ଥାନ ପାଉଥିଲା । 'ଜହ୍ନମାମୁ'ର ଗଳ୍ପ ଓ କବିତା ଲେଖକମାନଙ୍କ ମଧ୍ୟରୁ ୯ ପଦ୍ମଚରଣ, ସର୍ବଶ୍ରୀ ଉପେନ୍ଦ୍ର ତ୍ରିପାଠୀ, କୈଳାଶ ତ୍ରିପାଠୀ, ଜଗନ୍ନାଥ ପଡ଼ିଆରୀ, କୃଷ୍ଣଚନ୍ଦ୍ର କର, ବାମଦେବ ମିଶ୍ର, ହରିହର ମିଶ୍ର, ବାଳକୃଷ୍ଣ କର, ଅନନ୍ତଚରଣ ଶତପଥୀ, ଭଗବାନ ପତି, ଉପେନ୍ଦ୍ର ତ୍ରିପାଠୀ, ବଂଶୀଧର ସାମନ୍ତରାୟ, ଡମ୍ବରୁଧର ପରିଡ଼ା, କୃଷ୍ଣଚନ୍ଦ୍ର ତ୍ରିପାଠୀ, ସଚ୍ଚିଦାନନ୍ଦ ବେହୁରା, ହରିହର ମହାପାତ୍ର, ଗୋଦାବରୀଶ ମହାପାତ୍ର, ରାମପ୍ରସାଦ ସିଂହ, ସଚ୍ଚିଦାନନ୍ଦ ମହାନ୍ତି, କୁବେର ଦଳାଇ, ଭୁବନେଶ୍ୱର ମିଶ୍ର, କୁଞ୍ଜବିହାରୀ ଦାସ ପ୍ରଭୃତି ବହୁ ଲେଖକଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଏହାଛଡ଼ା 'ଡଗର'ରେ (୧୯୩୬) ନାଗବନ୍ଧୁ ବିଭାଗରେ ମଧ୍ୟ ଦୀର୍ଘକାଳ ଧରି ଧାରାବାହିକଭାବେ ବହୁ ଶିଶୁ-କବିତା ପ୍ରକାଶ ପାଇଥିଲା । ୧୯୪୬ ମସିହାରେ ଜାଜପୁର କବି ବୀରକିଶୋରଙ୍କ ସମ୍ପାଦନାରେ 'ମୋ ଦେଶ' ପତ୍ରିକା ପ୍ରକାଶିତ ହୋଇ ଉଚ୍ଚାଙ୍ଗ ଶିଶୁସାହିତ୍ୟ ରଚନାରେ ମଧ୍ୟ ପ୍ରଭୂତ ସାହାଯ୍ୟ କରିଥିଲା ।

## ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଶିଶୁ-ସାହିତ୍ୟ—

ସ୍ୱାଧୀନତା ଲାଭପରେ ଓଡ଼ିଆରେ ଶିଶୁ-ସାହିତ୍ୟ ସୃଷ୍ଟି ଲାଗି ଅଧିକ ଆଗ୍ରହ ପରିଲକ୍ଷିତ ହେଉଅଛି । ଆଲୋଚ୍ୟ କାଳ ମଧ୍ୟରେ ପାଞ୍ଚଟି ଶିଶୁ ପତ୍ରିକା ଏହି ସାହିତ୍ୟ ସୃଷ୍ଟି ଓ ତାହାର ପ୍ରସାର କାର୍ଯ୍ୟରେ ନିୟୋଜିତ । ତନ୍ମଧ୍ୟରୁ ଶ୍ରୀଯୁକ୍ତ ରାମକୃଷ୍ଣ ନନ୍ଦଙ୍କ ଦ୍ୱାରା ୧୯୫୧ ମସିହାରୁ ସମ୍ପାଦିତ ଜ୍ଞାନ-ବିଜ୍ଞାନମୂଳକ ପତ୍ରିକା 'ସଂସାର' ଶ୍ରୀଯୁକ୍ତ ବିନୋଦ କାନୁନ୍‌ଗୋଙ୍କ ଦ୍ୱାରା ୧୯୫୪ ମସିହାରୁ ସମ୍ପାଦିତ

'ଶିଶୁ ସମ୍ବାଦ', ଶ୍ରୀଯୁକ୍ତ ରାମପ୍ରସାଦ ମହାନ୍ତି (ଜହ୍ନିର ଭାଇ)ଙ୍କ ଦ୍ୱାରା ୧୯୫୬ ମସିହାରୁ ସମ୍ପାଦିତ ଓ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ପ୍ରକାଶିତ **'ମୀନା ବଜାର'**, ଶ୍ରୀଯୁକ୍ତ ଗୋଦାବରୀଶ ମହାପାତ୍ରଙ୍କ ଦ୍ୱାରା ୧୯୫୭ ମସିହାରୁ ସମ୍ପାଦିତ 'ଝୁଁଆ ଝୁଇଁ' ଉଲ୍ଲେଖଯୋଗ୍ୟ । ପ୍ରତ୍ୟେକ ବର୍ଷ ରାଜ୍ୟ ସ୍ତରରେ ତଥା ଭାରତ ସରକାରଙ୍କ ପକ୍ଷରୁ ଶିଶୁ-ସାହିତ୍ୟ ଲାଗି ପୁରସ୍କାର ଲାଭର ଆଶା ମଧ୍ୟ ଲେଖକମାନଙ୍କୁ ଉନ୍ନତ ଶିଶୁ-ସାହିତ୍ୟ ସୃଷ୍ଟି ଲାଗି ଉତ୍ସାହିତ କରୁଅଛି । ପ୍ରଜାତନ୍ତ୍ର, ମାତୃଭୂମି, ସମାଜ, କଳିଙ୍ଗ ପ୍ରଭୃତି ଦୈନିକ ସମ୍ବାଦପତ୍ର ପୃଷ୍ଠାରେ ଶିଶୁ ଉପଯୋଗୀ ବହୁ କବିତା, ଗଳ୍ପ ଓ ଶିକ୍ଷାପ୍ରଦ ବିଷୟ ପ୍ରକାଶିତ ହେଉଅଛି ଏବଂ ଆକାଶବାଣୀ କର୍ତ୍ତୃପକ୍ଷ ମଧ୍ୟ ଶିଶୁ-ସାହିତ୍ୟ ପ୍ରଚାରରେ ସହାୟତା କରୁଅଛନ୍ତି ।

ଏ ସମସ୍ତ ସତ୍ତ୍ୱେ ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ, ଓଡ଼ିଆ ଶିଶୁ-ସାହିତ୍ୟ ଅତ୍ୟନ୍ତ ନିମ୍ନ ସ୍ତରରେ ରହିଅଛି । ପାଶ୍ଚାତ୍ୟ ବା ଆମେରିକାର ଶିଶୁ-ସାହିତ୍ୟ ସଙ୍ଗେ ଓଡ଼ିଆ ଶିଶୁ-ସାହିତ୍ୟ ପୁସ୍ତକକୁ ତୁଳନା କରିବାର ଦୁଃସାହସ ଛାଡ଼ ଭାରତର ବିଭିନ୍ନ ପ୍ରାନ୍ତୀୟ ଶିଶୁ ସାହିତ୍ୟ ସଙ୍ଗେ ତୁଳନା କଲେ ଆମର ଶୋଚନୀୟ ଦୁରବସ୍ଥା ହୃଦୟଙ୍ଗମ କରିହୁଏ । ମୁଦ୍ରଣ ପରିପାଟୀ, ଚୟନ ପଦ୍ଧତି, ଭାଷା, ଭାବ, ପରିମାଣ ପ୍ରତ୍ୟେକ ଦୃଷ୍ଟିରୁ ଓଡ଼ିଆ ଶିଶୁ-ସାହିତ୍ୟ ଯେ ବହୁ ନିମ୍ନ ସ୍ତରରେ ରହିଛି ଏହା ଅତ୍ୟନ୍ତ ସ୍ପଷ୍ଟ । ଏପରିକି ବଙ୍ଗଳାର କବି ୰ ସୁକୁମାର ରାୟଙ୍କ 'ଆବୁଲ ତାବୁଲ' ଭଳି ଏକ କବିତା ସଂଗ୍ରହ ମଧ୍ୟ ଓଡ଼ିଆ ସାହିତ୍ୟରେ ରଚିତ ହୋଇନାହିଁ ।

ସାମ୍ପ୍ରତିକ କାଳରେ ଅନ୍ୟାନ୍ୟ ଦେଶରେ ଶିଶୁ-ସାହିତ୍ୟ ପ୍ରକାଶ ପୁସ୍ତକ ବ୍ୟବସାୟର ଏକ ବିରାଟ ବିଭାଗରେ ପରିଣତ ହୋଇଅଛି ।

୧୯୫୦ର ପରିସଂଖ୍ୟାନ (Statistics)ରୁ ଜଣାଯାଏ ଯେ ସେହିବର୍ଷ ସ୍କୁଲ ପାଠ୍ୟ ପୁସ୍ତକମାନଙ୍କ ବ୍ୟତୀତ ୧୧୪୧ ଖଣ୍ଡ ସମ୍ପୂର୍ଣ୍ଣ ନୂତନ ଶିଶୁ-ସାହିତ୍ୟ ପୁସ୍ତକ ବ୍ରିଟେନରେ, ୯୦୭ ଖଣ୍ଡ ପୁସ୍ତକ ସଂଯୁକ୍ତ ଆମେରିକା ରାଜ୍ୟରେ ପ୍ରକାଶ ପାଇଥିଲା । ସେତେବେଳର ହିସାବରୁ ଜଣାଯାଏ ଯେ ସମସ୍ତ ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରୁ ଶତକଡ଼ା ୧୦ ଭାଗରୁ ବେଶୀ ପୁସ୍ତକ 'ଶିଶୁ ସାହିତ୍ୟ' ଅଧିକାର କରିଅଛି । ଅବଶ୍ୟ ବାର ବର୍ଷପରେ ବର୍ତ୍ତମାନର ହିସାବରେ ଏହାର ସଂଖ୍ୟା ଯେ ଅଧିକ ହୋଇଥିବ ଏଭଳି ଅନୁମାନ ସମ୍ପୂର୍ଣ୍ଣ ସ୍ୱାଭାବିକ ।

## ଇଂରାଜୀ ଶିଶୁ-ସାହିତ୍ୟ—

ଏହି ପ୍ରସଙ୍ଗରେ ଏଠାରେ ଇଂରାଜୀ ଶିଶୁ-ସାହିତ୍ୟ ସମ୍ପର୍କରେ କିଞ୍ଚିତ୍‌ସାମାନ୍ୟ ଉଲ୍ଲେଖ ଅପ୍ରାସଙ୍ଗିକ ହେବନାହିଁ । ଦ୍ୱିତୀୟ ଚାର୍ଲସଙ୍କ ପର୍ଯ୍ୟନ୍ତ (୧୭ଶ ଶତାବ୍ଦୀ) ଇଂଲଣ୍ଡରେ ପୁସ୍ତକମୁଦ୍ରଣ ଅବସ୍ଥାର ଉନ୍ନତି ହୋଇ ନଥିଲା । ଏଣୁ ବାଇବେଲର ଗଳ୍ପ ବ୍ୟତୀତ ଶିଶୁମାନେ କେବଳ ଏଶପଙ୍କ ନୀତିକଥା, ସନ୍ନ୍ୟାସୀ ଓ ସନ୍ଥ (saint) ମାନଙ୍କ ବିଷୟସମ୍ବଳିତ ଗଳ୍ପ ପଢ଼ିବାକୁ ପାଉଥିଲେ । ଏହିସବୁ ବିଷୟ ଶସ୍ତା କାଗଜରେ ବହୁ କାଠଖୋଦାଇ ଛବି ସଂଯୁକ୍ତ ହୋଇ ପ୍ରଚୁର ପତ୍ର ଆକାରରେ ପ୍ରକାଶ ପାଉଥିଲା । 'ଚ୍ୟାପମ୍ୟାନ' ନାମରେ ପରିଚିତ ଫେରିବାଲମାନେ ଏହାକୁ ବୁଲି ବୁଲି ବିକୁଥିଲେ । ୧୬ଶ ଶତାବ୍ଦୀରୁ ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ବ୍ୟବସ୍ଥା ଇଂରାଜୀ ଶିଶୁ ସାହିତ୍ୟ କ୍ଷେତ୍ରରେ ପରିଲକ୍ଷିତ ହୁଏ । ୧୬୭୮ ଖ୍ରୀଷ୍ଟାବ୍ଦରେ ଜନ୍ ବେନିଅନଙ୍କ ପିଲ୍‌ଗ୍ରିମ୍ ପ୍ରୋଗ୍ରେସ ପ୍ରକାଶିତ ହୋଇ ଶିଶୁ ଉପଯୋଗୀ ସାହିତ୍ୟସୃଷ୍ଟିର ଏକ ନୂତନ ପରମ୍ପରା ସୃଷ୍ଟି କଲା ।

୧୮ଶ ଶତାବ୍ଦୀର ପ୍ରାରମ୍ଭରେ କେବଳ ଇଂରାଜୀ ସାହିତ୍ୟର ନୁହେଁ ବିଶ୍ୱ ଶିଶୁ-ସାହିତ୍ୟର ଅବିନଶ୍ୱର ସମ୍ପଦ ଡିଫୋଙ୍କ ରଚିତ ରବିନସନ୍ କ୍ରୁସୋ ଓ ଯନାଥନ ସୁଇଫ୍‌ଟଙ୍କ ଗଲିଭର୍ସ ଟ୍ରାଭେଲ ପ୍ରକାଶିତ ହୋଇଥିଲା ।

୧୮ଶ ଶତାବ୍ଦୀର ଇଂରାଜୀ ଶିଶୁ ସାହିତ୍ୟ କ୍ଷେତ୍ରରେ ସର୍ବ-ପ୍ରଧାନ ପୁସ୍ତକ ହେଉଛି Perraults'ଙ୍କ ଗଳ୍ପକଥାମାଳା ବା Fairy tales ର ଇଂରାଜୀ ଅନୁବାଦ । ରବର୍ଟ ସାମ୍ବର ଏହାକୁ ପ୍ରଥମେ ଇଂରାଜୀରେ ଅନୁବାଦ କରି ଅମରତ୍ୱ ଲାଭ କରିଅଛନ୍ତି । ଅବଶ୍ୟ ଏଠାରେ ଦୁଇଟି ଶିଶୁ କବିତା ପୁସ୍ତକ ଜନ୍ ବେନିଅନ୍‌ଙ୍କ A book for boys and girls or country rhimes for childreen ( ଖ୍ରୀ: ପୂ ୧୬୮୬ ) ଏବଂ ଆଇଜାକ୍ ଓ୍ୱାଟ୍‌ସଙ୍କ Divine songs attempted in easy language for the use of children ( ଖ୍ରୀ: ପୂ: ୧୭୧୫ ) ନାମ ଉଲ୍ଲେଖ-ଯୋଗ୍ୟ । ୧୭୦୮ରେ 'Arabian Nights' ଇଂରାଜୀରେ ଅନୂଦିତ ହେଲା ।

ସ୍ଥୂଳତଃ ୧୮ଶ ଶତାବ୍ଦୀରୁ ହିଁ ବିଧିବଦ୍ଧଭାବେ ଇଂରାଜୀରେ ଶିଶୁ-ସାହିତ୍ୟ ରଚିତ ହୋଇ ଆସୁଅଛି । ୧୯ଶ ଶତାବ୍ଦୀର ପ୍ରଥମ ପାଦ ପର୍ଯ୍ୟନ୍ତ ଅଧିକାଂଶ ଲେଖକ କାହାଣୀ ଛଳରେ ନୈତିକ ଶିକ୍ଷା ଦେବାକୁ ଶିଶୁ-ସାହିତ୍ୟର ଲକ୍ଷ୍ୟ ବୋଲି ଗ୍ରହଣ କରିଥିଲେ । ମାତ୍ର ଏହି ଉପଦେଶାତ୍ମକତା (Didacticsm) ପରିବର୍ତ୍ତେ କେବଳ କୌତୁକ, ରଙ୍ଗରସ ଓ କଳ୍ପିତ-କମାକାର ଉଦ୍ଭଟ (Fantasy) ରଚନାର ପ୍ରଥମ ପ୍ରବର୍ତ୍ତନ କରିଥିଲେ

ଉଇଲିୟମ ରସ୍କୋ (Roscoe) ନାମକ ଜନୈକ ଐତିହାସିକ ଓ ପାର୍ଲ୍ୟାମେଣ୍ଟ ସଭ୍ୟ । ୧୮୦୭ରେ ତାଙ୍କ ରଚିତ The Butterfly's Ball and The Grasshoppers Feast ପ୍ରଥମେ ପ୍ରକାଶିତ ହୋଇ ଏକ ନୂତନ ପରମ୍ପରା ସୃଷ୍ଟି କରିଥିଲା । ୧୮୬୫ରେ ଅକ୍ସଫୋର୍ଡର ଗଣିତ ଅଧ୍ୟାପକ Lewis Carrolଙ୍କ ପୃଥିବୀବିଖ୍ୟାତ ରଚନା Alice in Wonder Land ପ୍ରକାଶ ପାଇଥିଲା ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ମଧ୍ୟ ଚାର୍ଲ୍‌ସ କିଙ୍ଗ୍‌ସ୍ଲିଙ୍କ Water Babies (ପ୍ର: ପ୍ର: ୧୮୬୩), Anna sewel ଙ୍କ Black Beauty ( ପ୍ର: ପ୍ର: ୧୮୭୭ ), George Macdonaldଙ୍କ At the Back of the Northwind ( ପ୍ର: ପ୍ର: ୧୮୭୧ ) ପ୍ରଭୃତି ପୁସ୍ତକଦ୍ୱାରା ସୁସମୃଦ୍ଧ ହୋଇଥିଲା । ମୋଟଉପରେ ଗତ ଦେଢ଼ଶହ ବର୍ଷ ଧରି ଶିଶୁ ପାଠ୍ୟପୁସ୍ତକ ତଥା ଶିଶୁ ମନୋରଞ୍ଜକ ସାହିତ୍ୟ ପୁସ୍ତକକୁ ମୁଦ୍ରଣ, ଚିତ୍ରଣ ତଥା ରଚନା ପରିପାଟୀ ଦ୍ୱାରା ଉନ୍ନତ କରିବାର ବଧିବଦ୍ଧ ଦକ୍ଷତା ଅର୍ଜନ (Specialization) ଫଳରେ ଆଧୁନିକ ଇଂରେଜୀ ଶିଶୁସାହିତ୍ୟ ଏପରି ଉଚ୍ଚକୋଟିର ହୋଇ ପାରିଛି ।

ଆମେରିକା ପ୍ରଭୃତି ଦେଶରେ ଶିଶୁସାହିତ୍ୟର ବିକାଶ ସାଧନ ଲାଗି ପ୍ରଭୂତ ଗବେଷଣ ଓ ବିଭିନ୍ନ କ୍ଷେତ୍ରରେ ବିଶେଷ ଦକ୍ଷତା ଅର୍ଜନ ଚାଲିଛି । ଓଡ଼ିଆ ସାହିତ୍ୟରେ ଏ ପର୍ଯ୍ୟନ୍ତ ତାର ଆରମ୍ଭ ମଧ୍ୟ ହୋଇ ନାହିଁ । ସେ ଦେଶର ବହୁ ମୁଦ୍ରଣ ପ୍ରତିଷ୍ଠାନ, ବୁକକ୍ଲବ ଅନୁଷ୍ଠାନ, ଚିତ୍ର ଶିଳ୍ପୀ, ଲେଖକ, ପୁସ୍ତକ

ପ୍ରତିଷ୍ଠାନ ଓ ଶିକ୍ଷାବିତ୍ କେବଳ ମାତ୍ର ଶିଶୁସାହିତ୍ୟ ସଂପର୍କୀୟ କାର୍ଯ୍ୟରେ ଆପଣାକୁ ନିୟୋଜିତ କରିଅଛନ୍ତି । ମାତ୍ର ଆମ ଦେଶରେ ଏ ପର୍ଯ୍ୟନ୍ତ ତାହା ହୋଇନାହିଁ । ଶିଶୁସାହିତ୍ୟ ଆମର ବିଶ୍ୱ-ବିଦ୍ୟାଳୟ ସ୍ତରରେ ଗବେଷଣାର ବିଷୟ ହୋଇନାହିଁ । ଫଳରେ ଯେଉଁ ମୁଦ୍ରଣ ପ୍ରତିଷ୍ଠାନରେ ଟାଉଟି ବା ବିଜ୍ଞାପନ ଛପାଯାଏ ସେଇଠି ଆମର ଛପାହୁଏ ଶିଶୁସାହିତ୍ୟ । ଆମ ଦେଶର ଶିଳ୍ପୀ, ଲେଖକ ଗ୍ରାସାଚ୍ଛାଦନ ପାଇଁ ପ୍ରବୃତ୍ତିବିରୋଧୀ ନାନା ବୃତ୍ତି ଅବ-ଲମ୍ବନ କରି ସାମୟିକ ଚିତ୍ର ଓ ସାହିତ୍ୟ ରଚନାରେ ଆତ୍ମ-ନିୟୋଗ କରିବାକୁହିଁ ବାଧ ହୁଅନ୍ତି । ବ୍ଲକ ତିଆରିର ଉନ୍ନତ ପଦ୍ଧତି ଏବେ ମଧ୍ୟ ଆମ ଦେଶରେ ସମ୍ଭବ ହୋଇନାହିଁ । ଏଣୁ ପଶ୍ଚାଦ୍‌ବର୍ତ୍ତୀ ହେବାହିଁ ହୋଇଛି ଆମର ଶିଶୁ ସାହିତ୍ୟର ଭାଗ୍ୟଲିପି । ଏ ବିଷୟରେ ସରକାରଙ୍କଠାରୁ ଆରମ୍ଭ କରି ଆମ ଦେଶର ବୁଦ୍ଧି-ଜୀବୀ, ଶିଳ୍ପୀ, ନାଗରିକ, ପୁସ୍ତକବ୍ୟବସାୟୀ ସମସ୍ତେ ଅବହିତ ହେବା ଆବଶ୍ୟକ । ସମ୍ପ୍ରତି ସରକାରୀ ଉଦ୍ୟମରେ ଆମର ଶିଶୁ ପାଠ୍ୟ-ପୁସ୍ତକ ରଚନା ଓ ମୁଦ୍ରଣର ଉଦ୍ୟମ ହେଉଅଛି ।

✓ କେଉଁ ପ୍ରକାର କଥାବସ୍ତୁ ଓ କେଉଁ ପ୍ରକାର ଚିତ୍ର କେଉଁ ବୟସର ଶିଶୁଗୋଷ୍ଠୀର ମନୋରଞ୍ଜକ ସେ ବିଷୟରେ ମନସ୍ତତ୍ତ୍ୱ-ବିତ୍‌ମାନେ ବିବିଧ ପରୀକ୍ଷା କରିଅଛନ୍ତି । ସାଧାରଣ ଭାବରେ କହିଲେ ପଞ୍ଚମରୁ ଅଷ୍ଟମ ବର୍ଷ ବୟସ୍କ ଶିଶୁମାନଙ୍କୁ ପରୀଗଳ୍ପ, ପଶୁ ପକ୍ଷୀ ସଂପର୍କୀୟ ଗଳ୍ପ, ସରଳ ଗ୍ରାମ୍ୟ ଗଳ୍ପ, ଶିଶୁର ସୁପରିଜ୍ଞାତ ତଥା ଗୃହ-ପରିବେଷ୍ଟନୀ ସମ୍ବନ୍ଧୀୟ ଗଳ୍ପ, ଆକୃଷ୍ଟ କରିଥାଏ । ସେହିପରି ନବମରୁ ଚତୁର୍ଦ୍ଦଶ ବର୍ଷ ବୟସ୍କ ଶିଶୁମାନଙ୍କୁ ଭ୍ରମଣ, ଅଭିଯାନ, ବୀରତ୍ୱ, ଦେଶପ୍ରେମ, ରହସ୍ୟ, ବୈଜ୍ଞାନିକ ଆବିଷ୍କାର

ଜୀବନଚରିତ, ପୁରାଣ ଓ କିମ୍ବଦନ୍ତୀମୂଳକ ବିଷୟ ଆକୃଷ୍ଟ କରିଥାଏ । ଆମ ଶିଶୁସାହିତ୍ୟ ରଚୟିତା ତଥା ପ୍ରକାଶକ ଏ ବିଷୟରେ ଅବହିତ ହେବା ଆବଶ୍ୟକ ।

## ଓଡ଼ିଆ ଶିଶୁ ସାହିତ୍ୟର ଶ୍ରେଣୀ ବିଭାଗ—

ସମସ୍ତ ପ୍ରତିକୂଳ ପରିସ୍ଥିତି ମଧ୍ୟେ ଆମର ବିଭିନ୍ନ ବିଭାଗରେ ଯେଉଁ ସବୁ ଶିଶୁ ଉପଯୋଗୀ ସାହିତ୍ୟ ଇତିମଧ୍ୟରେ ସୃଷ୍ଟି ହୋଇଛି ତାହାକୁ ନିମ୍ନୋକ୍ତମତେ ବିଭକ୍ତ କରାଯାଇ ପାରେ । ପ୍ରତ୍ୟେକଟି ବିଭାଗ ସମ୍ପର୍କୀୟ ଆଲୋଚନା ବା ମୂଲ୍ୟାଙ୍କନ ଏଠାରେ ସମ୍ଭବପର ନୁହେ । ଏଠାରେ ମୁଁ କେବଳ ଶିଶୁସାହିତ୍ୟର ବିଭିନ୍ନ ବିଭାଗ ସମ୍ପର୍କରେ ଏକ ଅସଂପୂର୍ଣ୍ଣ ତାଲିକା ଦେବାର ପ୍ରୟାସ କରୁଛି ମାତ୍ର । ଓଡ଼ିଆ ଶିଶୁ-ସାହିତ୍ୟର ବିଭିନ୍ନ ବିଭାଗରେ ଯେ ସତ୍-ସାମାନ୍ୟ ହେଉ ପଛକେ ବିକାଶ ଘଟିଛି ଏହା ତାହାର ଏକ ନିଦର୍ଶନ । ଏଣୁ ଯଦି ମୋର ଅନବଧାନତା ଯୋଗୁଁ କୌଣସି ଲେଖକଙ୍କର ରଚନା ଏ ତାଲିକାରୁ ବାଦ୍ ପଡ଼ିଥାଏ, ତେବେ ମୁଁ କ୍ଷମା ମାଗି ନେଉଛି ।

୧ । **କବିତା**—ଓଡ଼ିଆରେ ଶିଶୁ-ଉପଯୋଗୀ ବହୁ ପୁସ୍ତକ ଇତି ମଧ୍ୟରେ ରଚିତ ହୋଇଅଛି । ଶିଶୁ ଉପଯୋଗୀ କବିତା ରଚନା କରିବାରେ ଉପେନ୍ଦ୍ର ତ୍ରିପାଠୀ, ଉଦୟନାଥ ଷଡ଼ଙ୍ଗୀ, ଜଗନ୍ନାଥ ମହାନ୍ତି, କୁଞ୍ଜବିହାରୀ ଦାସ, ବୀରେନ୍ଦ୍ରକୁମାର ଭୂୟାଁ, ବାଞ୍ଛାନିଧି ଦାସ, ବିଦ୍ୟୁତପ୍ରଭା ଦେବୀ, ମୁରାରିମୋହନ, ଜହ୍ନର ରାଇ ପ୍ରଭୃତି କୃତିତ୍ୱ ଅର୍ଜନ କରି ଅଛନ୍ତି । ଏହା ବ୍ୟତୀତ ୰ କୃଷ୍ଣ-ମୋହନ ପଟ୍ଟନାୟକଙ୍କ ମୋ ମାଆ ମୋ ଜନମମାଟି, ଶିଶୁ ଖେଳା

ଗୀତ ଓ ୰ଲକ୍ଷ୍ମୀକାନ୍ତଙ୍କ ଧର୍ମସଙ୍ଗୀତ ପୁସ୍ତକ ମଧ୍ୟ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ ।

୨ । **ଗଳ୍ପ ଓ କୌତୁକାବହ କାହାଣୀ**—ଏହି ପର୍ଯ୍ୟାୟଭୁକ୍ତ ରଚନାମାନଙ୍କୁ ଦୁଇଭାଗରେ ବିଭକ୍ତ କରାଯାଇ ପାରେ—ପ୍ରଥମଟି **ମୌଳିକ** ରଚନା ଓ ଦ୍ୱିତୀୟଟି ଆହୃତ, ଭାଷାନ୍ତରିତ ବା ପୁନଃକଥିତ (Retold) ଶ୍ରେଣୀର । ଶେଷୋକ୍ତ ଶ୍ରେଣୀର ରଚନାଭାବେ ଉନକୁଣ୍ଡି (ରାମକୃଷ୍ଣ ନନ୍ଦ), ରୁଷିଆର ରୂପକଥା, ସେକ୍‌ସପିଅର କାହାଣୀ, ଜାତକ ଗଳ୍ପ ୨ୟ ଭାଗ, ଗଲିଭର୍ କଥା, ଭାରତର ଗ୍ରାମ୍ୟଗଳ୍ପ, କାହାଣୀ ସଂଗ୍ରହ, ଦେଶ ବିଦେଶର କାହାଣୀ, ଦେଶ ବିଦେଶର ଉପକଥା (ଗୋଦାବରୀଶ ମହାପାତ୍ର), ପୃଥିବୀର ଶ୍ରେଷ୍ଠ ଗାଉଁଲି ଗଳ୍ପ (କୁଞ୍ଜବିହାରୀ), ସବୁ ଦେଶର ଗଳ୍ପ, ବେତାଳ କଥା ପ୍ରଭୃତି ପୁସ୍ତକମାନ ଉଲ୍ଲେଖଯୋଗ୍ୟ ।

ପ୍ରଥମୋକ୍ତ ପର୍ଯ୍ୟାୟର ରଚନାଭାବେ ବିଭିନ୍ନ 'ସିରିଜ'ର ଅନେକଗୁଡ଼ିଏ ପୁସ୍ତକ ଓଡ଼ିଆରେ ପ୍ରକାଶ ପାଇଛି । ଏ କ୍ଷେତ୍ରରେ କୃଷ୍ଣଚନ୍ଦ୍ର କର ଯଶସ୍ୱୀ । ତାହାଙ୍କ ରଚିତ ସାଧବଘର କଥା ସିରିଜର ୬ଟି ପୁସ୍ତକ, ପରୀମହଲ କଥା ସିରିଜରେ ୬ଖଣ୍ଡି ପୁସ୍ତକ, କୁହୁକ ରାଇଜ ସିରିଜରେ ପାଞ୍ଚଗୋଟି ପୁସ୍ତକ, ପରୀ ରାଇଜ ସିରିଜରେ ଛଅଗୋଟି, ସୁନା ରାଇଜ ସିରିଜରେ ଛଅଗୋଟି ପୁସ୍ତକ, ସୁନା ବୋଇତ (ଧନେଶ୍ୱର ଶତପଥୀ), ଉଦୟନାଥ ଷଡ଼ଙ୍ଗୀଙ୍କ ପାଞ୍ଚଭାଗରେ ବିଭକ୍ତ ବାରବୁଲି କାହାଣୀ, ଗୋଲୋକବିହାରୀ ଧଳଙ୍କ ଶିଶୁଶିକ୍ଷା କଥାମାଳା ପ୍ରଭୃତି ଉଲ୍ଲେଖଯୋଗ୍ୟ ।

୩ । **ନୀତିକଥା** ( Fable )—ଓଡ଼ିଆରେ ପ୍ରକୃତ ନୀତି-କଥା ପର୍ଯ୍ୟାୟଭୁକ୍ତ ରଚନା ରଚିତ ହୋଇନାହିଁ କହିଲେ ଚଳେ । ଏ କ୍ଷେତ୍ରରେ ଆମର କେବଳ ଆହରଣହିଁ ସାର ହୋଇଛି । ସଂସ୍କୃତରୁ ହିତୋପଦେଶ କଥା, ହିତକଥା ଓ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ହିତକଥା ସିରିଜର ମିତ୍ରଲାଭ, ସୁହୃଦ୍‌ଭେଦ, ସନ୍ଧିବିଗ୍ରହ ଆଦି ରଚନାଗୁଡ଼ିକ ହିଁ ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ।

୪ । **ପୌରାଣିକ ଓ କିମ୍ବଦନ୍ତୀମୂଳକ ରଚନା**—କୃଷ୍ଣଚନ୍ଦ୍ର କର, ଗୋଦାବରୀଶ ମହାପାତ୍ର ପ୍ରଭୃତିଙ୍କ ଦ୍ୱାରା ରଚିତ ପୁରାଣ ଗଳ୍ପମାଳା ଆଠଖଣ୍ଡ ଓ ଆର୍ଯ୍ୟଋଷି ଗ୍ରନ୍ଥମାଳା ଛଖଣ୍ଡ ବ୍ୟତୀତ ଅନ୍ତର୍ଯ୍ୟାମୀ ମିଶ୍ରଙ୍କ ରଚିତ ଦେବ ଦାନବ, ପୁରାଣକଥା ଆକୁଳ ମିଶ୍ରଙ୍କ ମହାଭାରତ କଥା ପ୍ରଭୃତି ପୁସ୍ତକଗୁଡ଼ିକୁ ଏହି ପର୍ଯ୍ୟାୟଭୁକ୍ତ ରଚନାଭାବେ ଗ୍ରହଣ କରାଯାଇ ପାରେ ।

୫ । **ଐତିହାସିକ ଓ ଜୀବନ ଚରିତମୂଳକ**—ଓଡ଼ିଆରେ ଅନେକଗୁଡ଼ିଏ ଶିଶୁ-ଉପଯୋଗୀ ଇତିହାସ ଓ ଜୀବନୀମୂଳକ ଗ୍ରନ୍ଥ ଇତିମଧ୍ୟରେ ପ୍ରକାଶ ପାଇଛି । ତନ୍ମଧ୍ୟରୁ ପ୍ରାୟ ୩୫ ଖଣ୍ଡ ଅମର ଚରିତମାଳା, ବିଜ୍ଞାନ ଆବିଷ୍କର୍ତ୍ତା ସିରିଜ, ଜଣେଥିଲେ ରାଜା ସିରିଜ, ଦୀପକ ମହଲ ସିରିଜ ( ଗ୍ରନ୍ଥ ସଂଖ୍ୟା ୫ ) ଜନନାୟକ ସିରିଜ ବ୍ୟତୀତ ସ୍ୱାମୀ ନିଗମାନନ୍ଦ ଓ ବିନୋଦ କାନୁନଗୋଙ୍କ ରଚିତ ଗାନ୍ଧି, ପଟେଲ, ଜହରଲାଲ ପ୍ରଭୃତି ପୁସ୍ତକଗୁଡ଼ିକ ଉଲ୍ଲେଖ-ଯୋଗ୍ୟ ।

୬ । **ଭ୍ରମଣ ଓ ଆବିଷ୍କାର**—ସ୍ୱର୍ଗତ ଗୋଦାବରୀଶ ମିଶ୍ର ସବାଦୌ ଏହି ଜାତୀୟ ଶିଶୁ ସାହିତ୍ୟ ରଚନାରେ ମନୋନିବେଶ କରିଥିଲେ । ଶିଶୁମାନଙ୍କ ଲାଗି ଆଫ୍ରିକା, ଅଷ୍ଟ୍ରେଲିଆ ପ୍ରଭୃତି

ଦେଶ ବିଦେଶରେ ନାନାକଥା ଲେଖି ସେ ପ୍ରଥମେ 'ଆମ ପଡ଼ଶୀ ଅଡ଼ଶୀ' ସିରିଜର ସୂତ୍ରପାତ କରିଥିଲେ । ତା'ପରେ 'ଅଭିଯାନ ଗ୍ରନ୍ଥମାଳା' 'ଦେଶ ବିଦେଶର ସହର' ଗ୍ରନ୍ଥମାଳା ଓ ଶମ୍ଭୁନାଥଙ୍କ 'ପିଲାଙ୍କ ବିଲାତ କଥା' ପ୍ରଭୃତି ପ୍ରକାଶିତ ହୋଇଥିଲା ।

**ପ୍ରକୃତି**—ଓଡ଼ିଆରେ ଏହି ପର୍ଯ୍ୟାୟଭୁକ୍ତ କେତେକ ରଚନା ମଧ୍ୟ ରଚିତ ହୋଇଛି । ଉଦାହରଣ ସ୍ୱରୂପ ଉଦୟନାଥ ଷଡ଼ଙ୍ଗୀଙ୍କ ରଚିତ ପୃଥିବୀ, ମଙ୍ଗଳ, ଚନ୍ଦ୍ର, ଆକାଶ, ସୂର୍ଯ୍ୟବିଷୟକ 'ଗ୍ରହ ଉପଗ୍ରହ ସିରିଜ'ର ପାଞ୍ଚଗୋଟି ପୁସ୍ତକ, ବିନୋଦ କାନୁନଗୋଙ୍କ 'ଚାଲନ୍ତା ରାଇଜର ଅମୁହାଁ ନଈ', ବେଲୁ ଘୋଷଙ୍କ 'ମାଉସୀଙ୍କ ଚିଠି', ବଣଜଙ୍ଗଲର ଜୀବଜନ୍ତୁ ସିରିଜ, ବିଚିତ୍ର ଜଳଜନ୍ତୁ, ବିଚିତ୍ର ମାଛ, ବାଘମୁହାଁ ଜଳଜନ୍ତୁ, ଜଳଯୋଦ୍ଧା ଜଳଜନ୍ତୁ, ଲକ୍ଷ୍ମୀକାନ୍ତଙ୍କ ଚିଡ଼ିଆଖାନା ପ୍ରଭୃତି ପୁସ୍ତକଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ ।

**ବିଜ୍ଞାନ ଓ ଶିଳ୍ପ**—ଏହି ସମ୍ପର୍କରେ ଓଡ଼ିଆରେ ପୂର୍ବରୁ ସ୍ୱତନ୍ତ୍ରଭାବେ ପୁସ୍ତକ ଲିଖିତ ହୋଇ ନଥିଲା । ଶ୍ରୀ ଗୋକୁଳାନନ୍ଦ ମହାପାତ୍ର ଅଜାଙ୍କ ମଜାକଥା ସିରିଜରେ ଚିନି, କାଚ, କାଗଜ ସମ୍ବନ୍ଧରେ କେତେଗୋଟି ପୁସ୍ତକ ପ୍ରଣୟନ କରି ଅଛନ୍ତି ।

ଏତଦ୍‌ବ୍ୟତୀତ ଶିଶୁମାନଙ୍କ ଲାଗି ଓଡ଼ିଆରେ ନାଟ୍ୟ-ସାହିତ୍ୟ ବା କଳା ଓ ସଙ୍ଗୀତ ସମ୍ପର୍କୀୟ ରଚନା ଏପର୍ଯ୍ୟନ୍ତ ଲିଖିତ ହୋଇନାହିଁ । ଦୁଃଖର ସହିତ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ବାଳକୃଷ୍ଣ କରଙ୍କ ସମ୍ପାଦିତ 'ଶିଶୁ ସଙ୍ଗୀନୀ' ପରେ ଓଡ଼ିଆରେ ପିଲାମାନଙ୍କ

ଲଗି ସ୍ୱତନ୍ତ୍ର ଏନ୍‌ସାଇକ୍ଲୋପିଡ଼ିଆ ବା ଜ୍ଞାନମଣ୍ଡଳ ମଧ୍ୟ ସଙ୍କଳିତ ହୋଇନାହିଁ ।

ଏହାହିଁ ହେଉଛି ବିଗତ କେତେ ବର୍ଷର ଓଡ଼ିଆ ଶିଶୁ-ସାହିତ୍ୟ ପ୍ରଚେଷ୍ଟାର ଏକ ସ୍ଥୂଳ ପରିଚୟ । ଶିଶୁ ଜ୍ଞାନବିଜ୍ଞାନ ଅପେକ୍ଷା କାହାଣୀକୁହିଁ ବେଶୀ ଭଲପାଏ । ମାତ୍ର ସମ୍ପୂର୍ଣ୍ଣ କାଳ୍ପନିକ କଥା ରଚନା କରିବା ଏକ ଅସାମାନ୍ୟ ପ୍ରତିଭା ସାପେକ୍ଷ ବିଷୟ । ଅସମ୍ଭବକୁ ସମ୍ଭବ, କଳ୍ପନାକୁ ବାସ୍ତବ ଭଳି ରୂପାୟିତ ନକଲେ ସାର୍ଥକ ଶିଶୁ-ସାହିତ୍ୟ ହୋଇପାରେ ନାହିଁ । ଏହା ଅତୀବ କଷ୍ଟ-ସାଧ୍ୟ ଓ ଅସାମାନ୍ୟ ବସ୍ତୁନିର୍ମାଣକ୍ଷମ ପ୍ରତିଭାର ଅପେକ୍ଷା ରଖେ । ସାହିତ୍ୟର ପ୍ରଧାନ ଲକ୍ଷ୍ୟ ଆନନ୍ଦ ଲାଭ । ଶିଶୁ-ପାଠ୍ୟ-ପୁସ୍ତକରେ ଥିବା ଆନନ୍ଦର ଅଭାବ ଶିଶୁ-ସାହିତ୍ୟଦ୍ୱାରା ହିଁ ପରିପୂର୍ଣ୍ଣ ହୁଏ । ମାତ୍ର ଶିଶୁମାନଙ୍କ ଲଗି ଓଡ଼ିଆରେ ଜ୍ଞାନ ବିତରଣାତ୍ମକ କେତେକ ରଚନା ସୃଷ୍ଟି କରିବାକୁ ଆମ୍ଭେମାନେ ସମର୍ଥ ହୋଇଥିଲେହେଁ, ସର୍ବକାଳୀନ ଆନନ୍ଦଦାୟକ ଶିଶୁ-ସାହିତ୍ୟ ଯେ ଆମ୍ଭେମାନେ ଇତିମଧ୍ୟରେ ସୃଷ୍ଟି କରି ପାରିନାହୁଁ ଏହା ଅତ୍ୟନ୍ତ ନମ୍ରତାର ସହିତ ସ୍ୱୀକାର କରାଯାଇପାରେ ।



# ଆଧୁନିକ ଓଡ଼ିଆ ପ୍ରବନ୍ଧ

## ପ୍ରବନ୍ଧ ଓ ପ୍ରବନ୍ଧ ସାହିତ୍ୟ—

ପ୍ରବନ୍ଧ ଆଧୁନିକ ସାହିତ୍ୟର ଏକ ମୁଖ୍ୟ ବିଭବ । ଆଧୁନିକ ଯୁଗରେ ମନୁଷ୍ୟର ବହୁମୁଖୀ ଜ୍ଞାନ-ବିଜ୍ଞାନ, ଚିନ୍ତା-ଚେତନାର ଅଶେଷ ସଂପଦ ଏହାର ମାଧ୍ୟମରେ ମୁଖ୍ୟତଃ ଅଭିବ୍ୟକ୍ତି ଲାଭ କରିଥାଏ । ଏଣୁ ପ୍ରବନ୍ଧକୁ ଆଧୁନିକ ଭାବ-ଅଭିବ୍ୟକ୍ତିର ଶ୍ରେଷ୍ଠ ମାଧ୍ୟମ କହିଲେ ଅତ୍ୟୁକ୍ତି ହେବନାହିଁ । ଏହାର ସାହାଯ୍ୟରେ ଗୋଟିଏ ଦେଶର ସାହିତ୍ୟ ବିଶ୍ୱ ଜ୍ଞାନ-ବିଜ୍ଞାନ ଦ୍ୱାରା ସମୃଦ୍ଧ ହୋଇ ପାରେ । କୁହାଯାଇପାରେ ଯେଉଁ ସାହିତ୍ୟର ପ୍ରବନ୍ଧ-ବିଭବ ଯେଉଁ ପରିମାଣରେ ଉନ୍ନତ ସେ ଦେଶ ଓ ସାହିତ୍ୟ ସେହିପରି ସମୁନ୍ନତ । ଏଣୁ ପ୍ରବନ୍ଧ-ସାହିତ୍ୟ ଜାତିପ୍ରତି ଉନ୍ନତି-ଅବନତିର ମାପକାଠି ସଦୃଶ ।

ଏହି ଦୃଷ୍ଟିରୁ ବିଚାର କଲେ ଆଧୁନିକ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଶୋଚନୀୟ ଦୀନତା ଓ ଦୁର୍ଗତି ସହଜରେ ଉପଲବ୍ଧ ହୋଇଥାଏ । ପଦାର୍ଥ ବିଜ୍ଞାନ, ରସାୟନ, ଉଦ୍ଭିଦ ଓ ପ୍ରାଣୀ-ବିଜ୍ଞାନ ସମାଜନୀତି, ମନସ୍ତତ୍ତ୍ୱ, ଶିଳ୍ପ, ବାଣିଜ୍ୟ, ଧ୍ୱନି ବିଜ୍ଞାନ, ଚିକିତ୍ସା-ବିଜ୍ଞାନ, ଲିପିତତ୍ତ୍ୱ, ଭାଷାତତ୍ତ୍ୱ, ସ୍ଥାପତ୍ୟ, ନୃତତ୍ତ୍ୱ ପ୍ରଭୃତି ବିଭିନ୍ନ ବିଷୟରେ ଓଡ଼ିଆରେ କୌଣସି ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ଏଯାବତ୍ ରଚିତ ହୋଇନାହିଁ । ଯାହା ବା କିଛି ଲେଖାହୋଇଛି ତାହାର ପରିମାଣ ସ୍ୱଳ୍ପ ଓ ନଗଣ୍ୟ । ଫଳରେ ଓଡ଼ିଆପାଠକ ପକ୍ଷେ

ଓଡ଼ିଆ ଭାଷା ମାଧ୍ୟମରେ ବିଶ୍ୱର ଜ୍ଞାନ ଧାରା ସହ ପରିଚୟ ବା ସଂପର୍କ ସ୍ଥାପନ ଏବେ ମଧ୍ୟ ସମ୍ଭବପର ହୋଇପାରି ନାହିଁ । ଏଣୁ ବିଶ୍ୱ-ସାହିତ୍ୟ କ୍ଷେତ୍ରରେ ଏକ ଅତିଶୟ ଉତ୍କୃଷ୍ଟ ଓ ଅନୁନ୍ନତ ସାହିତ୍ୟ ଭାବେ ପରିଗଣିତ ହେବାହିଁ ଓଡ଼ିଆ ସାହିତ୍ୟର ହୋଇଛି ଅନିବାର୍ଯ୍ୟ ପରିଣତି ।

ସଂସ୍କୃତ ସାହିତ୍ୟରେ ତଥା ପ୍ରାଚୀନ ଓଡ଼ିଆ ସାହିତ୍ୟରେ 'ପ୍ରବନ୍ଧ' ଶବ୍ଦ ସଂଗୀତ ବା ଛନ୍ଦୋବଦ୍ଧ ରଚନାକୁ ବୁଝାଉଥିଲା ।* କବି ଯଦୁମଣି ଏଥିପାଇଁ ତାଙ୍କର ଛାନ୍ଦକାବ୍ୟର ନାମ ରଖିଥିଲେ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' । ମାତ୍ର ସଂପ୍ରତି ଆଧୁନିକ ସାହିତ୍ୟରେ ଏହି 'ପ୍ରବନ୍ଧ' ଶବ୍ଦଟିର ଅର୍ଥଗତ ପରିବର୍ତ୍ତନ ଘଟିଅଛି । ଗଦ୍ୟରଚନା ଅର୍ଥରେ ହିଁ ଏହି ଶବ୍ଦ ଆଧୁନିକ ସାହିତ୍ୟ କ୍ଷେତ୍ରରେ ପ୍ରଯୁକ୍ତ ହୁଏ । ଇଂରାଜୀ essay ର ଏହା ଅର୍ଥବୋଧକ ପ୍ରତିଶବ୍ଦ ।

ଇଂରାଜୀରେ essay ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ପ୍ରଯତ୍ନ ବା ଉଦ୍ୟମ । ଏଣୁ ଗଦ୍ୟରେ କୌଣସି ଗୋଟିଏ ବିଷୟର ସଯୌକ୍ତିକ ଦୃଷ୍ଟି ପରିଚୟ ଦେବାର ଉଦ୍ୟମକୁ essay କୁହାଯାଇଥାଏ । ଆଧୁନିକ ସାହିତ୍ୟରେ ମଧ୍ୟ ପ୍ରବନ୍ଧ କହିଲେ କୌଣସି ଗୋଟିଏ

---

* ୧ । ଶ୍ରୀ ବାସୁଦେବ-ଉତ୍ତତକେଳ ସମେତ ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧଃ । ( ଗୀତଗୋବିନ୍ଦ )

୨ । କହଇ ଦାସ ଜଗନ୍ନାଥ । ଭାଷାପ୍ରବନ୍ଧେ ଭାଗବତ ॥
( ଭାଗବତ )

୩ । ଯମକାଦି ଚିତ୍ରକାବ୍ୟ ଛାନ୍ଦ ପ୍ରବନ୍ଧ
ଯଥାଜାତ ଧନ୍ଦା ଏଥି ବୁଝ ମନବୋଧ ।
( ଛାନ୍ଦର୍ଗ୍ରଧ ଚିନ୍ତାମଣି ୧ମ ଛାନ୍ଦ )

ବିଷୟ ସମ୍ବନ୍ଧରେ ବିଶେଷ ଆଲୋଚନାତ୍ମକ ରଚନାକୁ ବୁଝାଇଥାଏ । ଓଡ଼ିଆରେ 'essay'ର ସ୍ୱତନ୍ତ୍ର ଓ ପୃଥକ୍ ପ୍ରତିଶବ୍ଦ ନଥିବାରୁ ବିଗତ ଶତାବ୍ଦୀର ଶେଷ ଭାଗରୁ 'ପ୍ରବନ୍ଧ' ଶବ୍ଦ ଦ୍ୱାରା ତାହା ଚିହ୍ନିତ ହୋଇ ଆସୁଅଛି । ଏହି ଅର୍ଥରେ ସନ୍ଦର୍ଭ, ରଚନା ଶବ୍ଦ ମଧ୍ୟ ପ୍ରଯୁକ୍ତ ହୋଇଥାଏ ।

'ରଚନା' ଶବ୍ଦ ସର୍ବବିଧ ସୃଷ୍ଟି ବା ନିର୍ମାଣ କାର୍ଯ୍ୟକୁ ବୁଝାଉଥିଲେହେଁ ଆଧୁନିକ ସାହିତ୍ୟରେ ଏହା କୌଣସି ଏକ ବିଷୟରେ ବିଭିନ୍ନ ତଥ୍ୟ ଆହରଣ ଓ ଗଦ୍ୟାକାରରେ ତାହାର ସଂହତିପୂର୍ଣ୍ଣ ସମାବେଶକୁ ବୁଝାଉଅଛି ।

ସଂସ୍କୃତରେ ପ୍ରବନ୍ଧ ଥିଲା ତତ୍ତ୍ୱ ପ୍ରଧାନ । ବାହାରର ବିଷୟକୁ ଚିନ୍ତା ଦ୍ୱାରା ଅଧିଗତ କରି ଯୁକ୍ତିଶୀଳତା ସହ ତାହାର ଉପସ୍ଥାପନା କରିବାରେ ଏହା ସୀମିତ ଥିଲା । ମାତ୍ର ପ୍ରବନ୍ଧ ମାଧ୍ୟମରେ ଯେ ରସ-ସୃଷ୍ଟି ସମ୍ଭବପର ଲେଖକର ବ୍ୟକ୍ତିତ୍ୱର ସ୍ପର୍ଶରେ, ନିଜସ୍ୱ ଦୃଷ୍ଟିଭଙ୍ଗୀ ଦ୍ୱାରା ରଞ୍ଜିତ ହୋଇ ଆହୃତ ସଂପଦ ଯେ ନୂତନ ରୂପମଣ୍ଡିତ ହୋଇ ପାଠକର ମର୍ମସ୍ପର୍ଶୀ ହୋଇପାରେ ଏହା ପ୍ରବନ୍ଧର ବିକାଶ ଫଳରେ ପ୍ରତିପନ୍ନ ହୋଇପାରିଛି । ଏଣୁ ସେଣ୍ଟସବେରି ଯଥାର୍ଥତଃ ପ୍ରବନ୍ଧକୁ 'ଗଦ୍ୟର ସ୍ୱରୁଶିଳ୍ପ' ନାମରେ ଅଭିହିତ କରିଅଛନ୍ତି । ସେଥିପାଇଁ ବହୁପୂର୍ବେ ଜନ୍‌ସନ୍‌ଙ୍କ ପ୍ରଦତ୍ତ ପ୍ରବନ୍ଧର ସଂଜ୍ଞା ଯେ ସମ୍ପୂର୍ଣ୍ଣ ଯଥାର୍ଥ ତାହା ମନେହୁଏ ନାହିଁ ।

ପ୍ରବନ୍ଧକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ—(୧) ତଥ୍ୟ ପରିବେଷଣମୂଳକ ତନ୍ମୟ ବା ବସ୍ତୁନିଷ୍ଠ ପ୍ରବନ୍ଧ ( Formal or Infomative Essay ) (୨) ଅନୁଭୂତିମୂଳକ,

ନିଷ୍ଠ ବା ବ୍ୟକ୍ତିନିଷ୍ଠ ପ୍ରବନ୍ଧ (Familiar ବା Intimate Essay) ବିଷୟବସ୍ତୁର ବିଭିନ୍ନତା ଦୃଷ୍ଟିରୁ ବସ୍ତୁନିଷ୍ଠ ପ୍ରବନ୍ଧକୁ ସାଧାରଣତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥାଏ ।

ଯଥା—୧ । ବିବରଣାତ୍ମକ ବା Narrative
୨ । ବର୍ଣ୍ଣନାମୂଳକ—Descriptive
୩ । ଚିନ୍ତାତ୍ମକ ବା ଭାବନା ମୂଳକ—Reflective
୪ । ତାର୍କିକ ବା ସମାଲୋଚନାତ୍ମକ—Argumentative
୫ । ସମ୍ବାଦମୂଳକ—Informative

ବସ୍ତୁନିଷ୍ଠ ପ୍ରବନ୍ଧରେ ବିଷୟବସ୍ତୁର ପ୍ରାଧାନ୍ୟ ଥାଏ । ମାତ୍ର ବ୍ୟକ୍ତିନିଷ୍ଠ ପ୍ରବନ୍ଧରେ ଲେଖକଙ୍କର ଅନ୍ତରାନୁଭୂତି ବା ମାନସ-ପ୍ରତିକ୍ରିୟା ପ୍ରାଧାନ୍ୟ ଲାଭକରେ । ବସ୍ତୁନିଷ୍ଠ ପ୍ରବନ୍ଧରେ କେବଳ ଆଲୋଚ୍ୟ ବିଷୟ ସମ୍ପର୍କରେ ପ୍ରାସଙ୍ଗିକ, ସୁଶୃଙ୍ଖଳ ସୁବିନ୍ୟସ୍ତ ଚିନ୍ତାଧାରାର ଅଭିବ୍ୟକ୍ତି ହୋଇଥାଏ । ଏଣୁ ଏହି ଧରଣର ପ୍ରବନ୍ଧ ରଚନାଲାଗି ଲେଖକର ପାଣ୍ଡିତ୍ୟ ଓ ଜ୍ଞାନହିଁ ମୁଖ୍ୟ ଅବଲମ୍ବନ । ପାଠକ ମଧ୍ୟ ବୁଦ୍ଧିଦ୍ୱାରା ହିଁ ବିଷୟର ମର୍ମ ଗ୍ରହଣ କରିବାକୁ ସମର୍ଥ ହୁଅନ୍ତି ।

ମାତ୍ର ବ୍ୟକ୍ତିନିଷ୍ଠ ପ୍ରବନ୍ଧରେ ଲେଖକ ବିଷୟବସ୍ତୁକୁ ଆପଣାର ଅନୁଭୂତି ରସରେ ରସାଣିତ କରି ପ୍ରକାଶ କରୁଥିବାରୁ ପାଠକ ହୃଦୟାନୁଭୂତି ସାହାଯ୍ୟରେ ତାହା ଉପଲବ୍‌ଧି କରିଥାଆନ୍ତି ।

---

An essay is a loose sally of the mind, an irregular, undigested piece, not a regular and orderly composition. —Johnson.

ଲେଖକର ସରସ ମନୋଭାବର ସ୍ପର୍ଶ ଯୋଗୁ ଏହି ଧରଣର ରଚନା ପାଠକର ମନରେ ପ୍ରସନ୍ନତା ଓ ହାସ୍ୟ-ମଧୁର ଆନନ୍ଦର ଭାବ-ମଣ୍ଡଳ ସୃଷ୍ଟି କରିଥାଏ । ବସ୍ତୁନିଷ୍ଠ ପ୍ରବନ୍ଧ ଭଳି ଲେଖକ ଓ ପାଠକର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଗୁରୁଜନୋଚିତ ବ୍ୟବଧାନ ଏଠାରେ ଅପସାରିତ ହୋଇ ଏକ ପାରସ୍ପରିକ, ବାନ୍ଧବୋଚିତ ଅନ୍ତରଙ୍ଗତାର ସୂତ୍ରପାତ ହୋଇଥାଏ । ଏଣୁ ବ୍ୟକ୍ତିନିଷ୍ଠ ପ୍ରବନ୍ଧର ବିଷୟବସ୍ତୁକୁ କୌଣସି ନିର୍ଦ୍ଦିଷ୍ଟ ପରିସୀମାରେ ଆବଦ୍ଧ କରାଯାଇ ପାରେ ନାହିଁ । ଯେକୌଣସି ତୁଚ୍ଛ, ଅବଜ୍ଞାତ, ସାମାନ୍ୟ ବିଷୟ, ଘଟଣା ବା ପଦାର୍ଥକୁ ଅବଲମ୍ବନ କରି ଲେଖକ ସମ୍ପୂର୍ଣ୍ଣ ଆପଣାର ନିଜସ୍ୱ ଭଙ୍ଗିରେ ଏହିଧରଣର ପ୍ରବନ୍ଧ ରଚନା କରିଥାନ୍ତି ।

ଓଡ଼ିଆରେ ଏଇ ଶେଷୋକ୍ତ ପର୍ଯ୍ୟାୟଭୁକ୍ତ ଅର୍ଥାତ୍ ମନ୍ମୟ ପ୍ରବନ୍ଧର ବହୁଳ ଅଭାବ ପରିଲକ୍ଷିତ ହୁଏ । ଇଂରାଜୀ ସାହିତ୍ୟରେ ମଣ୍ଟେନ, ହ୍ୟାଜ୍‌ଲିଟ୍, ଲ୍ୟାମ୍ବ, ଚେଷ୍ଟରଟନ୍, ଲ୍ୟୁକସ ବେଲକ୍ ପ୍ରଭୃତି ଲେଖକଗଣ ବହୁ ସଂଖ୍ୟକ ବ୍ୟକ୍ତିଗତ ପ୍ରବନ୍ଧ ବା Familiar Essay ରଚନା କରି ପ୍ରସିଦ୍ଧି ଅର୍ଜନ କରିଅଛନ୍ତି । ସମ୍ଭବତଃ ଓଡ଼ିଆ ସାହିତ୍ୟ ତଥା ସମାଜରେ ବ୍ୟକ୍ତି-ସ୍ୱାତନ୍ତ୍ର୍ୟର ପରମ୍ପରା ଅଭାବରୁ ଅଥବା ତତ୍ତ୍ୱ-ପ୍ରଧାନ ଏବଂ ଭାବାକ୍ରାନ୍ତ ଦୃଷ୍ଟି ବିଷୟ ପ୍ରତି ଏକ ସ୍ୱାଭାବିକ ମାନସିକ ପ୍ରବଣତାବଶତଃ, ଲଘୁ ଆମୋଦଦାୟକ ବ୍ୟକ୍ତିନିଷ୍ଠ ପ୍ରବନ୍ଧ ରଚନା କରିବାରେ ଏ ଦେଶର ଲେଖକଗଣ ବୀତସ୍ପୃହ । ଯାହାହେଉ, ସଂପ୍ରତି ଏଇ ଧରଣର ପ୍ରବନ୍ଧ ରଚନାରେ କେତେକ ଲେଖକ ଲେଖମାଚାଳନା କରୁଛନ୍ତି ।

ପ୍ରବନ୍ଧର ଭାଷା, ରଚନାରୀତି ବିଷୟରେ ଏକ ନିର୍ଦ୍ଧାରିତ ଆଦର୍ଶର ସୂଚନା ଦେବା ସମ୍ଭବପର ନୁହେଁ । ଲେଖକର ବ୍ୟକ୍ତିତ୍ୱ

ଭେଦରେ ତାହାଙ୍କ ରଚିତ ପ୍ରବନ୍ଧର ଭାଷା ଓ ରଚନାରୀତି ଭିନ୍ନ ହେବା ସ୍ୱାଭାବିକ । ତଥାପି ଆଦର୍ଶ ପ୍ରବନ୍ଧର ଗୁଣାବଳୀ ନିର୍ଦ୍ଦେଶ କରି ଇଂରାଜୀ ଆଲୋଚକମାନେ ସମତା (Balance), ସଠିକତା, ସଂକ୍ଷିପ୍ତତା (Precesion) ସାବଲୀଳତା (Regularity) ବା ଏକରୂପତା (uniformity) କୁ ନିର୍ଦ୍ଦେଶ କରିଥାନ୍ତି ।

ପ୍ରବନ୍ଧ ନାନାରୀତିରେ ଲିଖିତ ହୋଇପାରେ । କଥୋପକଥନ, ପତ୍ରାବଳୀ, ଅଭିଭାଷଣ, ସ୍ମୃତିକଥା ବା ଆତ୍ମଚରିତ ପ୍ରଭୃତି ବିଭିନ୍ନ ରୂପରେ ପ୍ରବନ୍ଧର ଅଭିବ୍ୟକ୍ତି ଦେଖିବାକୁ ମିଳେ । ମାତ୍ର ସବୁବିଧ ପ୍ରବନ୍ଧ ରଚନାର ମୁଖ୍ୟ ଉଦ୍ଦେଶ୍ୟ, ଆନନ୍ଦଦାନ ଓ ତାପରେ ଶିକ୍ଷା ବା ଜ୍ଞାନ ବିତରଣ । ଏଣୁ ପ୍ରବନ୍ଧର ବିଚାର ଆଲୋଚନା ଲାଗି ମୁଖ୍ୟତଃ ତିନିଗୋଟି ବିଷୟ ଉପରେ ଗୁରୁତ୍ୱ ଆରୋପିତ ହୋଇ-ଥାଏ । ପ୍ରଥମତଃ ଲେଖକଙ୍କର ବ୍ୟକ୍ତିତ୍ୱ ଓ ଦୃଷ୍ଟିକୋଣ, ଅର୍ଥାତ୍ ବର୍ଣ୍ଣିତ ବିଷୟ ପ୍ରତି ଲେଖକଙ୍କର ତତ୍କାଳୀନ ଦୃଷ୍ଟିଭଙ୍ଗି, ମତାମତ ଏବଂ ସମଗ୍ର ଭାବେ ଜୀବନ ପ୍ରତି ସନ୍ଦେଶ । ଦ୍ୱିତୀୟତଃ ପ୍ରବନ୍ଧରେ ଲେଖକଙ୍କର ଚିନ୍ତାର କ୍ରମବିକାଶ, ଅର୍ଥାତ୍ ଲେଖକ ଆଲୋଚ୍ୟ ବିଷୟବସ୍ତୁର କେଉଁ ବିଭାବ ବର୍ଣ୍ଣନାଲାଗି ନିର୍ବାଚନ କରିଛନ୍ତି, ଉକ୍ତ ଭାବନାକୁ କିପରି ଅବତାରଣା କରିଛନ୍ତି, କିପରି ଭାବେ ତାକୁ କାର୍ଯ୍ୟକାରୀ କରାଇପାରିଛନ୍ତି ଏବଂ ସେଗୁଡ଼ିକୁ ଏକ ଉପସଂହାରକୁ ଆଣିପାରିଛନ୍ତି ତାହାର ଆଲୋଚନା । ତୃତୀୟତଃ ଆଲୋଚ୍ୟ ବିଷୟବସ୍ତୁର ଉପସ୍ଥାପନ (Pesentation) ତାହାର ମର୍ମୋଦ୍‌ଘାଟନ (Exposition) ଓ ବ୍ୟାଖ୍ୟାନର ସମସ୍ତ କଳା-ନୈପୁଣ୍ୟ ମଧ୍ୟ ବିଚାର୍ଯ୍ୟ । ପ୍ରବନ୍ଧଲେଖକ ଆଲୋଚ୍ୟ ବିଷୟର ପ୍ରତ୍ୟେକ ଅଂଶକୁ ଯଥାଯଥଭାବେ ପ୍ରକାଶ କରିବା ବିଷୟରେ

ଆଲୋଚ୍ୟ ବିଷୟକୁ ପାଠକମାନଙ୍କ ଉପଯୋଗୀ କରାଇବା ବିଷୟରେ ଏବଂ ଆଲୋଚ୍ୟ ବିଷୟକୁ ସୁରସ, ସୁବିନ୍ୟସ୍ତ କରିବା ବିଷୟରେ ମନଯୋଗୀ ହେବା ବିଧେୟ ।

## ଓଡ଼ିଆ ପ୍ରବନ୍ଧ-ସାହିତ୍ୟର ବିକାଶ ଧାରା—

ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଇତିହାସ ବହୁ ପ୍ରାଚୀନ ନୁହେଁ । ପ୍ରାଚୀନ ଓ ମଧ୍ୟଯୁଗରେ ତତ୍ତ୍ୱ-ପ୍ରଧାନ ବା ଭାବପ୍ରଧାନ ବିଷୟକୁ ନେଇ ଗଦ୍ୟରେ ପ୍ରବନ୍ଧ ରଚିତ ହେଉଥିବା'ର ନିଦର୍ଶନ ମିଳେ ନାହିଁ । ଊନବିଂଶ ଶତାବ୍ଦୀର ଶେଷ ଦିଗରୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରବନ୍ଧ ସାହିତ୍ୟର ସୂତ୍ରପାତ ହୋଇଅଛି । ସର୍ବାଦୌ ଖ୍ରୀଷ୍ଟୀୟ ପାଦ୍ରି ଲେଖକମାନେ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ବିଷୟ ଓଡ଼ିଆ ପତ୍ରପତ୍ରିକା ତଥା ପୁସ୍ତକମାନଙ୍କରେ ପ୍ରକାଶ କରିଥିଲେ । ତାପରେ ସେହିମାନଙ୍କ ରଚିତ ପ୍ରବନ୍ଧାବଳୀ ଓଡ଼ିଆ ପାଠ୍ୟପୁସ୍ତକ ମାଧ୍ୟମରେ ପ୍ରକାଶ ପାଇଥିଲା । ମୁଖ୍ୟତଃ ଇଂରାଜୀ ବାକ୍ୟଗଠନ ରୀତିକୁ ଅନୁସରଣ କରି ଓ ବଙ୍ଗଳା ଗଦ୍ୟଶୈଳୀ ଦ୍ୱାରା ପ୍ରଭାବିତ ହୋଇ ଖ୍ରୀଷ୍ଟୀୟ ପାଦ୍ରିଗଣ ଯେଉଁ ପ୍ରବନ୍ଧ ଓଡ଼ିଆରେ ରଚନା କରିଥିଲେ, ତାହା ଆଦୌ ଆଦରଣୀୟ ହୋଇପାରି ନଥିଲା ।

ମାତ୍ର ପାଦ୍ରି ଲେଖକଗଣ ଓଡ଼ିଆ ଗଦ୍ୟଶୈଳୀର ବିକାଶ-ସାଧନରେ ଅସମର୍ଥ ହୋଇଥିଲେ ହେଁ ସେହିମାନେ ଯେ ଓଡ଼ିଆ ପ୍ରବନ୍ଧ ରଚନା କ୍ଷେତ୍ରରେ ଅଗ୍ରଦୂତସ୍ୱରୂପ, ଏହା ସ୍ୱୀକାର୍ଯ୍ୟ । ସେମାନଙ୍କ ଗଦ୍ୟରୀତିର ନିଦର୍ଶନ ସ୍ୱରୂପ 'ଦେଶ ଭ୍ରମଣର ଫଳ' ବିଷୟରୁ କିୟଦଂଶ ଏଠାରେ ଉଦ୍ଧୃତ ହେଲା—

"ପର୍ଯ୍ୟାପ୍ତ ଅବକାଶ ସମୟରେ ଯେବେ ଯୁବା ଲୋକେ ଆପଣା ଦେଶର ନାନା ସ୍ଥାନରେ ଭ୍ରମଣ କରନ୍ତି, ତେବେ ଏଥିରେ ସେମାନଙ୍କ ମନ ପ୍ରଫୁଲ୍ଲ ଓ ଗୁଣଯୁକ୍ତ ହେବାକୁ ପାରଇ, ପୁଣି ଅନେକ ବିବେଚନାର କଥା ଓ ଉତ୍ତମ ଜ୍ଞାନ ଅନ୍ୱେଷଣ କରିବାର ଫଳ ପ୍ରାପ୍ତ ହୁଅଇ । ଏଥିରେ କେବଳ ମାନସର ସୁଖବୋଧ ହେବ ତାହା ନୁହେ ପୁଣି ବାୟୁର ସେବା ଓ ନାନା ନୂଆ ପଦାର୍ଥ ଦେଖିବା ଦ୍ୱାରା ଦେହର ଆହୁର ବଳ ପ୍ରାପ୍ତ ପୁଣି ଉଦ୍‌ଯୋଗ ଓ ସାହସର ବୃଦ୍ଧି ହେବାକୁ ପାରଇ ।" *

ଓଡ଼ିଆରେ ଲେଖିଥିବା ଅନ୍ୟାନ୍ୟ ପାଦ୍ରି ଲେଖକମାନଙ୍କ ମଧ୍ୟରୁ ଡବ୍ଲୁ. ସି. ଲେସି, ଯେ. ଷ୍ଟୁବନସ୍, ରେଭରେଣ୍ଡ ଡବ୍ଲୁ. ମିଲର, ରେଭରେଣ୍ଡ ଯେ. ବକ୍‌ଲେ, ଯେ. ଏଲ୍. ଫିଲିପସ୍ ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ ।

ଏହାପରେ ଉତ୍କଳୀୟମାନଙ୍କ ଉଦ୍ୟମରେ ଊନବିଂଶ ଶତାବ୍ଦୀର ଶେଷ ତିନି ଦଶକରେ ଓଡ଼ିଶାର ବିଭିନ୍ନାଞ୍ଚଳରୁ ଉତ୍କଳ ଦୀପିକା (କଟକ, ୧୮୬୬), ବାଲେଶ୍ୱର ସମ୍ବାଦ ବାହିକା (ବାଲେଶ୍ୱର, ୧୮୬୮), ଉତ୍କଳ ଦର୍ପଣ (ବାଲେଶ୍ୱର, ୧୮୭୩), ପୁରୁଷୋତ୍ତମ ଦୀପିକା ( ପୁରୀ, ୧୮୮୦ ), ପୁରୁଷୋତ୍ତମ ପତ୍ରିକା ( ୧୮୮୨ ), ନବସମ୍ବାଦ ( ବାଲେଶ୍ୱର, ୧୮୮୬ ), ସମ୍ବଲପୁର ହିତୈଷିଣୀ

* ସାରସଂଗ୍ରହ ଅର୍ଥ ତର୍କ ଶିଳ୍ପ ଆଦି ଶିକ୍ଷାର ବିବରଣ ଖଣ୍ଡ—ରେଭରେଣ୍ଡ ଏ. ସଟନଙ୍କ ଦ୍ୱାରା ଅନୂଦିତ ପୁସ୍ତକ । ୧୮୪୬ ମସିହାରେ କଟକ ମିଶନ ପ୍ରେସରେ ମୁଦ୍ରିତ ।

(ବାମଣ୍ଡା, ୧୮୮୯), ଉତ୍କଳପ୍ରଭା (ମୟୂରଭଞ୍ଜ, ୧୮୯୧), ଇନ୍ଦ୍ରଧନୁ (କଟକ, ୧୮୯୩), ବିଜୁଳି (ବାମଣ୍ଡା, ୧୮୯୪), ଉତ୍କଳ ସାହିତ୍ୟ (କଟକ, ୧୮୯୭) ପ୍ରଭୃତି ସମ୍ବାଦପତ୍ର ଓ ସାହିତ୍ୟ ପତ୍ରିକା ପ୍ରକାଶ ପାଇଥିଲା । ଉକ୍ତ ପତ୍ରିକାମାନଙ୍କରେ ବେଳେବେଳେ ନାନା ବିଷୟକ ଦୀର୍ଘ ବିବରଣୀ, ସମ୍ପାଦକୀୟ ଆଲୋଚନା ଓ ପ୍ରବନ୍ଧ ପ୍ରକାଶିତ ହେଉଥିଲା ।

ଯେତେବେଳେ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ଓଡ଼ିଆ ପାଠ୍ୟ ପୁସ୍ତକର ଏକାନ୍ତ ଅଭାବ ଅନୁଭୂତ ହେଉଥିଲା । ଏହାପରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷା ଉଦ୍ଦେଶ୍ୟରେ ଓଡ଼ିଆରେ ଉପଯୁକ୍ତ ପାଠ୍ୟ ପୁସ୍ତକ ରଚନା କରିବାରେ ବହୁ କୃତବିଦ୍ୟ ସାହିତ୍ୟସାଧକ ମନୋନିବେଶ କରିଥିଲେ । ଏହାର ସୁଫଳସ୍ୱରୂପ ଭକ୍ତକବି ମଧୁସୂଦନଙ୍କ ଉପାଦେୟ ପ୍ରବନ୍ଧାବଳୀ ଓଡ଼ିଆରେ ପ୍ରଣୀତ ହୋଇ ପାରିଥିଲା । ତାହାଙ୍କ ରଚିତ 'ପ୍ରବନ୍ଧମାଳା' ୧୮୯୫ ମସିହାରେ ପ୍ରକାଶିତ ହୋଇଥିଲା । ଏଥିରେ ଯେଉଁ ଊଣିଶଗୋଟି ପ୍ରବନ୍ଧ ପ୍ରକାଶ ପାଇଥିଲା, ସେମାନଙ୍କ ମଧ୍ୟରୁ ଅଧିକାଂଶ ଇଂରାଜୀ ରଚନାମାନଙ୍କର ଅନୁବାଦ କିମ୍ବା ଅନୁସରଣରେ ଲିଖିତ । ଧର୍ମନୀତି, ମାନବ ଜାତିର ଉନ୍ନତି, ରାମାୟଣ, ସୌନ୍ଦର୍ଯ୍ୟ ଓ ରୁଚି, ପୁରୁଷଭାବ ଏବଂ ନାରୀଭାବ, ଚେତି, ଶାସନପ୍ରଣାଳୀ ତାହାଙ୍କର ମୌଳିକ ପ୍ରବନ୍ଧ । ମାତ୍ର ନେପୋଲିୟନ, ଚନ୍ଦ୍ର ଓ ତାରା, ବାୟୁରାଶି, ଦୁର୍ଗାବର୍ଷୀ, ଲିସବନ ଭୂମିକମ୍ପ, ଉଲକାପିଣ୍ଡ, ଆଇଜାକ ନିଉଟନ, ବୁଦ୍ଧଦେବ ପ୍ରବନ୍ଧଗୁଡ଼ିକ ଯଥାକ୍ରମେ The Nepoleon Dynasty, M. Culloch's Course of Reading, British Quarterly Review, Ellot's History of India vol.VI,

Penny Magazine, Musem of science, Chamber's Biography, Maxmuller's Chips from a German Workshop ପ୍ରଭୃତି ପ୍ରବନ୍ଧ ବା ପୁସ୍ତକରୁ ଅନୂଦିତ ।

ମଧୁସୂଦନ ଶୁଦ୍ଧ ପରିମାର୍ଜିତ ଗଦ୍ୟରେ ପ୍ରବନ୍ଧ ରଚନାକର ଏକ ପରମ୍ପରା ପ୍ରତିଷ୍ଠା କରିଥିଲେ । ଉକ୍ତ ପ୍ରବନ୍ଧାବଳୀରେ ଆମ୍ଭେମାନେ ମଧୁସୂଦନଙ୍କର ସ୍ୱତନ୍ତ୍ର ବ୍ୟକ୍ତି-ମାନସକୁ ଦେଖିବାକୁ ପାଉନାହିଁ । ପ୍ରବନ୍ଧମାନଙ୍କରେ ସେ ଯେପରି ଶିକ୍ଷକଭଳି ଉଚ୍ଚା-ସନରେ ଉପବିଷ୍ଟ ହୋଇ ତତ୍ତ୍ୱ ପ୍ରଚାର କରିବାରେ ଅଭିନିବିଷ୍ଟ ।

ପ୍ୟାରୀମୋହନଙ୍କ ଓଡ଼ିଶା ଇତିହାସ, ଫକୀରମୋହନଙ୍କ ଭାରତ ଇତିହାସ (ପ୍ର. ପ୍ର: ୧୮୭୦) ମଧ୍ୟ ପାଠ୍ୟ-ପୁସ୍ତକ ହେବା ନିମିତ୍ତ ରଚିତ ହୋଇଥିଲା । ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ମଧ୍ୟ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ନବାନୁସୃତ ଏହି ପ୍ରବନ୍ଧ ସାହିତ୍ୟର ବିକାଶ ଲାଗି ଲେଖକମାନଙ୍କୁ ନାନାଭାବେ ଉତ୍ସାହିତ କରିଥିଲେ । ବିଭିନ୍ନ ପତ୍ରିକାରେ ପ୍ରକାଶିତ ତାହାଙ୍କର 'ଉତ୍କଳ-ପ୍ରଭା'ର ବିଜ୍ଞାପନରୁ ତାହା ଅନୁମେୟ—"ଦେଶର ଶିକ୍ଷିତମଣ୍ଡଳୀ ଉତ୍ସାହ ଓ ଧନର ଅଭାବରୁ ପ୍ରବନ୍ଧ ଓ ଗ୍ରନ୍ଥାଦି ଲେଖିବାକୁ ଯତ୍ନ-ବାନ୍ ହେଉନାହାନ୍ତି । ଏହି ଅଭାବ ଦୂର କରିବା ଉଦ୍ଦେଶ୍ୟରେ ମୟୂରଭଞ୍ଜରୁ 'ଉତ୍କଳ ପ୍ରଭା' ନାମ୍ନୀ ମାସିକ ପତ୍ରିକା ଆଗାମୀ ବୈଶାଖ ମାସରୁ ପ୍ରକାଶ କରାଯିବ । ଏଥିରେ ସାହିତ୍ୟ, ବିଜ୍ଞାନ, ଦର୍ଶନ, ରାଜନୀତି, ସାଧାରଣ ଧର୍ମ ଓ ନୀତି ସମ୍ବନ୍ଧରେ ପ୍ରବନ୍ଧମାନ ସନ୍ନିବେଶିତ ହେବ । ଉତ୍କୃଷ୍ଟ ଲେଖକମାନେ ପୁରସ୍କୃତ ହେବେ ।" କହିବା ବାହୁଲ୍ୟ ଯେ, ଉକ୍ତ ପତ୍ରିକାରେ ଲାଲ ରାମନାରାୟଣଙ୍କ ସୁପ୍ରସିଦ୍ଧ ଧାରାବାହିକ ଆଲୋଚନା 'କବି ଉପେନ୍ଦ୍ର ଭଞ୍ଜ ଓ ଭଞ୍ଜ-

କାବ୍ୟ' ଓ ବିଶ୍ୱନାଥ କରଙ୍କ ବହୁ ପ୍ରବନ୍ଧ ପ୍ରକାଶିତ ହୋଇ ପ୍ରବନ୍ଧ ଲେଖକ ପୁରସ୍କୃତ ହୋଇଥିଲେ ।

ଏହାଛଡ଼ା ଊନବିଂଶ ଶତାବ୍ଦୀର ପାଠ୍ୟ ପୁସ୍ତକାଶ୍ରୟୀ ପ୍ରବନ୍ଧ ରଚୟିତାଭାବେ ଶିବନାରାୟଣ ନାୟକ, ବିଚ୍ଛନ୍ଦ ପଟ୍ଟନାୟକ, କପିଳେଶ୍ୱର ବିଦ୍ୟାଭୂଷଣ, ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କର ନାମ ମଧ୍ୟ ଉଲ୍ଲେଖଯୋଗ୍ୟ ।

୧୮୯୩-୯୪ର 'ଇନ୍ଦ୍ରଧନୁ', 'ବିଜୁଳି'ର ସାହିତ୍ୟିକ ବିବାଦକୁ ଆଶ୍ରୟ କରି ଓଡ଼ିଆ ସାହିତ୍ୟ-ସମାଲୋଚନାର ଅଭ୍ୟୁଦୟ ହୋଇଥିଲା । ଏହି ପତ୍ରପତ୍ରିକାଶ୍ରୟୀ ପ୍ରବନ୍ଧ ଲେଖକମାନେ ଭଞ୍ଜ ଓ ରାଧାନାଥ-ସାହିତ୍ୟର ଗୁଣ, ଦୋଷ ନିରୂପଣ ଓ ତୁଳନାତ୍ମକ ବିଚାର ବିଶ୍ଳେଷଣରେ ମୁଖ୍ୟତଃ ପ୍ରବୃତ୍ତ ହୋଇଥିଲେ । ଊନବିଂଶ ଶତାବ୍ଦୀର ଶେଷ ଦ୍ୱିଦଶକର ସାହିତ୍ୟ-ଆଲୋଚକ ତଥା ବିବିଧ ପ୍ରବନ୍ଧ ରଚୟିତାଭାବେ ଗୌରୀଶଙ୍କର ରାୟ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ପ୍ୟାରୀମୋହନ ଆଚାର୍ଯ୍ୟ, ମଧୁସୂଦନ ରାଓ, ବିଶ୍ୱନାଥ କର, ଫକୀରମୋହନ, ଗୋପାଳବଲ୍ଲଭ, ଶଶିଭୂଷଣ ରାୟ, ଗଣପତି ଦାସ, କୃଷ୍ଣପ୍ରସାଦ ଚୌଧୁରୀ, ଶ୍ୟାମସୁନ୍ଦର ରାଜଗୁରୁ, ଗୋପାଳଚନ୍ଦ୍ର ପ୍ରହରାଜ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ସାହିତ୍ୟର ସର୍ବପ୍ରଥମ ଭ୍ରମଣ ସାହିତ୍ୟ ରଚୟିତାଭାବେ କବିବର ରାଧାନାଥଙ୍କ ନାମ ସ୍ମରଣୀୟ । ତାହାଙ୍କର ରଚିତ "ଭ୍ରମଣକାରୀର ପତ୍ର" ତାଳଚେର ଓ ବାମଣ୍ଡାର ଭ୍ରମଣ ଅନୁଭୂତି ଲେଖକଙ୍କର ନାମାଙ୍କିତ ନହୋଇ ପ୍ରଥମେ ୧୮୮୭ ମସିହା 'ନବସମ୍ବାଦ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ରାଧାନାଥଙ୍କ ପରେ

ତାହାଙ୍କର ପୁତ୍ର ଶଶୀଭୂଷଣଙ୍କ ଦ୍ୱାରା ଓଡ଼ିଆ ଭ୍ରମଣ ସାହିତ୍ୟ ପରିପୁଷ୍ଟ ଓ ସମୃଦ୍ଧ ହୋଇଅଛି । ଊନବିଂଶ ଶତକର ଶେଷ ଦଶକରେ ଶଶୀଭୂଷଣଙ୍କର "ଦାକ୍ଷିଣାତ୍ୟ-ଭ୍ରମଣ" (ପ୍ର·ପ୍ର· ୧୮୯୭) ପୁସ୍ତକ ପ୍ରକାଶିତ ହୋଇଥିଲା । ଏହାହିଁ ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରଥମ ପ୍ରକାଶିତ ଭ୍ରମଣ ପୁସ୍ତକରୂପେ ଗ୍ରହଣୀୟ ।

## ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଦ୍ୱିତୀୟ ପର୍ଯ୍ୟାୟ—

ଏହାପରେ ଚଳିତ ସତ୍ତାବ୍ଦର ପ୍ରାରମ୍ଭରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ତଥା ଭାରତର ସ୍ୱାଧୀନତାଲାଭ ପର୍ଯ୍ୟନ୍ତ ପ୍ରାୟ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଓଡ଼ିଶାର ଶିକ୍ଷା, ଶିଳ୍ପ, ବାଣିଜ୍ୟ ପ୍ରଭୃତି ଜାତୀୟ ଜୀବନର ବିଭିନ୍ନ କ୍ଷେତ୍ରରେ ସେପରି ଉଲ୍ଲେଖଯୋଗ୍ୟ ବିବର୍ତ୍ତନ ସାଧିତ ହୋଇନଥିଲା । ଅଥବା ବହୁ ସଂଖ୍ୟକ ପ୍ରବନ୍ଧ ଲେଖକଙ୍କ ରଚନାବଳୀ ଦ୍ୱାରା ଓଡ଼ିଆ ସାହିତ୍ୟ ଋଦ୍ଧିମନ୍ତ ହୋଇପାରି ନଥିଲା । ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ଏବଂ ରାଜନୈତିକ ଆନ୍ଦୋଳନ ଦିଗରେ ଜାତୀୟ ଜୀବନ ମୁଖ୍ୟତଃ ଅଭିନିବିଷ୍ଟ ଥିଲା । ଯାହାହେଉ, ଓଡ଼ିଆ ପ୍ରବନ୍ଧସାହିତ୍ୟର ଦୀନତା ଅପସାରଣ କରି ତାହାର ବିକାଶ ସାଧନ ନିମିତ୍ତ ଗୋପବନ୍ଧୁ 'ସତ୍ୟବାଦୀ' ପତ୍ରିକା ମାଧ୍ୟମରେ ଉଦ୍ୟମ କରିଥିଲେ । ମାତ୍ର ତତ୍କାଳୀନ ପରିସ୍ଥିତି ଥିଲା ପ୍ରବନ୍ଧ ରଚନାର ପ୍ରତିକୂଳ । ରାଜନୈତିକ ବିପ୍ଳବରେ ସକ୍ରିୟ ଅଂଶ ଗ୍ରହଣ କରିବା ଯୋଗୁ ସତ୍ୟବାଦୀର ସାହିତ୍ୟ-ସାଧକଗଣ ପୂର୍ଣ୍ଣ ପ୍ରାଣରେ ପ୍ରବନ୍ଧ ରଚନା କରିବାକୁ ସମର୍ଥ ହୋଇପାରି ନଥିଲେ ।

ତଥାପି ଏହି ସମୟ ମଧ୍ୟରେ ଓଡ଼ିଶାର ସାହିତ୍ୟାଲୋଚନା, ଇତିହାସ, ଜୀବନୀ ଓ ପ୍ରତ୍ନତତ୍ତ୍ୱ ଲେଚନା କ୍ଷେତ୍ରରେ ଯେଉଁ କେତେଜଣ

ପ୍ରତିଭାଶାଳୀ ଲେଖକ ଆବିର୍ଭୂତ ହୋଇ ଓଡ଼ିଆ ପ୍ରବନ୍ଧର ଶ୍ରୀବୃଦ୍ଧି ସାଧନ କରିଥିଲେ, ସେମାନଙ୍କ ମଧ୍ୟରୁ ଶଶୀଭୂଷଣ ରାୟ, ପଣ୍ଡିତ ଗୋପୀନାଥ ନନ୍ଦ, ମୃତ୍ୟୁଞ୍ଜୟ ରଥ, କୃପାସିନ୍ଧୁ ମିଶ୍ର, ଜଗବନ୍ଧୁ ସିଂହ, ଜଳନ୍ଧର ଦେବ, ସତ୍ୟନାରାୟଣ ରାଜଗୁରୁ, ପାର୍ବତୀଚରଣ ଦାସ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ସମସ୍ତ ମଧ୍ୟରେ ବଳିତ କଥା (ନୃସିଂହ ଚରଣ), ହିମାଳୟ ପଥେ (କୁଳମଣି ଦାସ), ଶଳକା ଭ୍ରମଣ (ଚିନ୍ତାମଣି ମହାନ୍ତି), ଡାଇରୀର କୟୂଦଂଶ (ଜଳନ୍ଧର), ଶିମଳା ଯାତ୍ରା ( ଶ୍ରୀପତି ମିଶ୍ର) ପ୍ରଭୃତି କେତେକ ପୁସ୍ତକ ବ୍ୟତୀତ ସର୍ବଶ୍ରେଷ୍ଠ ଭ୍ରମଣ ସାହିତ୍ୟ ଓଡ଼ିଆରେ ରଚିତ ହୋଇପାରି ନଥିଲା । ତତ୍କାଳୀନ ଓଡ଼ିଶାର ଏକମାତ୍ର କଲେଜ ରେଭେନ୍ସା କଲେଜର କେତେକ ଦର୍ଶନ ଅଧ୍ୟାପକ ମୋହିନୀମୋହନ ସେନାପତି ( ବିବିଧ ପ୍ରସଙ୍ଗ ), ବିପିନବିହାରୀ ରାୟ (ପ୍ରବନ୍ଧ ସୋପାନ), ରତ୍ନାକର ପତି ( ପ୍ରବନ୍ଧ ପ୍ରକାଶ ) ଏବଂ ସତ୍ୟବାଦୀ ସ୍କୁଲର ଶିକ୍ଷକ ବାସୁଦେବ ମହାପାତ୍ର (ଶାନ୍ତିଧାରା, ପ୍ରବନ୍ଧ ପ୍ରବେଶ) ପ୍ରଭୃତି ଉଚ୍ଚକୋଟିର ଦାର୍ଶନିକ ପ୍ରବନ୍ଧ ରଚନାରେ ସଫଳକାମ ହୋଇଥିଲେ ଏବଂ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ପରିପୁଷ୍ଟ କରିଥିଲେ । ଏମାନଙ୍କ ମଧ୍ୟରୁ ମୋହିନୀମୋହନଙ୍କ ପ୍ରବନ୍ଧାବଳୀ ତାହାର ସ୍ୱତନ୍ତ୍ର ଓ ନାସ୍ତିକ ଦୃଷ୍ଟିକୋଣ ଯୋଗୁ ଉଲ୍ଲେଖଯୋଗ୍ୟ ।

ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରଶଂସନୀୟ ଉଦ୍ୟମରେ ୧୯୨୮ରେ 'ପ୍ରାଚୀ ସମିତି'ର ପ୍ରତିଷ୍ଠା ହୋଇ ବହୁ ପ୍ରାଚୀନ ପୁସ୍ତକର ପୁନରୁଦ୍ଧାର ହୋଇଥିଲା । ମାତ୍ର ଏହି ଅନୁଷ୍ଠାନର କାର୍ଯ୍ୟ ମୁଖ୍ୟତଃ ସଂକଳନ, ସଂପାଦନ, ଶୁଦ୍ଧପାଠ ନିର୍ଣ୍ଣୟରେ ସୀମିତ ଥିବାରୁ ଯଥାର୍ଥ ଆଲୋଚନା ଓ ବୈଜ୍ଞାନିକ ଦୃଷ୍ଟିକୋଣରୁ ଗବେଷଣାତ୍ମକ

ଗ୍ରନ୍ଥ ବା ପ୍ରବନ୍ଧ ପ୍ରଣୟନ କରିବାରେ ଏହି ଅନୁଷ୍ଠାନ ସଫଳକାମ ହୋଇପାରି ନଥିଲା । ଏହି ସମୟରେ ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ନୂତନ ଭାବନା, ଚିନ୍ତା ଓ ଚେତନା ସମ୍ବଳିତ ପ୍ରବନ୍ଧ ରଚୟିତାମାନଙ୍କ ମଧ୍ୟରୁ କ୍ଷିତୀଶଚନ୍ଦ୍ର ଦେ, ହରିଶ୍ଚନ୍ଦ୍ର ବଡ଼ାଳ, ଭଗବାନ ପତି, ଲକ୍ଷ୍ମୀନାରାୟଣ ହରିଚନ୍ଦନ, ହରନାରାୟଣ ସିଂହ, କୁନ୍ତଳାକୁମାରୀ ସାବତ ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ ।

ଆଲୋଚ୍ୟ ସମୟ ମଧ୍ୟରେ ବିଜ୍ଞାନ ବିଷୟକ ପ୍ରବନ୍ଧ ବା ଗ୍ରନ୍ଥ ରଚନା କ୍ଷେତ୍ରରେ ମଧ୍ୟ କୌଣସି ଅଗ୍ରଗତିର ସୂଚନା ମିଳେ ନାହିଁ । ପତ୍ରପତ୍ରିକାରେ ମାତ୍ର ସ୍ୱଳ୍ପ ସଂଖ୍ୟକ ପ୍ରବନ୍ଧ ଏହି ସମୟ ମଧ୍ୟରେ ପ୍ରକାଶିତ ହୋଇଥିଲା । ବୈଜ୍ଞାନିକ ପ୍ରବନ୍ଧ ରଚନା କରିବାରେ ପ୍ରାଣକୃଷ୍ଣ ପରିଜା, ହରିବନ୍ଧୁ ମହାନ୍ତି ଓ ବଂଶୀଧର ସାମନ୍ତରାୟ ଯତ୍‌ସାମାନ୍ୟ ଉଦ୍ୟମ କରିଥିଲେ ।

## ଓଡ଼ିଆ ପ୍ରବନ୍ଧ ସାହିତ୍ୟର ତୃତୀୟ ପର୍ଯ୍ୟାୟ—

ସ୍ୱାଧୀନତା ଲାଭ ପରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ବିଭିନ୍ନ ବିଭାଗରେ ଯତ୍‌ସାମାନ୍ୟ ହେଉ ପଛକେ, ବିକାଶ ସାଧିତ ହୋଇ ଅଛି । ଉଚ୍ଚ ଶିକ୍ଷା ଉଦ୍ଦେଶ୍ୟରେ ଓଡ଼ିଶାର ବହୁ ଅଧ୍ୟାପକ ସାମ୍ବାଦିକ ଓ ବିଶିଷ୍ଟ ବ୍ୟକ୍ତି ବିଦେଶ ଯାତ୍ରା କରିଥିବାରୁ ମୁଖ୍ୟତଃ ସେହି ଅଧ୍ୟାପକ-ଲେଖକମାନଙ୍କର ରଚିତ ଭ୍ରମଣ ସାହିତ୍ୟ ଦ୍ୱାରା ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଋଦ୍ଧିମନ୍ତ ହୋଇଅଛି । ସେହିସବୁ ଲେଖକମାନଙ୍କ ମଧ୍ୟରୁ ଡ: କୁଞ୍ଜବିହାରୀ ଦାଶ (ଲଙ୍କାଯାତ୍ରୀ, ପଥ ଓ ପଥିକ, ମୋ ସ୍ୱପ୍ନର କାଶ୍ମୀର); ଡ: ମାୟାଧର ମାନସିଂ (ପଶ୍ଚିମ ପଥିକ), ସୁରେନ୍ଦ୍ର ମହାନ୍ତି (ପେକିଂ ଡାଏରୀ), ଗୋଲୋକବିହାରୀ ଧଳ (ଲଣ୍ଡନ ଚିଠି),

ଚିତ୍ତରଞ୍ଜନ ଦାଶ (ନେପାଳ ପଥେ, ଗଞ୍ଜାମମାଳରେ ସାତଦିନ), ଅନନ୍ତପ୍ରସାଦ ପଣ୍ଡା, ସୂର୍ଯ୍ୟକାନ୍ତ ଦାଶ (ଅଳକାପୁରୀ ଆମେରିକା) ଉମେଶଚନ୍ଦ୍ର ପାଣିଗ୍ରାହୀ (ଦୃଷ୍ଟିପାତ, ପଥପ୍ରାନ୍ତେ), ରାଧାନାଥ ରଥ (ବିଲାତ ଡାଏରୀ), ଶ୍ରୀରାମଚନ୍ଦ୍ର ଦାଶ (ୟୁରୋପରେ ମୋ ଅନୁଭୂତି); ମନୋଜ ଦାସ (ଇଣ୍ଡୋନେସିଆ ଅନୁଭୂତି), ଶ୍ରୀହର୍ଷ ମିଶ୍ର (ପଶ୍ଚିମ ଦିଗନ୍ତ), ଗୋବିନ୍ଦ ଦାସ (ଦେଶେ-ଦେଶେ), ବିଶ୍ୱନାଥ ପଶାଏତ (ରୁଷ ଭ୍ରମଣ) ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଜୀବନୀମୂଳକ ପ୍ରବନ୍ଧ ରଚନାକ୍ଷେତ୍ରରେ ଆଲୋଚ୍ୟକାଳ ମଧ୍ୟରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି ହୋଇପାରି ନାହିଁ । ଆତ୍ମଜୀବନୀ ଓ ସ୍ମୃତିକଥା ରଚନା କରିବାରେ ଫକୀରମୋହନଙ୍କ ପରେ ଗୋଦାବରୀଶ ମିଶ୍ର, [ ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ], ହରେକୃଷ୍ଣ ମହତାବ, ଗୋବିନ୍ଦ ମିଶ୍ର, [ଜୀଷ୍ଣୁ ଜୀବନର ଆତ୍ମବିକାଶ], ପବିତ୍ରମୋହନ ପ୍ରଧାନ [ମୁକ୍ତିପଥେ ସୈନିକ], ଲକ୍ଷ୍ମୀନାରାୟଣ ସାହୁ, ବୈଷ୍ଣବ ପାଣି [ ପାଣିକବିଙ୍କ ଆତ୍ମଜୀବନୀ ] ପ୍ରଭୃତିଙ୍କ ଉଦ୍ୟମ ପ୍ରଶଂସନୀୟ । ଅନୁଭୂତିର ଅକପଟ ସରସ ଅଭିବ୍ୟକ୍ତି, ସରଳ ଚିତ୍ତାକର୍ଷକ ଭାଷାଶୈଳୀ ଓ ରୋମାଞ୍ଚକର ଅଭିଜ୍ଞତା ଦୃଷ୍ଟିରୁ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ' ପୁସ୍ତକଟି ଆଲୋଚ୍ୟକାଳ ମଧ୍ୟରେ ରଚିତ ଆତ୍ମଜୀବନୀମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ ରଚନା । ଜୀବନୀମୂଳକ ପ୍ରବନ୍ଧ ଓ ପୁସ୍ତକାବଳୀ ରଚନା କରିବାରେ ସ୍ୱାଧୀନତାପୂର୍ବରୁ ମୃତ୍ୟୁଞ୍ଜୟ ରଥ, ଚିନ୍ତାମଣି ମହାନ୍ତି, ପଦ୍ମଚରଣ ପଟ୍ଟନାୟକ, ପାର୍ବତୀଚରଣ ଦାସ, ଅନନ୍ତ ପଦ୍ମନାଭ ପଟ୍ଟନାୟକ ଓ ତତ୍ପରବର୍ତ୍ତୀ କାଳରେ କୃଷ୍ଣଚନ୍ଦ୍ର କର, ଚନ୍ଦ୍ରଶେଖର ମିଶ୍ର, ସରଳା ଦେବୀ, ନବକିଶୋର ଦାସ, ନରସିଂହ ମହାପାତ୍ର,

ରାଧାଚରଣ ପଣ୍ଡା, ଗୋଲୋକବିହାରୀ ଧଳ,ଉପେନ୍ଦ୍ର ମିଶ୍ର, ଜାନକୀ-ବଲ୍ଲଭ ପଟ୍ଟନାୟକ ପ୍ରଭୃତି ଉଦ୍ୟମ କରିଥିଲେହେଁ ଓଡ଼ିଆ ଜୀବନୀ-ସାହିତ୍ୟ ଏବେ ମଧ୍ଧ ଅନୁନ୍ନତ ଅବସ୍ଥାରେ ରହିଅଛି । ଜ୍ଞାନ ବିଜ୍ଞାନ ଓ ବିଭିନ୍ନ କ୍ଷେତ୍ରରେ ସାଫଲ୍ୟମଣ୍ଡିତ ହୋଇଥିବା ପୃଥିବୀପ୍ରସିଦ୍ଧ ବ୍ୟକ୍ତିମାନଙ୍କର ଜୀବନୀ, ଏପରିକି ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନଙ୍କର ଜୀବନଚରିତ ମଧ୍ୟ ଓଡ଼ିଆଭାଷାରେ ଏପର୍ଯ୍ୟନ୍ତ ପ୍ରଣୀତ ହୋଇ ନାହିଁ । 'ଉତ୍କଳ ସାହିତ୍ୟ ସମାଜ' ଓଡ଼ିଆ ଜୀବନୀ-ସାହିତ୍ୟର ଉନ୍ନତି-କଳ୍ପେ ଗୌରୀଶଙ୍କର ପୁରସ୍କାର ପ୍ରଦାନର ପ୍ରଶଂସନୀୟ ବ୍ୟବସ୍ଥା କରି ବହୁ ଲେଖକଙ୍କୁ ଉତ୍ସାହିତ କରି ଆସୁଅଛନ୍ତି ।

ଐତିହାସିକ ପ୍ରବନ୍ଧ ରଚୟିତାଭାବେ ମଧ୍ଧ ମୁଖ୍ୟତଃ ଓଡ଼ିଶାର ଶିକ୍ଷକ ଓ ଅଧ୍ୟାପକମାନଙ୍କୁ ନିୟୋଜିତ ଥିବା ଦେଖାଯାଏ । ଶିବପ୍ରସାଦ ଦାସ, କେଦାରନାଥ ମହାପାତ୍ର, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ମନ୍ମଥନାଥ ଦାସ, ନବୀନକୁମାର ସାହୁ, ସୁଧାକର ପଟ୍ଟନାୟକ, ପରମାନନ୍ଦ ଆଚାର୍ଯ୍ୟ, ସୂର୍ଯ୍ୟନାରାୟଣ ଦାସ, ସଦାଶିବ ରଥ ଶର୍ମା ପ୍ରଭୃତିଙ୍କ ବହୁ ଉପାଦେୟ ପ୍ରବନ୍ଧଦ୍ୱାରା ପ୍ରବନ୍ଧ ସାହିତ୍ୟର ଏଇ ବିଭାଗ ପରିପୁଷ୍ଟ ହୋଇଅଛି ।

ଓଡ଼ିଆରେ ଶିଳ୍ପକଳା ସମ୍ପର୍କୀୟ ଆଲୋଚନା ଓ ଗ୍ରନ୍ଥାଦିର ବହୁଳ ଅଭାବ ପରିଲକ୍ଷିତ ହୁଏ । ଏବେ ମଧ୍ୟ ଓଡ଼ିଶାର ସ୍ଥାପତ୍ୟ-ଶିଳ୍ପ ବିଷୟରେ ଓଡ଼ିଆ ଭାଷାରେ କୌଣସି ପୁସ୍ତକ ରଚିତ ହୋଇ-ନାହିଁ । ଅଥଚ ଇଂରାଜୀ ଭାଷାରେ ଅକ୍‌ସଫୋର୍ଡ଼ରୁ ଓଡ଼ିଶାର ସ୍ଥାପତ୍ୟ ସମ୍ପର୍କରେ ଅର୍ଦ୍ଧେନ୍ଦୁକୁମାର ଗାଙ୍ଗୁଲିଙ୍କ ରଚିତ ଏକ ବିରାଟ ପୁସ୍ତକ ପ୍ରକାଶିତ ହୋଇଅଛି । ବହୁବର୍ଷ ପୂର୍ବେ 'ମୁକୁର' ପତ୍ରିକାରେ ଛକଡ଼ି ମହାନ୍ତିଙ୍କ ରଚିତ ଭାରତୀୟ ଶିଳ୍ପ ଧାରାବାହିକଭାବେ

ପ୍ରକାଶିତ ହୋଇଥିଲା । ରାଧାଚରଣ ପଣ୍ଡା (ଉତ୍କଳ ଶିଳ୍ପ ସୃଭୂଷା) ପରେ ଗୋପାଳ କାନୁନ୍‌ଗୋ (କଳାର ବିଗ୍ରହ) ବିନୋଦ ରାଉତରାୟ (ଓଡ଼ିଶୀ ନୃତ୍ୟ) ପ୍ରଭୃତି ମୁଷ୍ଟିମେୟ ଲେଖକଙ୍କର ଉଦ୍ୟମ ଯେ ଏ କ୍ଷେତ୍ରରେ ପ୍ରଶଂସନୀୟ କହିବା ଅନାବଶ୍ୟକ ।

ଯୁଦ୍ଧୋତ୍ତର ତଥା ସ୍ୱାଧୀନତା ପରବର୍ତ୍ତୀ କାଳରେ ସାହିତ୍ୟା-ଲୋଚନା କ୍ଷେତ୍ରରେ ପୂର୍ବାପେକ୍ଷା ପ୍ରଶଂସନୀୟ ଅଗ୍ରଗତିର ସୂଚନା ମିଳେ । ପଣ୍ଡିତ ନୀଳକଣ୍ଠ ଦାସ, ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତି, ବୃନ୍ଦାବନନାଥ ଶର୍ମା, କରୁଣାକର କର, ଗିରିଜାଶଙ୍କର ରାୟ, କାଳିନ୍ଦୀଚରଣ ପାଣିଗ୍ରାହୀ, ପ୍ରହ୍ଲାଦ ପ୍ରଧାନ, ଡ଼ଃ ମାୟାଧର ମାନସିଂହ, ରାଜକିଶୋର ମହାନ୍ତି, କୁଞ୍ଜବିହାରୀ ଦାଶ ପ୍ରଭୃତି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବ ଓ ବିଭିନ୍ନ ଓଡ଼ିଆ କବିଙ୍କ କାବ୍ୟ-କବିତା ସମ୍ପର୍କରେ ଆଲୋଚନାତ୍ମକ ପ୍ରବନ୍ଧାବଳୀ ରଚନା କରିଅଛନ୍ତି ।

୧୯୪୮ରୁ ଓଡ଼ିଆ ସାହିତ୍ୟ ବାଧ୍ୟତାମୂଳକ ବିଷୟରୂପରେ କଲେଜ ସ୍ତରରେ ଅଧୀତ ହେବା ବ୍ୟବସ୍ଥା ହେବାରୁ ଓଡ଼ିଆ ବିଭାଗର ବହୁ ଅଧ୍ୟାପକ ଓଡ଼ିଆ ସାହିତ୍ୟ ଗବେଷଣାରେ ନିୟୋଜିତ ହେବାର ସୁଯୋଗ ଲାଭକଲେ । ମୁଖ୍ୟତଃ ସେହିମାନଙ୍କ ଦାନରେ ଆଜିର ଓଡ଼ିଆ ସମାଲୋଚନା-ସାହିତ୍ୟ ଅଭିବୃଦ୍ଧି ଲାଭ କରିଅଛି । ସେମାନଙ୍କ ମଧ୍ୟରୁ କୁଞ୍ଜବିହାରୀ ଦାଶ, ସର୍ବେଶ୍ୱର ଦାଶ, ନଟବର ସାମନ୍ତରାୟ, ବଂଶୀଧର ମହାନ୍ତି, ବେଣୁଧର ରାଉତ, ଗୌରୀକୁମାର ବ୍ରହ୍ମା, କାହ୍ନୁଚରଣ ମିଶ୍ର, ମହାପାତ୍ର ନୀଳମଣି ସାହୁ, ପଠାଣି ପଟ୍ଟନାୟକ, ନରେନ୍ଦ୍ରନାଥ ମିଶ୍ର, ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ଚିନ୍ତାମଣି ବେହେରା, ସିଦ୍ଧେଶ୍ୱର ହୋତା, ଦେବୀପ୍ରସନ୍ନ ପଟ୍ଟନାୟକ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଏତଦ୍‌ବ୍ୟତୀତ ଚିତ୍ତରଞ୍ଜନ ଦାଶ, ସୁରେନ୍ଦ୍ର ମହାନ୍ତି, ତାରିଣୀଚରଣ ଦାସ, ବୀରକିଶୋର ଦାସ ମଧ୍ୟ ବହୁ ଉଚ୍ଚାଙ୍ଗ ସମାଲୋଚନାତ୍ମକ ପ୍ରବନ୍ଧ ରଚନାକରି ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ।

ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଆ ସାହିତ୍ୟରେ ବୈଜ୍ଞାନିକ ବିଷୟବସ୍ତୁ ଅବଲମ୍ବନ କରି ସବିଶେଷ ପ୍ରବନ୍ଧ ରଚିତ ହୋଇ ନଥିଲା । ମାତ୍ର ଆଲୋଚ୍ୟକାଳ ମଧ୍ୟରେ ଓଡ଼ିଆରେ ବହୁ ବୈଜ୍ଞାନିକ ପ୍ରବନ୍ଧ ରଚିତ ହୋଇଅଛି । ମୁଖ୍ୟତଃ ବିଜ୍ଞାନ ଅଧ୍ୟାପକଗଣଙ୍କ ପ୍ରଚେଷ୍ଟାରେ 'ବିଜ୍ଞାନ ପ୍ରଚାର ସମିତି' ଆନୁକୂଲ୍ୟରେ ହିଁ ଏହା ସାଧିତ ହୋଇଅଛି । ଏହି ଧରଣର ପ୍ରବନ୍ଧ ରଚୟିତାଭାବେ ଡ଼ଃ ଗୋକୁଳାନନ୍ଦ ମହାପାତ୍ର, ଡ଼ଃ ବିଦ୍ୟାଧର ପାତ୍ରୀ, ଡ଼ଃ ରାଧାନାଥ ରଥ, ଡ଼ଃ ଗଦାଧର ମିଶ୍ର, ଜଗନ୍ନାଥ ଦାସ, ଡ଼ଃ କୁଳମଣି ସାମଲ, ଶରତକୁମାର ମହାନ୍ତି, ମୁକୁନ୍ଦ ମିଶ୍ର, ବିନୋଦ କାନୁନଗୋ ପ୍ରଭୃତି ଅଗ୍ରଣୀ ।

ଓଡ଼ିଆ ସାହିତ୍ୟରେ ଅର୍ଥନୀତି ଓ ରାଜନୀତି-ବିଜ୍ଞାନ ବିଷୟକ ପ୍ରବନ୍ଧ ବିଶେଷ ରଚିତ ହୋଇନାହିଁ । ତଥାପି ସାମୟିକ ପତ୍ର-ପତ୍ରିକାମାନଙ୍କରେ ଡ଼ଃ ସଦାଶିବ ମିଶ୍ର, ଡ଼ଃ ହରେକୃଷ୍ଣ ମହତାବ, ଡ଼ଃ ରାଧାନାଥ ରଥ, ଡ଼ଃ ଶ୍ରୀରାମଚନ୍ଦ୍ର ଦାସ, ବୈଦ୍ୟନାଥ ମିଶ୍ର ପ୍ରଭୃତି ଏତାଦୃଶ କେତେକ ପ୍ରବନ୍ଧ ରଚନା କରିଅଛନ୍ତି ।

ତତ୍ତ୍ୱାଶ୍ରୟୀ ଦାର୍ଶନିକ ପ୍ରବନ୍ଧକ୍ଷେତ୍ରରେ ତଥା ମୌଳିକ ଗବେଷଣାତ୍ମକ ନିବନ୍ଧ ରଚନାକ୍ଷେତ୍ରରେ ଆଧୁନିକ ଓଡ଼ିଆ-ସାହିତ୍ୟର ଦୀନତା ସୁସ୍ପଷ୍ଟ । ଗବେଷଣାର ଅନୁକୂଳ ସୁବିଧା-ସୁଯୋଗ ଏଠାରେ ନଥିବାରୁ ସମ୍ଭବତଃ ଓଡ଼ିଶାରେ ଏପରି ଦୁର୍ଦ୍ଦଶା ଉପସ୍ଥିତ । ପ୍ରତିବେଶୀ ସାହିତ୍ୟରେ ଯେପରି ଗବେଷଣାତ୍ମକ ରଚନା

ପ୍ରକାଶ ପାଉଛି ତାହା ତୁଳନାରେ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ତାହାର ଚରମ ଅଭାବ ପରିଲକ୍ଷିତ ହୁଏ । ଗୋପୀନାଥ ନନ୍ଦ, ମୃତ୍ୟୁଞ୍ଜୟ ରଥ, ବ୍ରଜବିହାରୀ ମହାନ୍ତି, ଚିତ୍ତରଞ୍ଜନ ଦାସ, ଡ଼ଃ କୁଞ୍ଜବିହାରୀ ତ୍ରିପାଠୀ, ବିମଳକୃଷ୍ଣ ପାଲ, ଗୋଲୋକବିହାରୀ ଧଳ, ପ୍ରିୟବ୍ରତ ଦାସ, ନୀଳମଣି ମିଶ୍ର, ଡ଼ଃ ନଟବର ସାମନ୍ତରାୟ, ନରେନ୍ଦ୍ର ନାଥ ମିଶ୍ର, ଗଙ୍ଗାଧର ଗୁରୁ ପ୍ରଭୃତି ଏ ଦିଗରେ ଲେଖନୀ ଚାଳନା କରୁଅଛନ୍ତି ।

ଆଧୁନିକ ଓଡ଼ିଆ ସାହିତ୍ୟରେ ରମ୍ୟ-ରଚନା ଶ୍ରେଣୀର ପ୍ରବନ୍ଧ ସ୍ୱଳ୍ପ ପରିମାଣରେ ଲିଖିତ ହୋଇଅଛି । ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ବାଇ ମହାନ୍ତି ପାଞ୍ଜି', 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା' 'ପୁସ୍ତକର ରଚନା ବଳୀ' ଏହି ଧରଣର ପ୍ରବନ୍ଧଭାବେ ଗ୍ରହଣୀୟ । ଗତ ଶତାବ୍ଦୀର ପ୍ରଥମ ପାଦର ସୃଷ୍ଟି ହେଲେହେଁ ତାହାର ସରସତା ଏବେ ମଧ୍ୟ ଅନୁଭୂତ ହୋଇଥାଏ । ପରବର୍ତ୍ତୀ କାଳରେ ଗୋବିନ୍ଦ ତ୍ରିପାଠୀ, ଗୋପୀନାଥ ମହାନ୍ତି ପ୍ରମୁଖ ଲେଖକଗଣ ସରସ ଲଘୁ ଆମୋଦଦାୟକ ଭଙ୍ଗୀରେ ପ୍ରବନ୍ଧ ରଚନା କରିବାରେ ମନୋନିବେଶ କରିଥିଲେ । ସହକାର, ନବଭାରତ ପ୍ରଭୃତି ପତ୍ରିକାରେ ପ୍ରକାଶ ପାଇଥିବା ସେହି ସବୁ ରଚନାବଳୀ ଏବେ ମଧ୍ୟ ପୁସ୍ତକାକାରରେ ପ୍ରକାଶ ପାଇନାହିଁ । 'ନବଭାରତ' ପତ୍ରିକାରେ ଧାରାବାହିକଭାବେ ରାଜକିଶୋର, ନିତ୍ୟାନନ୍ଦ, କାହ୍ନୁଚରଣ, ଗୋପୀନାଥ ପ୍ରଭୃତିଙ୍କ ପତ୍ରାକାରରେ ଲିଖିତ ପ୍ରବନ୍ଧାବଳୀ (ଭଲପାଇବାର ଶେଷ କଥା)କୁ ମଧ୍ୟ ଏଇ ପର୍ଯ୍ୟାୟଭୁକ୍ତ ରଚନା ଭାବେ ଗ୍ରହଣ କରାଯାଇ ପାରେ । କୃଷ୍ଣପ୍ରସାଦ ବସୁ ଅଂଶତଃ 'ଆଖଡ଼ାଘରେ ବୈଠକ' ମାଧ୍ୟମରେ ଏହି ଧରଣର କେତେଗୋଟି ରଚନା ପ୍ରଣୟନ କରିଛନ୍ତି । ଆଲୋଚ୍ୟ

କାଳ ମଧ୍ୟରେ ରଚିତ ନିତ୍ୟାନନ୍ଦ ମହାପାତ୍ରଙ୍କ 'ପଦ୍ମ ଓ ପ୍ରତିମା' କୁଞ୍ଜବିହାରୀଙ୍କର 'ଶ୍ରୀମନ୍ତ' ଚିତ୍ତରଞ୍ଜନଙ୍କ 'ଜୀବନ ବିଦ୍ୟାଳୟ' ଚିନ୍ତାମଣି ମିଶ୍ରଙ୍କ 'ଦେବଦେବଙ୍କ ଦୁର୍ଗତି' ଏଇ କେତୋଟି ମାତ୍ର ପୁସ୍ତକ ଉଲ୍ଲେଖଯୋଗ୍ୟ ରମ୍ୟ-ରଚନାରୂପେ ଗ୍ରହଣୀୟ ।

ସାଂପ୍ରତିକ ସାହିତ୍ୟରେ ପ୍ରଚଳିତ ଏହି ରମ୍ୟ-ରଚନା ବା Bells' Letters ନାମକ ରଚନାରୀତି (Form) କ୍ରମଶଃ ଜନପ୍ରିୟ ହେଉଅଛି । ଏହି ଧରଣର ରଚନାରେ ଚିନ୍ତା ଅପେକ୍ଷା ଆବେଗ ଓ କଳ୍ପନାର ପ୍ରାଧାନ୍ୟ ସ୍ୱୀକୃତ ହୁଏ । Bells' Letters ଏକ ଫରାସୀ ଶବ୍ଦ । ଏହାର ଅର୍ଥ ସୁନ୍ଦର ସାହିତ୍ୟ । ଇଂରାଜୀ ସାହିତ୍ୟରେ ୧୭୧୦ ମସିହାରେ ଏଇ ଶବ୍ଦର ପ୍ରଥମ ପ୍ରୟୋଗ ରିଚାର୍ଡ ଷ୍ଟିଲ କରିଥିଲେ । ମତାନ୍ତରେ ସୁଇଫ୍ଟ ଏହି ଶବ୍ଦର ପ୍ରଥମ ପ୍ରୟୋଗକାରୀ । *

ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ-ରଚୟିତାଙ୍କ ସଂଖ୍ୟା ମୁଷ୍ଟିମେୟ । ଅନେକ ପ୍ରବନ୍ଧ ରଚୟିତାଙ୍କ ପ୍ରବନ୍ଧାବଳୀ ପାଠ୍ୟ-ପୁସ୍ତକ ସ୍ତରର ହେଲେହେଁ ଆଧୁନିକ ଓଡ଼ିଆ ସାହିତ୍ୟରେ ସେଗୁଡ଼ିକର ଆବଶ୍ୟକତା ଅପରିହାର୍ଯ୍ୟ । ପ୍ରବନ୍ଧ ସାହିତ୍ୟର ବଚ୍ଛିନ୍ନ ବିଭବରେ

---

* "A term used to designate the more artistic and imaginative forms of literature, a poetry or romance, as opposed to more pedestrain and exact studies. Modern usage applies thew ord more often to the little hills than to the moun– tain peaks of literature and denotes the essay and the critical study rather than the epics of Homer or the plays of Shakespeare."

ବିଭିନ୍ନ ପ୍ରବନ୍ଧ ରଚୟିତାଙ୍କ କୃତିତ୍ୱର ତୁଳନାତ୍ମକ ବିଚାର କରିବା ଏଠାରେ ସମ୍ଭବପର ନୁହେଁ । ତଥାପି ରମ୍ୟ-ରଚନା, ଆଲୋଚନା, ଭ୍ରମଣ ବୃତ୍ତାନ୍ତ, ଜୀବନଚରିତ, ଚିନ୍ତାମୂଳକ ରଚନା ପ୍ରଭୃତି ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବରେ ଏକକଭାବେ 'ଶିଳା ଓ ଶାଳଗ୍ରାମ' ପ୍ରଣେତା ଚିତ୍ତରଞ୍ଜନ ଦାସଙ୍କ ଦାନ ଅଗ୍ରଗଣ୍ୟ ବୋଲି ମୋର ବିଶ୍ୱାସ । ପ୍ରଗତିଶୀଳ ମାର୍ଜିତ ଦୃଷ୍ଟିକୋଣ, ଉନ୍ନତ ଚିନ୍ତା ଓ ପ୍ରକାଶଭଙ୍ଗୀର ଅଭିନବତ୍ୱ ଦୃଷ୍ଟିରୁ କାଳନ୍ଦୀଚରଣଙ୍କ 'ନେତୃତ୍ୱ ଓ ନେତୃତ୍ୱ' ସଂକଳନସ୍ଥ ପ୍ରବନ୍ଧାବଳୀ ମଧ୍ୟ ଓଡ଼ିଆ ପ୍ରବନ୍ଧ ରଚନାକ୍ଷେତ୍ରରେ ସିଦ୍ଧିର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଓଡ଼ିଆ ସାହିତ୍ୟରେ ଉଚ୍ଚାଙ୍ଗ ପ୍ରବନ୍ଧ ସାହିତ୍ୟ ଅଭାବରୁ କଲେଜସ୍ତରରେ ଏବେ ମଧ୍ୟ ଊନବିଂଶ ଶତାବ୍ଦୀର ବା ଅର୍ଦ୍ଧଶତାବ୍ଦୀ ପୂର୍ବର ଚିନ୍ତା ଓ ଭାବନା ସମ୍ବଳିତ ପ୍ରବନ୍ଧାବଳୀ ପାଠ୍ୟପୁସ୍ତକଭାବେ ନିର୍ବାଚିତ ହେଉଅଛି । ଓଡ଼ିଆ ଭାଷାରେ ଆଧୁନିକ ଯୁଗର ଚିନ୍ତା, ଚେତନା ଓ ଜ୍ଞାନ-ବିଜ୍ଞାନ ବିଷୟକ ପୁସ୍ତକ ଅଭାବରୁ ଓଡ଼ିଆ-ସାହିତ୍ୟ ମାଧ୍ୟମରେ ଜ୍ଞାନ, ଚିନ୍ତା ଓ ଭାବନାର ଅଭିବୃଦ୍ଧି ହେବା ମଧ୍ୟ ସମ୍ଭବପର ହୋଇପାରୁ ନାହିଁ । ଏଣୁ ପ୍ରବନ୍ଧ ସାହିତ୍ୟର ଅଭିବୃଦ୍ଧି ଏକ ଜାତୀୟ ପ୍ରଣିଧାନ ଯୋଗ୍ୟ ବିଷୟ । ଯାହାହେଉ, ସଂପ୍ରତି ଜ୍ଞାନମଣ୍ଡଳ ସଂକଳନ ଏ ଦିଗରେ ଏକ ସାହସିକ ପଦକ୍ଷେପ ।

ଏହାହିଁ ମୋଟାମୋଟିଭାବେ ଓଡ଼ିଆ ପ୍ରବନ୍ଧସାହିତ୍ୟର ଏକ ସ୍ଥୂଳ ପରିଚୟ । ମୁଖ୍ୟତଃ ଶିକ୍ଷାବିଭାଗୀୟ କେତେକ ବ୍ୟକ୍ତିଙ୍କ ଉଦ୍ୟମରେ ଆଧୁନିକ ଓଡ଼ିଆ ପ୍ରବନ୍ଧ-ସାହିତ୍ୟର ହଡ଼ପାମାନ୍ୟ ବିକାଶ ସାଧିତ ହୋଇଅଛି । ଶିକ୍ଷାବିଭାଗର ବିଭିନ୍ନ ବିଭାଗରେ କୃତିତ୍ୱ ଅର୍ଜନ କରିଥିବା ବ୍ୟକ୍ତିଗଣ ସେମାନଙ୍କ ଜ୍ଞାନ ଓ ଭାବଧାରାର କିୟଦଂଶ

ଓଡ଼ିଆ ଭାଷା ମାଧ୍ୟମରେ ପ୍ରକାଶ କଲେ ଓଡ଼ିଆ ପ୍ରବନ୍ଧସାହିତ୍ୟର ଦୀନତା ଯେ ବହୁ ପରିମାଣରେ ଅପସାରିତ ହୋଇ ପାରନ୍ତା ଏପରି ଆଶା କରିବା ସ୍ୱାଭାବିକ । ଶିକ୍ଷାବିଭାଗୀୟ ବ୍ୟକ୍ତିମାନଙ୍କ ବ୍ୟତୀତ ଓଡ଼ିଶାର ସଙ୍ଗୀତ, ନୃତ୍ୟ, ଶିଳ୍ପ, ବାଣିଜ୍ୟ, ପୋଲିସ, ବିଚାରବିଭାଗ, ଆଇନ, ବ୍ୟବସ୍ଥାପକ, ଚିକିତ୍ସା, କୃଷି, ସ୍ଥାପତ୍ୟ, ସାମ୍ବାଦିକତା ପ୍ରଭୃତି ବିଭିନ୍ନ କ୍ଷେତ୍ରରେ କୃତବିଦ୍ୟ ବ୍ୟକ୍ତି ସେମାନଙ୍କ ଭାବନା, ଜ୍ଞାନ, ଚିନ୍ତା ଓ ଅନୁଭୂତି ସମୂହକୁ ବିଭିନ୍ନ ପ୍ରବନ୍ଧମାଧ୍ୟମରେ ପ୍ରକାଶ ନକଲେ ଓଡ଼ିଆ ପ୍ରବନ୍ଧସାହିତ୍ୟ ତଥା ସମଗ୍ରଭାବରେ ଓଡ଼ିଆ ସାହିତ୍ୟ ପରିପୁଷ୍ଟି ଲାଭ କରିବା ଅସମ୍ଭବ । ସେହିପରି ବିଶ୍ୱବିଦ୍ୟାଳୟ, ସାହିତ୍ୟଏକାଡ଼େମୀ ସରକାରୀ ତଥା ବେସରକାରୀ ଉଦ୍ୟମରେ ପ୍ରବନ୍ଧରଚନା ଓ ଗବେଷଣା ଲାଗି ଉତ୍ସାହପ୍ରଦ ବ୍ୟବସ୍ଥା, ବୃତ୍ତି, ଅନୁକୂଳ ସୁବିଧା ସୁଯୋଗ ଦେବା ଓ ବିଭିନ୍ନ ସାହିତ୍ୟରୁ ଆହରଣ ଓ ଅନୁବାଦ ଆଜି ଏକାନ୍ତ କାମ୍ୟ ମନେହୁଏ । ଏହା ନହେଲେ ଓଡ଼ିଆ ସାହିତ୍ୟର ଆଶାନୁରୂପ ବିକାଶ ହୋଇ ପାରିବ ନାହିଁ ।



# ଆଧୁନିକ ଓଡ଼ିଆ ଉପନ୍ୟାସ

## ଉପନ୍ୟାସ ଓ ତାହାର ରଚନା ରୀତି

ଉପନ୍ୟାସ ଶବ୍ଦ ବିଭିନ୍ନ ଅର୍ଥ ପ୍ରକାଶକ ହେଲେହେଁ ଊନବିଂଶ ଶତକର ଶେଷଭାଗରୁ ଏହା ମୁଖ୍ୟତଃ ଗଦ୍ୟରେ ଲିଖିତ ଉପକଥା, କଳ୍ପିତ ବୃତ୍ତାନ୍ତ ବା ଇଂରାଜୀ ନଭେଲ (Novel) ଅର୍ଥରେହିଁ ପ୍ରଯୁକ୍ତ ହୋଇଅଛି । (୧) ଏହି ନଭେଲ ଶବ୍ଦ ମଧ୍ୟ ଏକ ଇଟାଲୀୟ ଶବ୍ଦ 'novelle' ଅର୍ଥାତ୍ 'ନୂତନ ଗଳ୍ପ'ର ଇଂରାଜୀ ରୂପାନ୍ତର ।

ଅଷ୍ଟାଦଶ ଶତକର ପାଶ୍ଚାତ୍ୟ ସାହିତ୍ୟରେ ଆଧୁନିକ ଉପନ୍ୟାସର ପ୍ରତିଷ୍ଠା ଏବଂ ରିଚାର୍ଡସନଙ୍କ ଲିଖିତ ଖ୍ରୀ ୧୭୪୦ରେ ପ୍ରକାଶିତ 'ପାମେଲା' (Pamella) ଉପନ୍ୟାସକୁ ଇଂରାଜୀ ସାହିତ୍ୟର ପ୍ରଥମ ଆଧୁନିକ ଉପନ୍ୟାସ ବୋଲି ଆଲୋଚକମାନେ ମତ ପ୍ରକାଶ କରିଅଛନ୍ତି । (୨) ମାତ୍ର ଅଷ୍ଟାଦଶ ଶତାବ୍ଦୀପୂର୍ବରୁ ଆଧୁନିକ ଉପନ୍ୟାସ ସୃଷ୍ଟିର ଉପାଦାନସମୂହ ଯେ ଭିନ୍ନରୂପରେ ବିଭିନ୍ନ ସାହିତ୍ୟକ୍ଷେତ୍ରରେ ବିଦ୍ୟମାନ ଥିଲି, ଏ ବିଷୟରେ ମତଦ୍ୱୈଧର ଅବକାଶ ନାହିଁ । କେତେକ ଆଲୋଚକ ୯ମ – ୧୦ମ ଶତାବ୍ଦୀରେ

---

(୧) ଉପନ୍ୟାସ (ଉପ + ନି + ଅସ୍ ଧାତୁ = କ୍ଷେପଣ କରିବା + ଭାବ)
୧—ବାକ୍ୟାରମ୍ଭ, ବଚନାରମ୍ଭ; ୨— ଉଲ୍ଲେଖ; ୩—ଦାନ; ୪—ଉପକଥା, କଳ୍ପିତ ବୃତ୍ତାନ୍ତ; ୫—ପ୍ରସ୍ତାବ; ୬— ବନ୍ଧକ ।
(ଭାଷାକୋଷ)

(୨) Colombia Encyclopaedia—p 1284

ଜାପାନର ଲେଡ଼ି ମୋରା ସାକୀଙ୍କ ରଚିତ ଟେଲଅଫ୍ ଗେଞ୍ଜି ଉପନ୍ୟାସକୁ ପୃଥିବୀର ପ୍ରଥମ ଉପନ୍ୟାସଭାବେ ଗ୍ରହଣ କରିବାର ପକ୍ଷପାତୀ । କାରଣ ଶେଷୋକ୍ତ ରଚନାରେ ଆଧୁନିକ ଉପନ୍ୟାସର ସମସ୍ତ ଲକ୍ଷଣ ପରିଦୃଷ୍ଟ ହୋଇଥାଏ ।

ଉପନ୍ୟାସର ଇତିହାସ ମନୁଷ୍ୟର ଗଳ୍ପ କଥନର ଇତି-ବୃତ୍ତିରହିଁ ନାମାନ୍ତର । ଭାରତୀୟ ସାହିତ୍ୟରେ ହିତୋପଦେଶ, ପଞ୍ଚତନ୍ତ୍ର, ଜାତକ କଥା, ରାମାୟଣ, ମହାଭାରତ ପ୍ରଭୃତିରେ ଉପନ୍ୟାସର ମୂଳବୀଜ ନିହିତ । କାରଣ ସେହିସବୁ ରଚନାରେ ଆଖ୍ୟାୟିକା ବା ଗଳ୍ପ ମାଧ୍ୟମରେ ଲେଖକ ସମାଜ ବା ଲୋକ ଚରିତ୍ରର ବାସ୍ତବ ଛବି ଅଙ୍କିବାକୁ ଚେଷ୍ଟା କରିଅଛନ୍ତି । କାଳ୍ପନିକ, ଅତି ପ୍ରାକୃତ ବା ପୌରାଣିକ ଚରିତ୍ର ଓ ଅଲୌକିକ ପରିବେଶ-ମଧ୍ୟରେ ମଧ୍ୟ ବାସ୍ତବତାର ଏକ ଅସ୍ପଷ୍ଟ ରୂପ ସେହି ସବୁ ରଚନା-ବଳୀରେ ପରିଦୃଷ୍ଟ ହୋଇଥାଏ । ଏଣୁ ରାମାୟଣ ମହାଭାରତ ଛନ୍ଦୋବଦ୍ଧ ହୋଇଥିଲେହେଁ ସେଗୁଡ଼ିକ ଯେ ଉପନ୍ୟାସର ସଗୋତ୍ର ଏହା ସହଜରେ ଅନୁମେୟ ।

ରଚନାରୀତି ଦୃଷ୍ଟିରୁ ସାହିତ୍ୟର ବିଭିନ୍ନ ବିଭାବ ଅପେକ୍ଷା ଉପନ୍ୟାସ ଅଧିକ ସମ୍ପ୍ରସାରଣକ୍ଷମ ( Flexible ) । ଏହାର ବିଷୟବସ୍ତୁ ତଥା ରଚନାରୀତି ବିଷୟରେ କୌଣସି ବାଧ୍ୟବାଧ୍ୟ ନିର୍ଦ୍ଧାରଣ କରାଯିବା ସମ୍ଭବ ନୁହେଁ । ଏଣୁ ଯଥାର୍ଥତଃ କୁହାଯାଇଛି ଯେ—"In contrast to other literary forms the novel enjoys a broad scope in subject matter and a comparative freedom of technique;

its central interest may be character study, a social problem, adventure, mystery, centemporary manners, satire etc. while its technique is limited solely to the ingenuity of its author."

ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଉପନ୍ୟାସ ରଚନା ଅପେକ୍ଷାକୃତ ସହଜସାଧ୍ୟ ହୋଇଥିବା ଯୋଗୁ ଆଧୁନିକ ଯୁଗରେ ପୃଥିବୀର ସକଳ ସାହିତ୍ୟରେ ଏହା ସର୍ବାଧିକ ଜନପ୍ରିୟ ଓ ଏହାର ସୃଷ୍ଟି ମଧ୍ୟ ସର୍ବାପେକ୍ଷା ବିପୁଳ ।

ଆଲୋଚନାର ସୁବିଧାଲାଗି ଉପନ୍ୟାସକୁ ସାଧାରଣତଃ ୧—ଘଟଣାପ୍ରଧାନ, ୨—ଚରିତ୍ରପ୍ରଧାନ; ଅଥବା ବିଷୟବସ୍ତୁ ଦୃଷ୍ଟିରୁ ୧—ଐତିହାସିକ, ୨—ସାମାଜିକ, ୩—ରହସ୍ୟଭେଦ-ମୂଳକ ( Detective ), ୪—ଅଭିଯାନମୂଳକ (Novel of adventur), ୫—ପତ୍ରୋପନ୍ୟାସ ( Epistolary Novel ), ୬—ଆତ୍ମ-ଜୀବନମୂଳକ (Auto biographical), ୭—ହାସ୍ୟ-ରସାତ୍ମକ, ୮—ଭୀତିଉତ୍ପାଦକ (Novel of terror) ପ୍ରଭୃତି ଆଠ ଭାଗରେ ବିଭକ୍ତ କରି ଯାଇଥାଏ ।

ପ୍ରାଚୀନ ଓଡ଼ିଆ ସାହିତ୍ୟର ରାମାୟଣ, ମହାଭାରତ ଓ ରୀତିଯୁଗର ଭଞ୍ଜୀୟ ରାଜକୁମାରଙ୍କ ପ୍ରଣୟ ସମ୍ବନ୍ଧୀ କାବ୍ୟ-ଗୁଡ଼ିକରେ ଯେ ଉପନ୍ୟାସର ପ୍ରଚୁର ଉପାଦାନ ନିହିତ କହିବା ବାହୁଲ୍ୟ ମାତ୍ର । କଥାବସ୍ତୁ ଦୃଷ୍ଟିରୁ ବନମାଳୀ ଦାସଙ୍କ 'ଚିତ୍ରଇଚ୍ଛାବତୀ' କାବ୍ୟକୁ ଗଦ୍ୟରେ ବର୍ଣ୍ଣନା କଲେ ଯେ ଏହା ଆଧୁନିକ ଉପନ୍ୟାସ-ଭାବେ ପରିଗୃହୀତ ହୋଇପାରିବ, ଏପରି ଅନୁମାନ ଅସମୀଚୀନ ନୁହେଁ ।

## ଓଡ଼ିଆ ଉପନ୍ୟାସର ପ୍ରଥମ ପର୍ଯ୍ୟାୟ—

ଇଂରାଜୀ ଉପନ୍ୟାସ-ରୀତି ଅନୁସରଣରେ ଆଧୁନିକ ଓଡ଼ିଆ ଉପନ୍ୟାସର ସୃଷ୍ଟି ହୋଇଥିଲେ ହେଁ, ଓଡ଼ିଆ ଉପନ୍ୟାସର-ରଚନାର ପ୍ରଥମ ପର୍ଯ୍ୟାୟରେ ବଙ୍କିମ-ରଚିତ ବଙ୍ଗ ଉପନ୍ୟାସର ପ୍ରଭାବ ଓଡ଼ିଆ ଉପନ୍ୟାସରଚୟିତା ରାମଶଙ୍କରଙ୍କୁ ପ୍ରଭାବିତ କରିଥିଲ । ତାହାଙ୍କ 'ବିବାସିନୀ'ରେ (ରଚନାକାଳ—୧୮୯୨-୯୩) ସମକାଳୀନ ନବ ଇଂରାଜୀ ଶିକ୍ଷାପ୍ରାପ୍ତ ଉତ୍କଳୀୟ ସମାଜ-ବକ୍ଷୋଭର ଚିତ୍ର ମିଳେ ନାହିଁ । ପରନ୍ତୁ ଲେଖକ ଏଥିରେ ଇଂରେଜ ରାଜତ୍ୱର ପୂର୍ବବର୍ତ୍ତୀ ମରହଟ୍ଟା ଶାସନକାଳୀନ ଦେଶର ଦୁର୍ବ୍ୟବସ୍ଥା, ଅତ୍ୟାଚାର ଓ ଦୁର୍ଭିକ୍ଷକାଳୀନ ସାମାଜିକ ଚିତ୍ର ବର୍ଣ୍ଣନା କରିଅଛନ୍ତି । ଏକ ପ୍ରଣୟ ଉପାଖ୍ୟାନକୁ ତନ୍ମଧ୍ୟରେ ସଂଯୁକ୍ତ କରି କଥାବସ୍ତୁକୁ ସରସ କରିଅଛନ୍ତି । କୃପଣ ଧନିକ ରାଧାଗୋବିନ୍ଦ ଚଉଧୁରୀଙ୍କ ପାଳିତା କନ୍ୟା ବାଳବିଧବା କଳାବତୀ କପଟରେ ଅପହୃତା ହୋଇ କର୍ତ୍ତବ୍ୟନିଷ୍ଠ ଦଳପତି ରଘୁନାଥଙ୍କ ଗୃହରେ ବାସ କରିଛି ଓ ତାହାଙ୍କ ପ୍ରଣୟ ପ୍ରତ୍ୟାଖ୍ୟାନପୂର୍ବକ ନିଜର ସଂଗିନୀ ରସକଳା ସହ ରଘୁନାଥଙ୍କର ବିବାହର ଉଦ୍‌ଯୋଗ କରି ଆତ୍ମହତ୍ୟା କରିଛି ତାହା ଲେଖକ ବିଷଦଭାବେ ଚିତ୍ରଣ କରିଅଛନ୍ତି । ନାୟିକା କଳାବତୀର ନାମାନୁଯାୟୀ ଲେଖକ ଉପନ୍ୟାସର ନାମ ବିବାସିନୀ ରଖିଛନ୍ତି । ପ୍ରାଚୀନତମ ଉପନ୍ୟାସ ହୋଇଥିବା ଯୋଗୁ ଏହାର ରଚନାରୀତିରେ ମଧ୍ୟ କେତେକ ତ୍ରୁଟି ପରିଲକ୍ଷିତ ହେବା ସ୍ୱାଭାବିକ । ବର୍ଣ୍ଣନାରେ କବିତ୍ୱ ପ୍ରଦର୍ଶନ ଚେଷ୍ଟା, ଦାର୍ଶନିକ ମତବାଦର ବହୁଳ ବର୍ଣ୍ଣନା, କାହିଁକି ବିଷୟ ବର୍ଣ୍ଣିତ ହେଉଛି ପରେ କ'ଣ ବର୍ଣ୍ଣିତ ହେବ, ପାଠକଙ୍କୁ ବାରମ୍ବାର ଆହ୍ୱାନ, ଆଧୁନିକ ରୁଚି ବା ରୀତି ଅନୁରୂପ ମନେହୁଏ ନାହିଁ ।

ଏହିପରି କାଳ୍ପନିକ ଓ ଐତିହାସିକ ବିଷୟ ସମ୍ବଳିତ ଉପନ୍ୟାସ ରଚନାରୀତି ପ୍ରଚଳିତ ଥିବାସମୟରେ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଯୁଗସ୍ରଷ୍ଟା ଫକୀରମୋହନଙ୍କ ଆବିର୍ଭାବ । ବାସ୍ତବଧର୍ମୀ କଥାବସ୍ତୁ ଅବଲମ୍ବନ କରି ସମାଜଜୀବନର ବିଭିନ୍ନ ସ୍ତରରୁ ଚରିତ୍ର-ମାନଙ୍କୁ ନିର୍ବାଚନ କରି ବିଭିନ୍ନ ରସ ସମାବେଶରେ ଫକୀରମୋହନ ଯେଉଁ ପ୍ରାଣସ୍ପର୍ଶୀ ଜୀବନ୍ତ ଆଲେଖ୍ୟ ରଚନା କରିଗଲେ ତାହା ଓଡ଼ିଆ ସାହିତ୍ୟରେ ଯେପରି ଅଭିନବ ସେହିପରି ବିସ୍ମୟକର । ତାଙ୍କର ଛମାଣ ଆଠଗୁଣ୍ଠ (ପ୍ରାଃ ପ୍ରଃ ୧୮୯୮ ଉତ୍କଳ ସାହିତ୍ୟ), ଲଛମା (୧୯୦୩), ମାମୁଁ (୧୯୧୩), ପ୍ରାୟଶ୍ଚିତ୍ତ (୧୯୧୫) ପ୍ରତ୍ୟେକଟି ଉପନ୍ୟାସ ଓଡ଼ିଆ ସାହିତ୍ୟ କାହିଁକି ଯେକୌଣସି ସାହିତ୍ୟର ଉତ୍କୃଷ୍ଟ ରଚନାଭାବେ ଗଣନୀୟ । ଐତିହାସିକ ଉପନ୍ୟାସ 'ଲଛମା' ବ୍ୟତୀତ ଫକୀରମୋହନ ଅନ୍ୟ ତିନୋଟି ସାମାଜିକ ଉପନ୍ୟାସରେ ଲୋଭ, ଲମ୍ପଟ୍ୟ, ଅଧର୍ମିତା, କୁସଂସ୍କାରର କୁପରିଣାମ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସମାଜର ଅତି ସାଧାରଣ ନରନାରୀଙ୍କ ଜୀବନକୁ ଅତ୍ୟନ୍ତ ବାସ୍ତବ ଓ ଜୀବନ୍ତଭାବେ ଚିତ୍ରଣ କରିଅଛନ୍ତି । ଫକୀରମୋହନଙ୍କ ରଚନାବଳୀରେ ହିଁ ଆମେ ପ୍ରଥମ କରି ସାଧାରଣ ମନୁଷ୍ୟର ଚିତ୍ରଣ, ଗଣ-ଜୀବନର କାହାଣୀ ସମ୍ମାନର ସହିତ ସାହିତ୍ୟକ୍ଷେତ୍ରରେ ଉପସ୍ଥାପିତ ହୋଇଥିବା ଦେଖିବାକୁ ପାଉ ।

ଏତଦ୍‌ବ୍ୟତୀତ ଫକୀରମୋହନଙ୍କ ବର୍ଣ୍ଣନା ଶୈଳୀ ମଧ୍ୟ ଅତୀବ ସରସ ଓ ଚିତ୍ତାକର୍ଷକ । ହାସ୍ୟରସ ଓ ବ୍ୟଙ୍ଗାତ୍ମକ ଚରିତ୍ର ଏବଂ ପରିବେଶ ଅଙ୍କନରେ ଫକୀରମୋହନ ଅପ୍ରତିଦ୍ୱନ୍ଦ୍ୱୀ । ଏଣୁ ଫକୀର-ମୋହନ ଓଡ଼ିଆ ଉପନ୍ୟାସକ୍ଷେତ୍ରରେ ନୂତନ ପରମ୍ପରାର ପ୍ରବର୍ତ୍ତକ ତଥା ଅପରାଜେୟ ସ୍ରଷ୍ଟାଭାବେ ଚିରସ୍ମରଣୀୟ ।

ଫକୀରମୋହନଙ୍କ ସମକାଳରେ 'ଖୀମା ଭୂୟାଁ' (ପ୍ରଥମ ପ୍ରକାଶ ୧୯୦୮) ନାମକ ଏକ କ୍ଷୁଦ୍ର ଉପନ୍ୟାସ ରଚନା କରି ଗୋପାଳବଲ୍ଲଭ ଦାସ ସ୍ମରଣୀୟ ହୋଇ ପାରିଅଛନ୍ତି । ଗୁଣଗତ ମହତ୍ତ୍ୱ ଅପେକ୍ଷା ଐତିହାସିକ ମହତ୍ତ୍ୱ ହିଁ ଏହି ଉପନ୍ୟାସଟିର ସ୍ମରଣୀୟତ୍ତ୍ୱ ପାଇଁ ଅଧିକ ଦାୟୀ । ବସ୍ତୁ ବସ୍ତୁ ରଚନାରୀତିଦୃଷ୍ଟିରୁ ଏହା ତତ୍ପୂର୍ବ-ବର୍ତ୍ତୀ ଓଡ଼ିଆ ଉପନ୍ୟାସଠାରୁ ଥିଲ ସ୍ୱତନ୍ତ୍ର ଓ ମୌଳିକ । ପ୍ରଥମ ଆଦିବାସୀ ଜୀବନ-ସମ୍ବଳିତ ଉପନ୍ୟାସରୂପେ ଏହାର ଗୁରୁତ୍ୱ ଅବଶ୍ୟ ସ୍ୱୀକାର୍ଯ୍ୟ ।

ଶିନାମାଳୀ ନାମକ ଏକ ଭୂୟାଁ ସରଦାରର କନ୍ୟାକୁ ଭୂୟାଁ ଯୁବକ ଖୀମା ଓ ତାର ବଡ଼ଭାଇ ବାଣା ଭଲ ପାଇଛନ୍ତି । ମାତ୍ର ବଡ଼ଭାଇ ସହିତ ଶିନାମାଳୀର ବିବାହ ହୋଇଯିବାରୁ ଭଗ୍ନମନୋରଥ ଖୀମା ନିଜ ରାଜ୍ୟର ରାଜା ଜଗଦେବଙ୍କୁ ଛାଡ଼ିଦେଇ ନିକଟବର୍ତ୍ତୀ ରାଜ୍ୟର ରାଜା ହରିଚନ୍ଦନଙ୍କ ନିକଟରେ ଆଶ୍ରୟ ଗ୍ରହଣ କରିଛି । ଦୈବବଶତଃ ଜଗଦେବ ଓ ହରିଚନ୍ଦନଙ୍କ ମଧ୍ୟରେ ଯୁଦ୍ଧ ହୋଇଛି ଓ ଜଗଦେବଙ୍କ ସୈନ୍ୟମାନଙ୍କ ମଧ୍ୟରୁ ଅନେକେ ହରିଚନ୍ଦନଙ୍କ ସୈନ୍ୟମାନଙ୍କଦ୍ୱାରା ବନ୍ଦୀ ହୋଇଛନ୍ତି । ସେମାନଙ୍କୁ ହତ୍ୟାକରିବାକୁ ରାଜା ନିର୍ଦ୍ଦେଶ ଦେଲେ । ମାତ୍ର ଖୀମା ସବିସ୍ମୟରେ ଦେଖିଲା ଯେଉଁମାନଙ୍କୁ ହତ୍ୟା କରିବାକୁ ସେ ଆଦିଷ୍ଟ ହୋଇଛି, ସେମାନଙ୍କ ମଧ୍ୟରେ ଅଛନ୍ତି ତାର ପିତା ଓ ଭାଇ । ଖୀମା କୌଶଳରେ ନିଜର ପିତା ଓ ଭାଇଙ୍କର ଜୀବନ ରକ୍ଷା କରିଛି । ଏହାପରେ ରାଜା ଦୁରାରୋଗ୍ୟ ରୋଗରେ ପୀଡ଼ିତ ହୋଇଛନ୍ତି ଓ ଖୀମା ଏବଂ ତାର ପିତାଙ୍କ ଯୋଗୁ ତାଙ୍କର ଜୀବନରକ୍ଷା ହୋଇଛି । ଇତ୍ୟବସରରେ ଖୀମା ଓ ରାଜଜେମାଙ୍କ ମଧ୍ୟରେ ଏକ ବିଚିତ୍ର ଆକର୍ଷଣର ସୂତ୍ରପାତ ହୋଇଛି । ଏହାପରେ

ସେମାନଙ୍କର ଅଦ୍ଭୁତ ଓ ଅସ୍ୱାଭାବିକ ହାବଭାବର ବର୍ଣ୍ଣନା କରି ଲେଖକ ହଠାତ୍ ଉପନ୍ୟାସର ଉପସଂହାର କରନ୍ତି । ଏହାର ବର୍ଣ୍ଣନାଗୁଡ଼ିକର କଷ୍ଟକଳ୍ପିତ ଅଳଙ୍କରଣ ଚେଷ୍ଟା, ଭାଷାରେ କୃତ୍ରିମତା ଓ ଚରିତ୍ରଚିତ୍ରଣରେ ମଧ୍ୟ ଲେଖକଙ୍କ ଅକ୍ଷମତା ପରିଦୃଷ୍ଟ ହୁଏ ।

## 'ମୁକୁର' ଓ 'ଆନନ୍ଦ ଲହରୀ'—

ଫକୀରମୋହନଙ୍କ ଉପନ୍ୟାସ ରଚନାଶୈଳୀ ସମସାମୟିକ ଲେଖକମାନଙ୍କୁ ପ୍ରଭାବିତ କରିଥିଲେ ହେଁ ଫକୀରମୋହନଙ୍କ ଦେହତ୍ୟାଗ ପରେ ଓଡ଼ିଆ କଥାସାହିତ୍ୟ ତଥା ଉପନ୍ୟାସକ୍ଷେତ୍ରରେ ଏକ ଶିଥିଳତା ସୃଷ୍ଟି ହୋଇଥିଲା । ଏହାର ଦୂରୀକରଣ ଲାଗି ଓ ଓଡ଼ିଆ ଉପନ୍ୟାସକୁ ଜନପ୍ରିୟ କରିବା ଲାଗି ସର୍ବାଦୌ 'ମୁକୁର' ପତ୍ରିକାର ସମ୍ପାଦକ ବ୍ରଜସୁନ୍ଦର ଦାସ ଉଦ୍ୟମ କରିଥିଲେ । ତାଙ୍କର ଏହି ପ୍ରଶଂସନୀୟ ଉଦ୍ୟମ ଫଳରେ ମାସିକ 'ମୁକୁର ଉପନ୍ୟାସ ଗ୍ରନ୍ଥମାଳା' ପ୍ରକାଶନର ବ୍ୟବସ୍ଥା ହୋଇଥିଲା । ଉପନ୍ୟାସକୁ ସୁଲଭ ମୂଲ୍ୟରେ ଗ୍ରାହକମାନଙ୍କୁ ୧୨ ମାସରେ ୧୨ ଖଣ୍ଡ ଯୋଗାଇ ଦେବାର ବ୍ୟବସ୍ଥା ହୋଇଥିଲା । ସେଥିପାଇଁ ଏହା 'କାଚ ମୂଲ୍ୟରେ କାଞ୍ଚନ ବିକ୍ରୟ' ନାମରେ ସେତେବେଳେ ମୁକୁର ପୃଷ୍ଠାରେ ବିଜ୍ଞାପିତ ହୋଇଥିଲା । ଏହି ଉପନ୍ୟାସ ଗ୍ରନ୍ଥମାଳାର ପ୍ରଥମ ଉପନ୍ୟାସ ହେଉଛି କୁନ୍ତଳାକୁମାରୀଙ୍କ ରଚିତ 'ଘରଣୀ'; ଗ୍ରନ୍ଥମାଳାର ଦ୍ୱିତୀୟ ଉପନ୍ୟାସ 'ବୁଲଫକୀର', ତୃତୀୟ 'ସଫଳ ସ୍ୱପ୍ନ', ଚତୁର୍ଥ 'ମାନଭଞ୍ଜନ', ପଞ୍ଚମ 'କାଳୀ ବୋହୂ' ଯଥାକ୍ରମେ ଚିନ୍ତାମଣି ମହାନ୍ତି, ଚିନ୍ତାମଣି ଆଚାର୍ଯ୍ୟ, ଦୟାନିଧି ମିଶ୍ର ଓ କୁନ୍ତଳାଙ୍କ ଦ୍ୱାରା ରଚିତ ହୋଇଥିଲା । ଅତ୍ୟଳ୍ପ କାଳ ମଧ୍ୟରେ ମୁକୁର ଉପନ୍ୟାସ

ଗ୍ରନ୍ଥମାଳାର ଗ୍ରାହକ ସଂଖ୍ୟା ଆଶାତିରିକ୍ତଭାବେ ବୃଦ୍ଧି ପାଉଥିବା ବିଷୟ ୫ମ ଉପନ୍ୟାସର ବିଜ୍ଞାପନରୁ ଜଣାଯାଏ । ୧୯୨୫ ପୂର୍ବରୁ ଏହି 'ମୁକୁର ଉପନ୍ୟାସମାଳା'ର ସୂତ୍ରପାତହୋଇ ପୂର୍ବୋକ୍ତ ଋତିଗୋଟି ଉପନ୍ୟାସ ପ୍ରକାଶିତ ହୋଇଥିଲା । ଏହାପରେ ଷଷ୍ଠ ଉପନ୍ୟାସ 'ପ୍ରମାଦ' (ଗୋବିନ୍ଦ ତ୍ରିପାଠୀ) ଓ 'ସ୍ୱରାଜ' (ହରେକୃଷ୍ଣ ମହାନ୍ତି) ପ୍ରକାଶ ପାଇ ବିଶେଷ ଆଦୃତ ହୋଇଥିଲା ।

ଏହାପରେ ସହକାରର ସଂପାଦକ ବାଳକୃଷ୍ଣ କରଙ୍କ ଉଦ୍ୟମରେ 'ଆନନ୍ଦ ଲହରୀ ଉପନ୍ୟାସ ମାଳା' ଓ ପୁସ୍ତକାକାରରେ ମାସିକ ଉପନ୍ୟାସ ପତ୍ରିକା 'ଭାରତୀ' ପ୍ରକାଶନର ସୂତ୍ରପାତ ହେଲା । (ସହକାର ୧୧ ଭାଗ ୩ୟ ସଂଖ୍ୟା—୧୩.୩୬ ସାଲ— ୧୯୨୯ ମସିହା) ଏହି ଉଦ୍ୟମ ଫଳରେ ଓଡ଼ିଶାର ବହୁ ଉଚାଙ୍ଗ ଉପନ୍ୟାସ ଯଥାସମୟରେ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା ଓ ଏହା ଲେଖକମାନଙ୍କୁ ଉପନ୍ୟାସ ରଚନା କରିବାରେ ଉତ୍ସାହିତ କରିବାସଙ୍ଗେ ସଙ୍ଗେ ପାଠକମାନଙ୍କ ମଧ୍ୟରେ ପ୍ରଚାର କରିବାରେ ସାହାଯ୍ୟ କରିଥିଲା । ସହକାର ୨୦ଶ ଭାଗ ୧୦ମ ସଂଖ୍ୟାରେ ଆନନ୍ଦଲହରୀ ଉପନ୍ୟାସ ମାଳାର ୨୭ ଖଣ୍ଡ ଉପନ୍ୟାସ ବିଜ୍ଞାପିତ ହୋଇଥିବା ଦେଖିବାକୁ ମିଳେ । ଏହାର ପ୍ରଥମ ପ୍ରକାଶିତ ଉପନ୍ୟାସ ବୀର ଯୁବକ 'ଯୌବନଯାତ୍ରୀ'ଙ୍କ ରଚନା । ଏହାପରେ ପଣ୍ଡିତାର ଆତ୍ମକଥା, ମାଟିର ମଣିଷ, ଜଗୁଆମା, ପ୍ରେମପଥେ ଯଥାକ୍ରମେ ଗୋବିନ୍ଦ ତ୍ରିପାଠୀ, କାଳନ୍ଦୀଚରଣ, ଚିନ୍ତାମଣି ମିଶ୍ର, ଗୋଦାବରୀଶ ମହାପାତ୍ରଙ୍କ ଦ୍ୱାରା ଲିଖିତ ହୋଇଥିଲା ।

ଏହି ଦୁଇଟି ସାଙ୍ଗଠନିକ ଓ ପ୍ରକାଶନ ବ୍ୟବସ୍ଥା ଯେ ଓଡ଼ିଆ ଉପନ୍ୟାସର ବିକାଶପକ୍ଷେ ଅନୁକୂଳ ହୋଇଥିଲା କହିବା ବାହୁଲ୍ୟ-ମାତ୍ର ।

# ଓଡ଼ିଆ ଉପନ୍ୟାସର ୨ୟ ପର୍ଯ୍ୟାୟ—(୧୯୧୮-୧୯୪୭)

ଫକୀରମୋହନଙ୍କ ପରବର୍ତ୍ତୀ ଔପନ୍ୟାସିକଭାବେ ଚନ୍ଦ୍ରମଣି ମହାନ୍ତି ଓ କୁନ୍ତଳାକୁମାରୀଙ୍କ ନାମ ଉଲ୍ଲେଖଯୋଗ୍ୟ । ଚନ୍ଦ୍ରମଣିଙ୍କ ପ୍ରଥମ ଉପନ୍ୟାସ ଯୁଗଳମଠ ୧୯୨୦ରେ ପ୍ରକାଶିତ । ଫକୀର-ମୋହନଙ୍କ ପରି ସେ ସାମାଜିକ ବିଷୟବସ୍ତୁକୁ ଅବଲମ୍ବନ କରି ଉପନ୍ୟାସ ରଚନା କରିଅଛନ୍ତି । 'ଟଙ୍କାଗଛ' ଉପନ୍ୟାସରେ ନିର୍ବୋଧ 'ମଧୁ'ର ଲୋଭ, ସ୍ଖଳନ ଓ ତାହାର ଅନିବାର୍ଯ୍ୟ ପରିଣତିସ୍ୱରୂପ ଅଧୋଗତିର ବର୍ଣ୍ଣନା ହୋଇଅଛି । ପ୍ରଚୁର ଟଙ୍କା ପାଇବା ଲୋଭରେ କପଟ 'ସୁକୁମାରୀ' ପରି ସୁଗୁଣବନ୍ତୀ ନୂଆବୋହୂଙ୍କ ମୁଣ୍ଡରୁ ରକ୍ତ ବାହାର କରି ସେ 'ସିଦ୍ଧବାବା' ରୂପୀ ଜନୈକ ଠକ, ଦସ୍ୟୁ ବ୍ୟବସାୟୀଙ୍କ ଦ୍ୱାରା ପ୍ରତାରିତ ହୋଇ ଶେଷରେ ଆସାମ 'ଚା' ବଗିଚାରେ ଦାସ ରୂପରେ ବିକ୍ରିତ ହୋଇଛି ତାହାହିଁ ଔପନ୍ୟାସିକ ବସ୍ତୁତଃଭାବେ ବର୍ଣ୍ଣନା କରିଅଛନ୍ତି ।

ନାୟକ ନିତ୍ୟାନନ୍ଦଙ୍କର ଦୁଇଟି ରୁପାଚୂଡ଼ି କପଟ ଅଭାବ ଦୁଃଖର ତାଡ଼ନାରେ ତାଙ୍କଦ୍ୱାରା ବିକ୍ରିତ ହୋଇ ନିଜର ପୁଅ ବାହାଘରବେଳେ ଯୌତୁକରୂପେ ପୁଣି ତାଙ୍କ ଘରକୁ ଫେରି ଆସିଛି ତାହାହିଁ 'ରୂପାଚୂଡ଼ି' ଉପନ୍ୟାସରେ ବର୍ଣ୍ଣିତ । ତ୍ରିବେଣୀ କଠୋର ପ୍ରତିଶୋଧ, ରକ୍ତଦାନ ପ୍ରଭୃତି ତିନିଗୋଟି ଉପନ୍ୟାସ ସମଷ୍ଟି । ଏହିପରି ତାଙ୍କର ବୁଲିଫକୀର, ଯୁଗଳ ମଠ, ଟଙ୍କାଗଛ ପ୍ରତ୍ୟେକଟି ଉପନ୍ୟାସ ମୁଖ୍ୟତଃ କଥାବସ୍ତୁପ୍ରଧାନ ଉପନ୍ୟାସ । ବିଭିନ୍ନ ପରିସ୍ଥିତିରେ ଚରିତ୍ରର ମାନସିକ କ୍ରିୟା-ପ୍ରତିକ୍ରିୟାର ବିଶ୍ଳେଷଣ ଲାଗି ଲେଖକ ବିଶେଷ ମନଯୋଗୀ ଥିଲାପରି ମନେହୁଏ ନାହିଁ ।

ଫକୀରମୋହନଙ୍କ ପରବର୍ତ୍ତୀ ଉପନ୍ୟାସ ରଚୟିତ୍ରୀଭାବେ କୁନ୍ତଳାକୁମାରୀ ସୁପ୍ରସିଦ୍ଧ ଓ ପ୍ରଥମ ଉପନ୍ୟାସ ଲେଖିକାଭାବେ ସ୍ମରଣୀୟା । ସେ ରଘୁଅରକ୍ଷିତ, ପରଶମଣି, ନଅଗୁଣ୍ଠି, କାଳୀ-ବୋହୂ, ଭ୍ରାନ୍ତ ପ୍ରଭୃତି ପାଞ୍ଚଗୋଟି ଉପନ୍ୟାସ ରଚନା କରିଯାଇ ଅଛନ୍ତି । ଚିନ୍ତାମଣିଙ୍କ ଉପନ୍ୟାସର ଚରିତ୍ରଅପେକ୍ଷା କୁନ୍ତଳାଙ୍କ ଉପନ୍ୟାସର ଚରିତ୍ର ବହୁ ଅଧିକ ବୈପ୍ଳବିକ, ପ୍ରଗତିଶୀଳ ଓ ସଂସ୍କାରକାମୀ ମନେ ହୁଅନ୍ତି । ବିଶେଷଭାବେ ନାରୀଚରିତ୍ର ଚିତ୍ରଣରେ ଲେଖିକା ଅଧିକ ପାରଦର୍ଶିତା ପ୍ରଦର୍ଶନ କରିଅଛନ୍ତି ଓ ବୈପ୍ଳବିକ ମନୋବୃତ୍ତିର ପରିଚୟ ପ୍ରଦାନ କରିଅଛନ୍ତି । 'ପରଶମଣି' ଉପନ୍ୟାସରେ ନାରୀଚରିତ୍ରର ମାଧୁର୍ଯ୍ୟ ପ୍ରକାଶନରେ ଲେଖିକାଙ୍କର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ନାୟିକା ଲକ୍ଷ୍ମୀର ମାଧୁର୍ଯ୍ୟରେ ଆସି କଠୋର ତାହାର ପାଷାଣ-ଚରିତ୍ର ସ୍ୱାମୀ ସୁଗୁଣସମ୍ପନ୍ନ ହୋଇ ପଡ଼ିଛି ତାହାହିଁ ଏହି ଉପନ୍ୟାସରେ ଚିତ୍ରିତ । ସେହିପରି ନଅଗୁଣ୍ଠି ଉପନ୍ୟାସରେ ଲେଖିକା ଓଡ଼ିଶାର ପଲ୍ଲୀଗ୍ରାମର ଏକ କଳହପ୍ରିୟା ନାରୀର ଚରିତ୍ରଚିତ୍ରଣରେ ଆପଣାର ଦକ୍ଷତା ପ୍ରଦର୍ଶନ କରିଅଛନ୍ତି ।

'କାଳିବୋହୂ' ଉପନ୍ୟାସରେ ଲେଖିକା ସଦ୍‌ଗୁଣବତୀ ବିଧବା 'ଲକ୍ଷ୍ମୀ' ଜୀବନର ଦୁଃଖ-ଦୁର୍ଦ୍ଦଶା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସଂସ୍କାରକ 'ଚନ୍ଦ୍ରୋଦୟ' ସଙ୍ଗେ ତାହାକୁ ପୁନର୍ବିବାହ କରାଇ ଦେଇଛନ୍ତି । 'ଭ୍ରାନ୍ତ' ଉପନ୍ୟାସଟି ସୁଖପାଠ୍ୟ ଓ କଥାବସ୍ତୁ ଦୃଷ୍ଟିରୁ ଅଧିକ ଚିତ୍ତାକର୍ଷକ । ଏହା ଏକ ପ୍ରଣୟପ୍ରଧାନ ଉପନ୍ୟାସ । ଜମିଦାର କନ୍ୟା ଶେଫାଳୀ ଓ ତାର ବାଲ୍ୟସଙ୍ଗୀ ଅନଙ୍ଗମୋହନଙ୍କର ପାରସ୍ପରିକ ଆକର୍ଷଣ, ଚନ୍ଦ୍ରକାନ୍ତକାରୀଙ୍କ ଦ୍ୱାରା ମାନସିକ ବିଭ୍ରାନ୍ତ ଓ

ପରିଶେଷରେ ଉଭୟଙ୍କର ପୁନର୍ମିଳନ ତଥା ଦେଶସେବାରେ ଏହି ଉପନ୍ୟାସଟି ପରିସମାପ୍ତ ।

'ରଘୁଅରକ୍ଷିତ' ଲେଖିକାଙ୍କର ସର୍ବବୃହତ୍ ଉପନ୍ୟାସ । ଏହା ସୁଖପାଠ୍ୟ ହେଲେହେଁ ଏହାର ପରିଣତି ଚେଷ୍ଟାକୃତ ଓ କଳ୍ପିତ ହେବାର ବର୍ଣ୍ଣନାଯୋଗ୍ୟ କୃତ୍ରିମ ମନେହୁଏ । ଉପନ୍ୟାସର ନାୟକ ସମ୍ବଳହୀନ ରଘୁନାଥ ଆପଣା ଉଦ୍ୟମରେ ବଡ଼ଲୋକ ଓ ପ୍ରତିଷ୍ଠାପନ୍ନ ହୋଇ ଧନୀକ କନ୍ୟା ସୀତାକୁ ଭଲ ପାଉଥିଲା । ଅବଶେଷରେ ବ୍ରାହ୍ମଧର୍ମାବଲମ୍ବୀ କୃଷ୍ଣବାବୁଙ୍କ ଗୁଣବତୀ ସୁଶିକ୍ଷିତା କନ୍ୟାକୁ ବିବାହ କରିଛି । ଏଥିରେ ଆଧୁନିକ ଜୀବନର ନାନା ଘାତ-ପ୍ରତିଘାତ ଓ ରଘୁ ଚରିତ୍ରରେ ଉଦ୍ୟମ ଓ ସଂଯମର ପରିପୂର୍ଣ୍ଣ ବିକାଶ ଦେଖିବାକୁ ମିଳିଅଛି ।

ଏହି ସମୟରେ ଐତିହାସିକ ବିଷୟକୁ ଭିତ୍ତିକରି ଓଡ଼ିଆରେ କେତେକ ଉପନ୍ୟାସ ରଚିତ ହୋଇଥିଲା । ସେମାନଙ୍କ ମଧ୍ୟରୁ ତାରିଣୀଚରଣ ରଥଙ୍କ 'ଅନ୍ନପୂର୍ଣ୍ଣା', ରାମଚନ୍ଦ୍ର ଆଚାର୍ଯ୍ୟଙ୍କ 'କମଳ-କୁମାରୀ', 'ବୀର ଓଡ଼ିଆ', 'ପୀୟୁଷ ପ୍ରବାହ' ମୁକୁନ୍ଦ ଦାସଙ୍କ ପ୍ରଣୀତ 'କଳାପାହାଡ଼', ଶ୍ରୀଧର ମହାପାତ୍ରଙ୍କ 'ରକ୍ତଗୋଲାପରେ ରକ୍ତସ୍ରୋତ' ପୁସ୍ତକଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ ।

ନନ୍ଦକିଶୋରଙ୍କ 'କନକଲତା' (୧୯୨୫), ବୈଷ୍ଣବଚରଣଙ୍କ 'ମନେମନେ' (୧୯୨୭) ଓ ଉପେନ୍ଦ୍ରପ୍ରସାଦଙ୍କ 'ମଲ୍ଲଜହ୍ନ' (ପ୍ରଃ ପ୍ର. ୧୯୨୮) ପ୍ରାୟ ସମକାଳରେ ଲିଖିତ ହୋଇଥିଲେହେଁ ବିଷୟବସ୍ତୁ, ରଚନାରୀତି, ଦୃଷ୍ଟିଭଙ୍ଗୀ ତଥା ଚରିତ୍ର ଦୃଷ୍ଟିରୁ ପ୍ରତ୍ୟେକେ ପରସ୍ପରଠାରୁ ଭିନ୍ନଧର୍ମୀ ଓ ଅନନ୍ୟ । ନନ୍ଦକିଶୋର ପଲ୍ଲୀପରିବେଶରେ ଦୁଇଟି ସମ୍ଭ୍ରାନ୍ତ ପରିବାରର ଚିତ୍ର ବର୍ଣ୍ଣନା

ମାଧ୍ୟମରେ ପ୍ରଣୟ ତଥା ପରିଣୟର ବର୍ଣ୍ଣନା କରିଥିଲେହେଁ ତାହା ସାମାଜିକତାର ଓ ନୀତିର ସୀମାଲଙ୍ଘନ ନକରି ସଂଯତ ଓ ଆଦର୍ଶପୂର୍ଣ୍ଣ ମହିମାମଣ୍ଡିତ ହୋଇଅଛି । ବିଧବାବିବାହ ପ୍ରବର୍ତ୍ତନର ସମୀଚୀନତା ମଧ୍ୟ ସଂସ୍କାରକାମୀ ଉଚ୍ଚଶିକ୍ଷାପ୍ରାପ୍ତ ରାଜେନ୍ଦ୍ରଚରିତ୍ର ମାଧ୍ୟମରେ ଲେଖକ ପ୍ରତିପାଦିତ କରିଅଛନ୍ତି । ଉଚ୍ଚଶିକ୍ଷିତ ଧନଞ୍ଜୟ ସୁଗୁଣବତୀ କନକଲତାକୁ ବିବାହକରି ନିଷ୍କାମ ନିଃସ୍ୱାର୍ଥପର ତ୍ୟାଗପୂତ ଜୀବନଯାପନ କରିଛି । କଥାବସ୍ତୁରେ ଚମତ୍କାରିତା, ଗତିଶୀଳତା ସମ୍ପାଦନରେ ମଧ୍ୟ ଲେଖକଙ୍କ ପ୍ରଯତ୍ନ ଏଥିରେ ସୁସ୍ପଷ୍ଟ ।

ମାତ୍ର ବୈଷ୍ଣବଚରଣଙ୍କ 'ମନେମନେ' ଉପନ୍ୟାସର କଥାବସ୍ତୁରେ କୌଣସି ବୈଚିତ୍ର୍ୟ ନାହିଁ । ଉପନ୍ୟାସବର୍ଣ୍ଣିତ ଚରିତ୍ରମାନଙ୍କର ବିଭିନ୍ନ ପରିସ୍ଥିତିରେ ମାନସିକ କ୍ରିୟା-ପ୍ରତିକ୍ରିୟାର ବର୍ଣ୍ଣନାହିଁ ଲେଖକଙ୍କର ଏହି ଉପନ୍ୟାସରେ ମୁଖ୍ୟ ଉଦ୍ଦେଶ୍ୟ । ସମ୍ଭବତଃ ଏହା ଓଡ଼ିଆ ସାହିତ୍ୟର ପ୍ରଥମ ମନସ୍ତାତ୍ତ୍ୱିକ ବିଶ୍ଳେଷଣାତ୍ମକ ଉପନ୍ୟାସ । ଏହାର କଥାବସ୍ତୁ ପୂରାପୂରି ପାରିବାରିକ । କନକ ଓ ନୀଳୁଙ୍କର ବାଲ୍ୟ-ଆସକ୍ତି ପରିଣୟରେ ପର୍ଯ୍ୟବସିତ ହୋଇ ପାରିନି । ପରନ୍ତୁ କନକ ନିଧିବାବୁଙ୍କୁ ବିବାହ କଲାପରେ କନକ ଓ ନୀଳୁଙ୍କର ସମ୍ପର୍କ ଗଭୀର ସ୍ନେହ-ମମତାରେ ସୀମିତ ହୋଇଛି । କନକ ନିଜର ଅବିବାହିତା ନଣନ୍ଦ ରଙ୍ଗୀ ସହ ନୀଳୁର ପରିଣୟ ଲାଗି ପ୍ରଯତ୍ନ କରିଛି । ମାତ୍ର ନୀଳୁ କନକକୁ ବିବାହ କରିବାକୁ ଅନିଚ୍ଛା ପ୍ରକାଶ କରିବା ଫଳରେ ନୀଳୁ, କନକ, ରଙ୍ଗି, ନିଧିବାବୁ ପ୍ରତ୍ୟେକଙ୍କ ମନରାଜ୍ୟରେ ନାନାପ୍ରକାର ଭ୍ରାନ୍ତି ଓ ଅନ୍ତର୍ଦ୍ୱନ୍ଦ୍ୱର ସୃଷ୍ଟି ହୋଇଛି । ନିଧି କନକକୁ ଭୁଲ ବୁଝିବାରୁ କନକର ଆତ୍ମସମ୍ମାନ ଆହତ ହୋଇଛି ଓ ସେ ଆତ୍ମହତ୍ୟା କରିଛି—ମାତ୍ର ରଙ୍ଗୀ ଓ

ମାଲୁକୁ ବିବାହ ଉଦ୍ଦେଶ୍ୟରେ ମିଳିତ କରାଇବା ପରେ ସେ ଚିରଦିନ ଲାଗି ଆଖି ବୁଜିଛନ୍ତି ।

ଏହି ସଂକ୍ଷିପ୍ତ କଥାବସ୍ତୁର ବର୍ଣ୍ଣନାରେ ତଥା ପ୍ରଣୟ ଓ ତଜ୍ଜନିତ ମୋହ, ଆସକ୍ତି ବର୍ଣ୍ଣନାରେ ଲେଖକଙ୍କ ସଂଯମ ପ୍ରଶଂସନୀୟ । ଅତ୍ୟାଧୁନିକ ଉପନ୍ୟାସସୁଲଭ ନଗ୍ନ ପ୍ରେମର ଉତ୍କଟ ଅଭିବ୍ୟକ୍ତି ଏଥିରେ ଆଦୌ ପରିଲକ୍ଷିତ ହୁଏ ନାହିଁ । ପରନ୍ତୁ ପାରିବାରିକ ସ୍ନେହ-ସ୍ନିଗ୍ଧ ମଧୁର ଜୀବନଚିତ୍ରରେ ଏହା ଚିତ୍ତାକର୍ଷକ ହୋଇ ପାରିଛି । ବିଶେଷତଃ ବଧୂଜୀବନରେ ଲଜ୍ଜା, ଦୁଃଖ, ଆସକ୍ତିର ସାର୍ଥକ ଚିତ୍ରଣଯୋଗୁ ଓଡ଼ିଆ ସାହିତ୍ୟର ଏହି ଉପନ୍ୟାସର ମହତ୍ତ୍ୱ ସ୍ୱୀକୃତ ।

'ମଲ୍ଲଜହ୍ନ' ଉପନ୍ୟାସ ସଖି (ସତ୍ୟଭାମା)ର କରୁଣ ଜୀବନର ଏକ ମର୍ମସ୍ପର୍ଶୀ ଅନୁଲିପି । ଏହି ଉପନ୍ୟାସରେ ମଧ୍ୟ ସଖି ଓ ଲୋକନାଥ (ନାଥନନା)ଙ୍କ ସୁମଧୁର ବାଲ୍ୟମମତା ଓ ସ୍ୱାଭାବିକ ଆକର୍ଷଣ, ସାମାଜିକ ପରିବେଶଯୋଗୁ ପରିଣୟରେ ସାର୍ଥକ ହୋଇ ପାରିନାହିଁ । ସଖି ବିବାହ କରିଛି ଏକ ଲମ୍ପଟ, ବୃଦ୍ଧ ନରହରିଙ୍କୁ । ନରହରି ସଖିକୁ ପରିତ୍ୟାଗ କଲା ପରେ ଆକସ୍ମିକ ଭାବେ ସଖିକୁ ଉଦ୍ଧାର କରି ଆଶ୍ରୟ ଦେଇଛନ୍ତି ଲୋକନାଥ । ମାତ୍ର ଉଭୟଙ୍କ ସମ୍ପର୍କ ଅକଳୁଷ, ସଂଯତ ହୋଇଥିଲେ ହେଁ ସେଥିପାଇଁ ନାଥ ଓ ସଖିଙ୍କୁ ଯେପରି ଲାଞ୍ଛିତ, ନିପୀଡ଼ିତ ଓ ନିଗୃହୀତ ହେବାକୁ ପଡ଼ିଛି ତାହା ସଖି ପକ୍ଷେ ଅସହନୀୟ ହୋଇଉଠିଛି । ନିର୍ଭୀକ, ଉଦାର 'ନାଥ' ସମାଜ ବିରୁଦ୍ଧରେ ବିଦ୍ରୋହ କରିଛି । ସଖିର ଆତ୍ମହତ୍ୟାରେ ଉପନ୍ୟାସର ପରିସମାପ୍ତି ହୋଇଛି । ସରଳ, ସ୍ୱାଭାବିକ ଭାଷା, ସରସ ବର୍ଣ୍ଣନାଭଙ୍ଗି, ଜୀବନ୍ତ ଚରିତ୍ର ଓ ପରିବେଶ ଚିତ୍ରଣ ଉପନ୍ୟାସଟିକୁ ସାର୍ଥକ ଶିଳ୍ପ ସୃଷ୍ଟିର ଗୌରବ ପ୍ରଦାନ କରିଅଛି ।

୧୯୨୪-୨୬ ମଧ୍ୟରେ ଲିଖିତ ଓ ୧୯୩୧ରେ ପୁସ୍ତକାକାରରେ ପ୍ରକାଶିତ 'ବାସନ୍ତୀ' ଓଡ଼ିଆ ଉପନ୍ୟାସ ସାହିତ୍ୟ କ୍ଷେତ୍ରରେ ଏକ ଅଭିନବ ପରୀକ୍ଷା । ଅନ୍ନଦାଶଙ୍କର, କାଳିନ୍ଦୀଚରଣ, ସରଳା ଦେବୀ, ଶରଚ୍ଚନ୍ଦ୍ର, ମୁରଲୀଧର ମହାନ୍ତି, ସୁପ୍ରଭା, ପ୍ରତିଭା, ହରିହର ମହାପାତ୍ର, ବୈଷ୍ଣବଚରଣ ଦାସ ପ୍ରଭୃତି ୯ଜଣ ଲେଖକ-ଲେଖିକାଙ୍କ ସହଯୋଗ ଓ ମିଳିତ ଉଦ୍ୟମରେ ଏହି ଉପନ୍ୟାସଟି ରଚିତ । ସ୍ୱାଧୀନତା ପୂର୍ବବର୍ତ୍ତୀ ସମୟ ମଧ୍ୟରେ ନାରୀଶିକ୍ଷାର ପ୍ରଚଳନ ହୋଇଥିଲେହେଁ ଶିକ୍ଷିତା ନାରୀମାନଙ୍କର ସାମାଜିକ ସମ୍ମାନ ସ୍ୱୀକୃତିଲାଭ କରି ନ ଥିଲା । 'ବାସନ୍ତୀ' ଉପନ୍ୟାସରେ, ବାସନ୍ତୀ ଜୀବନରେ ଆମେ ତାହାର ପ୍ରଥମ ପରିଚୟ ଲାଭ କରୁ । ଶିକ୍ଷିତା ବାସନ୍ତୀକୁ ବଧୂ-ରୂପେ ଗ୍ରହଣ କରିବାକୁ ଯୁବକ ଦେବବ୍ରତଙ୍କ ମାତା ଅସ୍ୱୀକୃତା ହୋଇଛନ୍ତି । ସମାଜ ତଥା ନିଜ ମାତାଙ୍କ ଇଚ୍ଛା ବିରୁଦ୍ଧରେ ସମାଜ ସଂସ୍କାର ପ୍ରତ୍ୟାଶୀ ଦେବବ୍ରତ ବାସନ୍ତୀକୁ ବିବାହ କରିଛି । ବାସନ୍ତୀ-ଦେବବ୍ରତ ସାମାଜିକ କୁସଂସ୍କାର ରକ୍ଷଣଶୀଳତା ବିରୁଦ୍ଧରେ ଯଥା-ସାମାନ୍ୟ ଉଦ୍ୟମ କରିଛନ୍ତି । ମାତ୍ର ଏହାପରେ ଉପନ୍ୟାସର ଗତି ଭିନ୍ନ ଦିଗାଭିମୁଖୀ ହୋଇଅଛି । ବାସନ୍ତୀ ଓ ଦେବବ୍ରତଙ୍କର ବୈବାହିକ ଜୀବନର ଭ୍ରାନ୍ତି, ମାନସିକ ଦ୍ୱନ୍ଦ୍ୱ ଓ ବାସନ୍ତୀର ପଳାୟନ ଓ ପରେ ଅନୁତପ୍ତ ଦେବବ୍ରତ ସହ ତାର ପୁନର୍ମିଳନ ପ୍ରଭୃତି ପ୍ରଣୟ ଜୀବନର ଚିତ୍ରଣରେ ଏହା ପରିସମାପ୍ତ । ତଥାପି ଏଇ ଉପନ୍ୟାସରୁ ଲେଖକମାନଙ୍କ ସମାଜ ସଂସ୍କାର ମନୋବୃତ୍ତିର ପରିଚୟ ମିଳିଥାଏ ।

ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଫକୀରମୋହନଙ୍କ ଲେଖନୀ ନିଶ୍ଚଳ ହେବା ପରଠାରୁ ଦ୍ୱିତୀୟ ମହାସମର ବା ଭାରତର ସ୍ୱାଧୀନତାଲାଭ ପର୍ଯ୍ୟନ୍ତ ସମୟ ମଧ୍ୟରେ ବହୁ ଔପନ୍ୟାସିକଙ୍କ

ରଚନା ଦ୍ୱାରା ଓଡ଼ିଆ ଉପନ୍ୟାସ ସାହିତ୍ୟ ସମୃଦ୍ଧ ହୋଇଅଛି । ସେମାନଙ୍କ ମଧ୍ୟରୁ ପୂର୍ବୋଲ୍ଲେଖିତ ଉପନ୍ୟାସ ରଚୟିତାମାନଙ୍କ ବ୍ୟତୀତ କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, କାଳିନ୍ଦୀଚରଣ, ଗୋଦାବରୀଶ ମହାପାତ୍ର, ରାଜକିଶୋର ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ହରେକୃଷ୍ଣ ମହତାବ, କମଳାକାନ୍ତ ଦାସ, ରାମପ୍ରସାଦ ସିଂହ, ଚନ୍ଦ୍ରଧର ମହାପାତ୍ର, ଦିଗମ୍ବର ଭୂୟାଁ, ଲକ୍ଷ୍ମୀଧର ନାୟକ, ଚନ୍ଦ୍ରମଣି ଦାସ ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ । ଏହିସବୁ ଲେଖକମାନଙ୍କ ମଧ୍ୟରୁ ଅନେକେ ଯୁଦ୍ଧୋତ୍ତର ତଥା ସ୍ୱାଧୀନତା ପରବର୍ତ୍ତୀ କାଳରେ ମଧ୍ୟ ବହୁ ଉପନ୍ୟାସ ରଚନା କରି ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଅଧିକତର ଯଶ ଓ ପ୍ରତିଷ୍ଠାର ଅଧିକାରୀ ହୋଇଛନ୍ତି । କେତେକ ମଧ୍ୟ ଉପନ୍ୟାସ ରଚନାକ୍ଷେତ୍ରରୁ ବିଦାୟ ବା ଅବ୍ୟାହତି ନେଇଅଛନ୍ତି ।

ବିଦେଶୀ ଉପନ୍ୟାସକୁ ଭିତ୍ତିକରି ତାହାର କଥାବସ୍ତୁକୁ ଉତ୍କଳୀୟ ପରିବେଶରେ ରୂପାୟିତ କରିବାରେ ଗୋଦାବରୀଶ ମିଶ୍ର ଏବଂ ଗୋଦାବରୀଶ ମହାପାତ୍ରଙ୍କର ନାମ ଅଗ୍ରଗଣ୍ୟ । ଗୋଦାବରୀଶ ମିଶ୍ରଙ୍କର ଅଭାଗିନୀ, ୧୮୧୭ ଖ୍ରୀଷ୍ଟାବ୍ଦର ଯଥାକ୍ରମେ ଭିକ୍ଟର ହ୍ୟୁଗୋଙ୍କର 'ଲ ମିଜାରେବ୍ଲ' ଡିକେନ୍ସଙ୍କର 'ଏ ଟେଲ୍ ଅଫ୍ ଟୁ ସିଟିଜ୍' ଷ୍ଟିଭେନ୍ସନଙ୍କ 'ଡକ୍ଟର ଜେକଲ ଏଣ୍ଡ ମିଷ୍ଟର ହାଇଡ୍' ପୁସ୍ତକଗୁଡ଼ିକର ଅବଲମ୍ବନରେ ଲିଖିତ । ଓଡ଼ିଶାର ପାଇକ ବିଦ୍ରୋହ ତଥା ଦୁର୍ଭିକ୍ଷକୁ ଭିତ୍ତିକରି ଲେଖକଙ୍କ ୧୮୧୭ ଉପନ୍ୟାସ ଓ କଙ୍କାଳର ଆର୍ତ୍ତନାଦ ରଚନା ଦୁଇଟି ଯଥାକ୍ରମେ ରଚିତ ।

ଗୋଦାବରୀଶ ମହାପାତ୍ର ମେରି କରେଲିଙ୍କ 'ଭେଣ୍ଡେଟା' ଉପନ୍ୟାସ ଅବଲମ୍ବନରେ 'ରକ୍ତପାତ' ରଚନା କରିଛନ୍ତି । ତାଙ୍କର

ଅନ୍ୟତମ ଉପନ୍ୟାସ 'ରାଜଦ୍ରୋହୀ', ମୋଗଲ ଶାସନକାଳୀନ ଓଡ଼ିଶାର ଐତିହାସିକ ପୃଷ୍ଠଭୂମିକାରେ ରଚିତ । ଜଳଦସ୍ୟୁଙ୍କଦ୍ୱାରା ଧୃତ ଓ ନିର୍ବାସିତ ରାଜପୁତ୍ର କିପରି ପୁନଶ୍ଚ ସିଂହାସନାଧିରୂଢ଼ ହୋଇ ପାରିଥିଲେ ତାହାହିଁ ଏଥିରେ ବର୍ଣ୍ଣିତ ହୋଇଅଛି । ମାତ୍ର ଉପନ୍ୟାସ ଅପେକ୍ଷା କ୍ଷୁଦ୍ର ଗଳ୍ପ ରଚନାରେ ଲେଖକଙ୍କ ଅଧିକ କୃତିତ୍ୱର ପରିଚୟ ମିଳିଥାଏ ।

## କାହ୍ନୁଚରଣ ଓ ଗୋପୀନାଥ—

କାହ୍ନୁଚରଣ ଆଧୁନିକ ଓଡ଼ିଆ ଉପନ୍ୟାସ ରଚୟିତାମାନଙ୍କ ମଧ୍ୟରେ ରଚନାର ପରିମାଣ ଓ ଜନପ୍ରିୟତା ଦୃଷ୍ଟିରୁ ଅପ୍ରତିଦ୍ୱନ୍ଦ୍ୱୀ । ୧୯୨୭ରୁ ଲେଖକ ମୁଖ୍ୟତଃ ଉପନ୍ୟାସ ରଚନାରେ ଆତ୍ମନିୟୋଗ କରି ଓଡ଼ିଆ ଉପନ୍ୟାସକୁ ସମୃଦ୍ଧ କରିଅଛନ୍ତି । ଏବେ ମଧ୍ୟ ବିଭିନ୍ନ ବିଷୟକୁ ଅବଲମ୍ବନ କରି ନୂତନ ଉପନ୍ୟାସସମୂହ ରଚନା କରୁଛନ୍ତି ଓ ତନ୍ମଧ୍ୟରେ ଲେଖକ ବିଭିନ୍ନ ପରୀକ୍ଷା ଓ ପ୍ରୟୋଗ କରିଚାଲିଛନ୍ତି । ଏଣୁ ଲେଖକଙ୍କ ରଚନାବଳୀ ସମ୍ପର୍କରେ ମତ ପ୍ରଦାନ କରିବା ସମ୍ଭବ ନୁହେଁ । ଲେଖକଙ୍କର 'କା' ଉପନ୍ୟାସ ରାଷ୍ଟ୍ରପତି ପୁରସ୍କାର ଲାଭକରିଅଛି । ଲେଖକଙ୍କ ସାଧନା ଓ ନିଷ୍ଠା ଯେ ଅସାଧାରଣ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ତାଙ୍କର ଉପନ୍ୟାସ ଓଡ଼ିଆ ସାହିତ୍ୟର ପାଠକଗୋଷ୍ଠୀକୁ ସୁପ୍ରସାରିତ କରିଛି; ସାହିତ୍ୟ-ପାଠ ପ୍ରତି ବୀତସ୍ପୃହ ଓଡ଼ିଆଙ୍କମାନଙ୍କ ମଧ୍ୟରେ ପଠନସ୍ପୃହାର ବିକାଶସାଧନ କରିଛି ।

ତଥାପି ଏଠାରେ ଲେଖକଙ୍କ ସମସ୍ତ ଉପନ୍ୟାସ ସମ୍ପର୍କରେ କେତେକ ସାଧାରଣ ଅଭିମତ ଉଲ୍ଲେଖ କରାଯାଇ ପାରେ ।

ତାହାଙ୍କର ସମସ୍ତ ଉପନ୍ୟାସର ଭାଷା ସରଳ, ଆବେଗରେ ଆର୍ଦ୍ର ଓ ଅନେକ କୋମଳ । ଆଙ୍ଗିକ ବା ବର୍ଣ୍ଣନା ରୀତିରେ ଲେଖକ ସଫଳତାର ସହ ବିଭିନ୍ନ ପରୀକ୍ଷା କରିଛନ୍ତି । ଆତ୍ମକଥା ଛଳରେ 'ଜଳ ଦାଇବାର ଶେଷକଥା', 'ଭୁଣ୍ଡି ବା'ଇଦ' ଉପନ୍ୟାସ ରଚନା କରିବାରେ ଲେଖକ ଯେପରି ସଫଳକାମ, ବ୍ୟାଖ୍ୟାନ ଓ ବର୍ଣ୍ଣନା ମାଧ୍ୟମରେ ମଧ୍ୟ ସେ ସେହିପରି ସଫଳତା ଲଭ କରିଅଛନ୍ତି । ପରିବେଶ ଚିତ୍ରଣରେ ମଧ୍ୟ ଲେଖକଙ୍କର ବ୍ୟାପକତାର ପରିଚୟ ମିଳିଥାଏ । ତାଙ୍କର ଅଧିକ ସଂଖ୍ୟକ ଉପନ୍ୟାସ ମୁଖ୍ୟତଃ ଗ୍ରାମ୍ୟ ପରିବେଶରେ ଚିତ୍ରିତ । ମାତ୍ର 'ଝଞ୍ଜା', 'ମିଳନର ଛନ୍ଦ'ରେ ଆମେ ନାଗରିକ ଜୀବନ ଓ ପରିବେଶର ଚିତ୍ର ଦେଖିବାକୁ ପାଇଥାଉ । ସେହିପରି ଆଞ୍ଚଳିକତା ଚିତ୍ରଣରେ ମଧ୍ୟ ଲେଖକଙ୍କ କୃତିତ୍ୱର ପରିଚୟ ମିଳେ । କୁଜଙ୍ଗର ଆଞ୍ଚଳିକ ପରିବେଶରେ 'ଏପାରି ସେପାରି' ଓ ସାଗର ସୈକତ ଏବଂ ସାମୁଦ୍ରିକ ପରିବେଶରେ 'ବାଲିରାଜା' ଉପନ୍ୟାସ ଲିଖିତ । ଏହାଛଡ଼ା ଦୁର୍ଭିକ୍ଷର ପରିବେଶ 'ହା ଅନ୍ନ', 'ଶାସ୍ତି' ଉପନ୍ୟାସରେ ଓ ପରିକଳ୍ପିତ ଗ୍ରାମସଙ୍ଗଠନର ଚିତ୍ର 'ବଜ୍ରବାହୁ'ରେ ଚିତ୍ରିତ । ମାତ୍ର ତାହାଙ୍କ ଉପନ୍ୟାସରେ ଓଡ଼ିଶାର ବହିର୍ଜଗତ ବା ଅଜ୍ଞାତ, ଅପରିଚିତ ସ୍ଥାନର ବର୍ଣ୍ଣନା ପରିଦୃଷ୍ଟ ହୁଏନାହିଁ ।

ତାହାଙ୍କର ଅଧିକାଂଶ ଉପନ୍ୟାସ ପ୍ରଣୟ-ପ୍ରଧାନ । ବିଧବା ନାରୀ ଜୀବନରେ ପ୍ରେମର ପରିଣାମ, ଚିତ୍ତ-ସଂଘର୍ଷ ଲେଖକ ବହୁ ଉପନ୍ୟାସରେ ଚିତ୍ରଣ କରିଛନ୍ତି । ଭୁଣ୍ଡିବାଇଦ, ଶାସ୍ତି, ଅଭିନେତ୍ରୀ, ନିଷ୍ପତ୍ତି, ପଳାତକ ପ୍ରଭୃତି ଉପନ୍ୟାସରୁ ତାହାର ପରିଚୟ ମିଳି-ଥାଏ । ବାଳବିଧବା'ର କରୁଣ ଜୀବନ-କାହାଣୀ, ନିଷ୍ଠୁର ହୃଦୟ-ହୀନ ସମାଜର ଅବିଚାର ଓ ସମାଜସଂସ୍କାରକଙ୍କ ଦ୍ୱାରା ତାହାର

କପଟ ନିଷ୍ପତ୍ତି ହୋଇଛି ଲେଖକ ତାହାଙ୍କ 'ନିଷ୍ପତ୍ତି' ଉପନ୍ୟାସରେ ବର୍ଣ୍ଣନା କରି ଅଛନ୍ତି । ବିଧବା କୋକିଳ ଦେଈ କପଟ ପୁରୋହିତର ପ୍ରଭାବରେ ଯାଇ କଲିକତାର ଏକ ବେଶ୍ୟା ଗୃହରେ ଆଶ୍ରୟ ନେଇଛନ୍ତି ତାହା 'ଚୋରକ'ର କଥାବସ୍ତୁ । ବିଧବା ଧୋବି ଓ ସନେଇର ପ୍ରଣୟକୁ ଭିତ୍ତିକରି ଲେଖକଙ୍କ 'ଶାନ୍ତି' ଉପନ୍ୟାସ ପରିକଳ୍ପିତ । ବିଧବା ତୁଳସୀର ଦ୍ୱିତୀୟ ବିବାହଜନିତ ସମସ୍ୟା ଓ ସେ କପଟୀ ବନ୍ଧୁ ବ୍ୟକ୍ତିଙ୍କର ଲାଳସାର ପାତ୍ର ହୋଇଛି ତାହା 'ତୁଣ୍ଡବାଇଦ' ଉପନ୍ୟାସରେ ବର୍ଣ୍ଣିତ ।

ଲେଖକଙ୍କ 'ବାଲିରାଜା' (୧୯୨୭-୩୦) ଏକ କାଳ୍ପନିକ ଓ ଘଟଣାପ୍ରଧାନ ଉପନ୍ୟାସ । ଜଳଦସ୍ୟୁ ଦମନପୂର୍ବକ ଜନୈକ ସାହସୀ ଓଡ଼ିଆ ଯୁବକ କିପରି ବାଲିଦ୍ୱୀପର ଅଧୀଶ୍ୱର ହୋଇ ପାରିଥିଲେ ତାହାର ରୋମାଞ୍ଚକର କାହାଣୀ ଏହି ଉପନ୍ୟାସର ଉପଜୀବ୍ୟ ବିଷୟ । 'ସ୍ୱପ୍ନ ନା ସତ୍ୟ' ଢେଙ୍କାନାଳର ଅତ୍ୟାଚାରକୁ କେନ୍ଦ୍ରକରି ରଚିତ ହୋଇଥିବା ଶୁଣାଯାଏ । ନାରୀଜୀବନର କରୁଣ ଇତିବୃତ୍ତ ଅଙ୍କନରେ ଲେଖକ ଆପଣା କୃତିତ୍ୱର ପରିଚୟ ଦେଇଅଛନ୍ତି । 'ଭଲ ପାଇବାର ଶେଷକଥା' ଉପନ୍ୟାସଟି ଆତ୍ମକଥା ଓ ଅନୁଭୂତିର ବର୍ଣ୍ଣନା କ୍ରମରେ ରଚିତ । ବାଉରି ଘରର ଝିଅ ଫୁଲ ଓ ବ୍ରାହ୍ମଣ ଯୁବକ ଗୁଣନନା ପରସ୍ପରର ପ୍ରତି ଆକୃଷ୍ଟ ହୋଇଛନ୍ତି । ଗୁଣ ଇଚ୍ଛା ବିରୁଦ୍ଧରେ ବିବାହ କରିଛି ସରଳ ବିଶ୍ୱାସୀ ବୀଣାକୁ । ଧୈର୍ଯ୍ୟଶୀଳା ବୀଣା ସ୍ୱାମୀର ସମସ୍ତ ଉପେକ୍ଷା ହତାଦର ସହ୍ୟ କରିଛି । ଫୁଲ ବୀଣା ଚରିତ୍ରର ମହତ୍ତ୍ୱ ବୁଝିପାରି ଗୁଣନନାଙ୍କ ପ୍ରଣୟାସକ୍ତିକୁ ପରିତ୍ୟାଗ କରି ନିଜର ଇଚ୍ଛା ବିରୁଦ୍ଧରେ ଅନ୍ୟ ଗ୍ରାମର ଏକ ସ୍ୱଜାତୀୟ ଯୁବକକୁ ବିବାହ କରିଛି । ଅନ୍ୟ କୌଣସି ଘଟଣା ବା ଚରିତ୍ରର ବର୍ଣ୍ଣନା

ଏହାର କଥାବସ୍ତୁରେ କୌଣସି ଜଟିଳତା ସୃଷ୍ଟି କରି ନଥିବା ହେତୁ ଏହାକୁ ଏକ ବଡ଼ ଗଳ୍ପ କୁହାଯାଇ ପାରେ ।

'ଏମାର ସେପାରି' ଏକ କ୍ଷୁଦ୍ର ଉପନ୍ୟାସ ହେଲେହେଁ ଚରିତ୍ରଚିତ୍ରଣ ଓ ରସସୃଷ୍ଟି ଦୃଷ୍ଟିରୁ ଏହା ସାର୍ଥକ ଓ ରସୋତ୍ତୀର୍ଣ୍ଣ । ସ୍ୱାମୀ ଉପେକ୍ଷିତା ଏବଂ ଶ୍ୱଶୁର ଓ ଭାଉବୋହୂଙ୍କ ଦ୍ୱାରା ଉପେକ୍ଷିତା ବିକଳାଙ୍ଗ, ଟେଣ୍ଟନି ପେଟର କରୁଣ ଜୀବନ-ବୃତ୍ତାନ୍ତ ଏଥିରେ ଲେଖକ ଚିତ୍ତାକର୍ଷକଭାବେ ବର୍ଣ୍ଣନା କରିଅଛନ୍ତି ।

ଅଜ୍ଞାତକୁଳଶୀଳା, ପିତୃମାତୃ ପରିଚୟହୀନା 'ପରି' ଏକ ସମ୍ଭ୍ରାନ୍ତ ପରିବାରରେ ଆଶ୍ରିତା, ପ୍ରତିପାଳିତା ହେଲେହେଁ ସେଠାରେ ସେ ସମ୍ମାନିତା, ଆଦୃତା ହୋଇଛି; ତାର ନାରୀତ୍ୱ ସ୍ୱୀକୃତି ଲାଭ କରିଛି । ଏହାର ମଧ୍ୟରେ ତାହା ଜୀବନର ନିର୍ଯାତନା, ସଂଯମ, ସେବା-ପରାୟଣତା, ମାର୍ଜିତ ରୁଚି, ସଂସ୍କାର ଲିପ୍ସା, ସହନଶୀଳତାକୁ ଲେଖକ ସୁନ୍ଦରଭାବେ 'ପରି' ଉପନ୍ୟାସରେ ବର୍ଣ୍ଣନା କରି-ଅଛନ୍ତି ।

ଜମିଦାର କନ୍ୟା ଓ ଉଚ୍ଚଶିକ୍ଷିତ ତୁଷାରକାନ୍ତଙ୍କ ସ୍ତ୍ରୀ କ୍ଷଣପ୍ରଭାର ଅସହାୟତା ଏବଂ ଲାଳସାର ଝଂଜା ସହି ନପାରି କ୍ଷଣପ୍ରଭା କଠୋର ପିତାଳୟକୁ ପ୍ରତ୍ୟାବର୍ତ୍ତନ କରିଛି ତାହାହିଁ 'ଝଂଜା' ଉପନ୍ୟାସର ବର୍ଣ୍ଣିତ ବିଷୟ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଲେଖକଙ୍କ ରଚନାବଳୀର ବିଷୟବସ୍ତୁ ନିର୍ବାଚନ କ୍ଷେତ୍ରରେ ପରିବର୍ତ୍ତନର ସୂଚନା ମିଳେ । 'ମିଳନର ଛନ୍ଦ', 'ବଜ୍ରବାହୁ' ପ୍ରଭୃତି ତାହାର ନିଦର୍ଶନ । ଲେଖକ ଗାନ୍ଧିର ସ୍ୱପ୍ନ ମାଧ୍ୟମରେ ଓ ପ୍ରତିନିଧି ସ୍ଥାନୀୟ ଚରିତ୍ରମାନଙ୍କ

ସାହାଯ୍ୟରେ ପ୍ରାଗୈତିହାସ ଯୁଗରୁ ମାନବସମାଜର ବିକାଶଧାରା ଚିତ୍ରଣ କରିବା ଉଦ୍ଦେଶ୍ୟରେ 'ଶବରୀ' ଉପନ୍ୟାସଟି ପରିକଳ୍ପନା କରିଛନ୍ତି । 'ମିଳନର ଛନ୍ଦ' ଉପନ୍ୟାସରେ ଲେଖକ ଏକ ଉଚ୍ଚ ଶିକ୍ଷିତା ନାରୀର ଚରିତ୍ରଚିତ୍ରଣ କରିଅଛନ୍ତି । ରୂପବତୀ, ଉଚ୍ଚଶିକ୍ଷିତା ଅଧ୍ୟାପିକା ରଶ୍ମି ବିବାହ ପ୍ରତି ବିମୁଖତା ପ୍ରଦର୍ଶନ କରିଥିଲେହେଁ ପରିଶେଷରେ ସେ ତାର ଏକଦା ସହପାଠୀ ବନ୍ଧୁ ଅଧ୍ୟାପକ ବୀରେନ୍ଦ୍ରଙ୍କୁ ବିବାହ କରିଛି । ଏକ ବିଚିତ୍ର ଆଦର୍ଶ—'ସ୍ୱାମୀ ସ୍ତ୍ରୀର ଅଥ କେବଳ ବନ୍ଧୁଭାବରେ ଆବଦ୍ଧ ରହିବ ପରସ୍ପର ସ୍ନେହ ସହାନୁଭୂତି । ସନ୍ତାନ କାମନା ନଥିବ ସେ ବିବାହରେ । ମାଟିର ଦେହର ମିଳନକୁ ତୁଚ୍ଛ କରି ମନର ମିଳନକୁ ଆଦର୍ଶ କରିବା' (ପୃ ୧୪୬) ଉଭୟଙ୍କୁ ଅନୁପ୍ରାଣିତ କରିଛି । ମାତ୍ର ବିବାହ କରି ବର୍ଷକ ପରେ ରଶ୍ମି ହୋଇଛି ସନ୍ତାନର ଜନନୀ । ଡାକ୍ତର ଫିରୋଜ ଓ ଜେବ୍ ଉନ୍‌ନିସାଙ୍କୁ ଲେଖକ ଏଥିରେ ଆଦର୍ଶ ଦମ୍ପତି ଓ ସମାଜ ସେବକ-ରୂପେ ଚିତ୍ରଣ କରିଛନ୍ତି ।

ସ୍ୱାଧୀନତା ପରବର୍ତ୍ତୀ ଜମିଦାରୀ ଓ ରାଜତନ୍ତ୍ରର ବିଲୋପ ପରେ ନୂତନ ଗଠନମୂଳକ ଯୋଜନା ଓ ନୂତନ ପରିସ୍ଥିତିର ପ୍ରତିକ୍ରିୟା ଫଳରେ ସମାଜରେ ଯେଉଁ ପରିବର୍ତ୍ତନ ହୋଇଛି ତାହାର ଏକ ପରିକଳ୍ପିତ ଓ ଆଦର୍ଶରୂପ ଚିତ୍ରଣ କରିବା ଲାଗି ଲେଖକ 'ବଜ୍ରବାହୁ' ଉପନ୍ୟାସରେ ଉଦ୍ୟମ କରିଅଛନ୍ତି । ମାତ୍ର କପୋଳ-କଳ୍ପିତ, ଅବାସ୍ତବ ପରିବେଶ ଓ ଚରିତ୍ରଚିତ୍ରଣ ଯୋଗୁ ଲେଖକଙ୍କର ଏହି ଉଦ୍ୟମ ସାର୍ଥକ ହୋଇପାରିନାହିଁ ।

ଲେଖକଙ୍କର ସମସ୍ତ ସୃଜନ ପ୍ରଚେଷ୍ଟାକୁ ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ତାହାଙ୍କ ଉପନ୍ୟାସରେ

ଚରିତ୍ର ସୃଷ୍ଟି କ୍ଷେତ୍ରରେ ବୈଚିତ୍ର୍ୟର ଅଭାବ ପରିଦୃଷ୍ଟ ହୁଏ । ତାଙ୍କର ପ୍ରେମ-ପ୍ରଧାନ ଅଧିକାଂଶ ଉପନ୍ୟାସର ନାରୀ ଚରିତ୍ରଗୁଡ଼ିକ ଏକାଭଳି (type) ପ୍ରତିରୂପମାନ ହୋଇଅଛନ୍ତି । ମଧ୍ୟବିତ୍ତର ବିଭିନ୍ନ ସମସ୍ୟା, ଆରଣ୍ୟକ ଜନପଦବାସୀ, କୃଷିଜୀବୀ ଓ ଶ୍ରମଜୀବୀର ବାସ୍ତବ ଜୀବନ୍ତ ଆଲେଖ୍ୟ ତାହାଙ୍କ ଉପନ୍ୟାସରେ ବିରଳ । ଦୁଷ୍ଟ, ଦୁର୍ବୃତ୍ତ ଚରିତ୍ର-ଚିତ୍ରଣରେ ଲେଖକଙ୍କ ଅକ୍ଷମତା ଦେଖିବାକୁ ମିଳେ । ତାହାଙ୍କ ଉପନ୍ୟାସ ଅଧିକ ପରିମାଣରେ ଭାବପ୍ରବଣତାରେ ଆର୍ଦ୍ର । ବ୍ୟଙ୍ଗ, ବିଦ୍ରୂପ ବା ହାସ୍ୟରସର ଅଭାବ ମଧ୍ୟ ତାହାଙ୍କ ଉପନ୍ୟାସରୁ ଅନୁଭୂତ ହୋଇଥାଏ ।

ଏହି ଦୃଷ୍ଟିରୁ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସଗୁଡ଼ିକ ଅଧିକ ରସୋତ୍ତୀର୍ଣ୍ଣ ଓ ଶିଳ୍ପସୃଷ୍ଟି ଦୃଷ୍ଟିରୁ ସାର୍ଥକ ହୋଇପାରିଛି । ବିଶେଷତଃ ଆଦିବାସୀ ଜୀବନର ଚିତ୍ର ଅଙ୍କନକରିବାରେ ଗୋପୀନାଥ ସ୍ୱାଧୀନୋତ୍ତର ଉପନ୍ୟାସ କ୍ଷେତ୍ରରେ ଜଣେ ଅଗ୍ରଣୀ କଳାକାର । ତାହାଙ୍କ 'ଅମୃତର ସନ୍ତାନ' ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରି ଓଡ଼ିଆ ସାହିତ୍ୟ ତଥା ଲେଖକଙ୍କୁ ଗୌରବାନ୍ୱିତ କରିଅଛି । ସାଧାରଣ ଗଳ୍ପମୋଦୀ ପାଠକମାନଙ୍କ ପକ୍ଷେ ତାହାଙ୍କ ଉପନ୍ୟାସ ଅପ୍ରୀତିକର ବା ବିରକ୍ତିକର ବୋଧ ହୋଇପାରେ; ମାତ୍ର ଉପନ୍ୟାସରେ ସୂକ୍ଷ୍ମ ମନସ୍ତାତ୍ତ୍ୱିକ କ୍ରିୟା ପ୍ରତିକ୍ରିୟାର ବିଚାର-ବିଶ୍ଳେଷଣ ଓ ପରିବେଶର ପୁଙ୍ଖାନୁପୁଙ୍ଖ ଜୀବନ୍ତ ଆଲେଖ୍ୟ ରଚନା ଦୃଷ୍ଟିରୁ ଗୋପୀନାଥଙ୍କ ଉପନ୍ୟାସ ସାର୍ଥକ ଓ ଅପ୍ରତିଦ୍ୱନ୍ଦ୍ୱୀ । 'ପରଜା', 'ଦାଦିବୁଢ଼ା' 'ଅମୃତର ସନ୍ତାନ' ଉପନ୍ୟାସରେ ଆରଣ୍ୟକ ପ୍ରକୃତି ଓ ଜୀବନ ଧାରା, ଆଦିବାସୀର ସରଳ, ସୁନ୍ଦର, ରୋମାଞ୍ଚକର ବିଚିତ୍ର ଜୀବନ ଅଶେଷ ଦକ୍ଷତାର ସହ ଲେଖକ ଚିତ୍ରଣ କରିଅଛନ୍ତି ।

ନାଗରିକ ପୃଷ୍ଠଭୂମି ଉପରେ ପ୍ରତିଷ୍ଠିତ 'ହରିଜନ' ଉପନ୍ୟାସରେ ଲେଖକ ହରିଜନ ଜୀବନର ଦୁଃଖ ଦୁର୍ଦ୍ଦଶା, ଚିତ୍ର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତଥାକଥିତ ଧନୀକ ସମ୍ଭ୍ରାନ୍ତ ଜୀବନର ତୁଳନାତ୍ମକ ଚିତ୍ର ଅଙ୍କନ କରିଅଛନ୍ତି । ଲେଖକଙ୍କର ଭାଷାଶୈଳୀ ଓ ବର୍ଣ୍ଣନାରୀତିରେ ମଧ୍ୟ ଅଭିନବତ୍ୱ ଓ ବୈଶିଷ୍ଟ୍ୟ ଉପଲବ୍ଧ ହୁଏ । ଓଡ଼ିଆ ଗଦ୍ୟଶୈଳୀର ତାହା ଏକ ଅପୂର୍ବ ଅଭିବ୍ୟକ୍ତି । ଓଡ଼ିଆ ବିଶିଷ୍ଟ ଶବ୍ଦ (idom) ସଂଯୋଜିତ ସରଳ ଭାଷାରେ ଅପୂର୍ବ ଆବେଗମୟ, କବିତ୍ୱପୂର୍ଣ୍ଣ ବର୍ଣ୍ଣନା କରିବାରେ ଲେଖକ ଅସାଧାରଣ କୁଶଳତାର ପରିଚୟ ଦେଇଅଛନ୍ତି । 'ବାହୁର ଛାୟା' ଉପନ୍ୟାସରେ ବିବାହବିମୁଖା ଉଚ୍ଚ ଶିକ୍ଷିତା ନାରୀର ମନସ୍ତତ୍ତ୍ୱ ବିଶ୍ଳେଷଣ ଦେଖିବାକୁ ମିଳେ । 'ଦାନାପାଣି' ଉପନ୍ୟାସରେ ଲେଖକ ଚାକିରିଜୀବୀମାନଙ୍କର ଜୀବନାଲେଖ୍ୟ ଅଙ୍କନରେ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି ।

ପୁରୀର ସାଗରସୈକତ ଓ ଶ୍ରୀମନ୍ଦିରର ମନୋହର ପରି-ବେଶରେ ଏକ ବଙ୍ଗୀୟ ପରିବାରର ମାତ୍ର ତିନିଦିନର ଅଭିଜ୍ଞତାକୁ ଅବଲମ୍ବନ କରି ଲିଖିତ 'ଲୟ ବିଲୟ' ଉପନ୍ୟାସ ଲେଖକଙ୍କର ଏକ ଅଭିନବ ପରୀକ୍ଷା । କୌଣସି ନିର୍ଦ୍ଦିଷ୍ଟ କଥାବସ୍ତୁ ବା ସଂଘାତ-ହୀନ କଥାବସ୍ତୁ ବ୍ୟତିରେକେ କେବଳ ଅନୁଭୂତିକୁ ଉପଜୀବ୍ୟ କରି ମୁଖ୍ୟତଃ ଏହି ଉପନ୍ୟାସଟି ରଚିତ ।

## ଏହି ପର୍ଯ୍ୟାୟର ଅନ୍ୟାନ୍ୟ ଉପନ୍ୟାସ ରଚୟିତା –

କାଳନ୍ଦୀଚରଣଙ୍କ 'ମାଟିର ମଣିଷ' କେବଳ ଓଡ଼ିଶାରେ ନୁହେଁ ଭାରତୀୟ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଏକ ଖ୍ୟାତିପ୍ରାପ୍ତ ରଚନା-ଭାବେ ପ୍ରସିଦ୍ଧି ଅର୍ଜନ କରିଅଛି । ବାସ୍ତବ ଓ ଆଦର୍ଶର ସମନ୍ୱୟ

ଯୋଗୁଁ ଏହା ଏକ ସାର୍ଥକ ଶିଳ୍ପର ଗୌରବ ଅର୍ଜନ କରିବାକୁ କ୍ଷମ ହୋଇଅଛି । ତ୍ୟାଗ, ସଂଯମ, ସହିଷ୍ଣୁତା, ଉଦାରତା ଓ ଅହିଂସାର ପ୍ରତିମୂର୍ତ୍ତି ଭାବେ ଲେଖକ ଏକ ଗ୍ରାମଗୃହୀ ବରଜୁର ଯେଉଁ ଜୀବନ-ଆଲେଖ୍ୟ ଅଙ୍କନ କରିଛନ୍ତି ତାହା ଉଚ୍ଚ କୋଟିର । ପାଶ୍ଚାତ୍ୟଭାବାପନ୍ନ ବ୍ୟକ୍ତିଙ୍କ କୁପରାମର୍ଶରେ ଏକାନ୍ନବର୍ତ୍ତୀ ପରିବାରରେ ଝଡ଼ଝଞ୍ଜାର ସୂତ୍ରପାତ ହେଲେହେଁ, ବରଜୁ ପରି ଆଦର୍ଶବାଦୀ ବ୍ୟକ୍ତିର ତ୍ୟାଗଦ୍ୱାରା କିପରି ସମସ୍ୟାର ସମାଧାନ ହୁଏ ତାହାହିଁ ଏଥିରେ ଚିତ୍ରିତ ।

'ମାଟିର ମଣିଷ' ରଚିତ ହେବାର ୧୮ବର୍ଷ ପରେ ଲେଖକ ବରଜୁ ଜୀବନର ପରିଣତିକୁ ଭିତ୍ତିକରି 'ଲୁହାର ମଣିଷ' ରଚନା କରିଥିଲେ । ଏଥିରେ ଶ୍ରମିକକୁଳର କଲ୍ୟାଣ ଲାଗି ବରଜୁ କିପରି ଆତ୍ମବଳିଦାନ କରିଛି ତାହା ବର୍ଣ୍ଣିତ ହୋଇଥିଲେହେଁ ମାଟିର ମଣିଷ ପରି ଏହି ଉପନ୍ୟାସଟି ଜନାଦୃତ ହୋଇପାରିନାହିଁ । ଲେଖକଙ୍କ ଅନ୍ୟ ଉପନ୍ୟାସ ହେଉଛି 'ମୁକ୍ତାଗଡ଼ର କ୍ଷୁଧା' ଓ ତାହାର ପରବର୍ତ୍ତୀ ଭାଗ 'ଅମର ଚିତା' । ଏହା ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ପ୍ରଥମ ଉଲ୍ଲେଖଯୋଗ୍ୟ ଜୀବନ-ଚରିତମୂଳକ ଉପନ୍ୟାସ । ନଅଙ୍କ ଦୁର୍ଭିକ୍ଷର ପୃଷ୍ଠଭୂମିକାରେ ରାଜା ଶୁଭକାନ୍ତଙ୍କ ଜନ୍ମଠାରୁ ତାଙ୍କର ଅନ୍ତିମଜୀବନ ପର୍ଯ୍ୟନ୍ତ ଭୋଗ ଓ ତ୍ୟାଗର ବହୁ ଘଟଣା ସମ୍ବଳିତ ଜୀବନଚରିତ ଏଥିରେ ବର୍ଣ୍ଣିତ । ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଅପେକ୍ଷା ଏଥିରେ ରୋମାଞ୍ଚକର କଥାବସ୍ତୁ ଓ ଦାର୍ଶନିକ ଭାବନାର ପ୍ରାଧାନ୍ୟ ପ୍ରତିଷ୍ଠିତ ।

ଆଲୋଚ୍ୟ ସମୟର ଅନ୍ୟତମ ସୁଖ୍ୟାତ ଔପନ୍ୟାସିକ ରାଜକିଶୋର ପଟ୍ଟନାୟକ 'ପଞ୍ଜୁରୀ ପକ୍ଷୀ', 'ସିନ୍ଦୂର ଗାର',

ସେପରି ଚମତ୍କାର ଉପମା ଓ ରୂପକାଦି ଅଳଂକାରରେ ସୁମଣ୍ଡିତ କରିଛନ୍ତି ତାହା ଲେଖକଙ୍କ ଅପୂର୍ବ ଦକ୍ଷତାର ପରିଚାୟକ । ଏହି ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏହାର ସ୍ୱାତନ୍ତ୍ର୍ୟ ଅନସ୍ୱୀକାର୍ଯ୍ୟ ।

ତାହାଙ୍କର ପ୍ରଣୟ-ପ୍ରଧାନ ଉପନ୍ୟାସଗୁଡ଼ିକ ବିଷୟବସ୍ତୁ ଦୃଷ୍ଟିରୁ ବୈଚିତ୍ର୍ୟହୀନ । ଉପନ୍ୟାସମାନଙ୍କରୁ ଲେଖକଙ୍କ କୌଶଳ ଆଦର୍ଶ ପ୍ରତି ତାଙ୍କର ଆଗ୍ରହ ଅନୁଭୂତ ହୁଏନାହିଁ । ଲେଖକଙ୍କ ଅଧିକାଂଶ ଉପନ୍ୟାସରେ ଏକ ଶିଳ୍ପୀମନର ଭାବାକୁଳତାର ସ୍ପର୍ଶ ମୁଖ୍ୟତଃ ପାଠକ ଉପଲବ୍ଧି କରେ । ମନୁଷ୍ୟର ସ୍ୱଳ୍ପାୟୁ ଭାବାବେଗ ପରି ତାହାଙ୍କର ଉପନ୍ୟାସର ପ୍ରଭାବ ସ୍ୱଳ୍ପସ୍ଥାୟୀ ହେଲେହେଁ ଅଧ୍ୟୟନ କାଳରେ ଏହା ପାଠକର ମନକୁ ଭାବାବେଗରେ ଆର୍ଦ୍ର, କୋମଳ ଓ ନମନୀୟ କରିଥାଏ । ବୈଷ୍ଣବ କବିଙ୍କ ପରି ଲେଖକ କେବଳ ଭାବର ବିଳାସରେ ବିଭୋରତା ଓ ତନ୍ମୟତା ପ୍ରଦର୍ଶନ କରିଅଛନ୍ତି ।

ଆଲୋଚ୍ୟ ସମୟର ପ୍ରଖ୍ୟାତ ଔପନ୍ୟାସିକଭାବେ ଭୁଲ, ହିଡ଼ମାଟି, ଭଙ୍ଗାହାଡ଼, ଜୀଅନ୍ତା ମଣିଷ, ଜୀବନର ଲକ୍ଷ୍ୟ ଓ ସୁଖର ସନ୍ଧାନେ ପ୍ରଭୃତି ଉପନ୍ୟାସ ପ୍ରଣେତା ନିତ୍ୟାନନ୍ଦ ମହାପାତ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ । ସୂକ୍ଷ୍ମ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ ଆବେଗପ୍ରବଣତା ନିତ୍ୟାନନ୍ଦଙ୍କ ଉପନ୍ୟାସର ବୈଶିଷ୍ଟ୍ୟ ହେଲେହେଁ କଥା ଓ କଳ୍ପନାର ଐଶ୍ୱର୍ଯ୍ୟରେ ତାହା ଋଦ୍ଧିମନ୍ତ । ଆବେଗପ୍ରବଣ କଥାବସ୍ତୁ ଦୃଷ୍ଟିରୁ ଲେଖକଙ୍କ 'ଭୁଲ' ଓ ତାତ୍ତ୍ୱିକ ବିଚାର ବିଶ୍ଳେଷଣ, କଳ୍ପନାର ବୈଚିତ୍ର୍ୟ ଦୃଷ୍ଟିରୁ 'ଜୀଅନ୍ତା ମଣିଷ' ଓ 'ଜୀବନର ଲକ୍ଷ୍ୟ'ର ସ୍ୱାତନ୍ତ୍ର୍ୟ ଅନୁଭୂତ ହୁଏ ।

କବି ପ୍ରାଣକୃଷ୍ଣ ସାମଲ ( ୧୯୧୨-୧୯୫୯ ) 'ପ୍ରେମ', 'ପଲ୍ଲୀଜୀବନ', 'ହାଣ୍ଡିକା ଦାନ୍ତ', 'ସହଯାତ୍ରିଣୀ', 'ନୀଳକମଳ' ଏହିପରି ପାଞ୍ଚଗୋଟି ଉପନ୍ୟାସ ରଚନା କରିଅଛନ୍ତି । ତାହାଙ୍କ ଉପନ୍ୟାସଗୁଡ଼ିକରେ ମଧ୍ୟ ମୁଖ୍ୟତଃ ପ୍ରେମର ଚିତ୍ର ପରିଲକ୍ଷିତ ହୁଏ । ତାଙ୍କର ଅଧିକାଂଶ ଉପନ୍ୟାସର ପ୍ରେମିକ-ପ୍ରେମିକା ଜାତୀୟ ଓ ସାମ୍ପ୍ରଦାୟିକ ଅସମତା ଯୋଗୁ ପ୍ରଚୁର ହୃଦୟ-ମନ୍ଥନ, ମାନସିକ ଦ୍ୱନ୍ଦ୍ୱ ଓ ସଂଘର୍ଷର ସମ୍ମୁଖୀନ ହୋଇଅଛନ୍ତି । 'ପ୍ରେମ' ଉପନ୍ୟାସର ନାୟକ ହିନ୍ଦୁ ଓ ନାୟିକା ମୁସଲମାନ ସଂପ୍ରଦାୟର । ପଲ୍ଲୀଜୀବନର ନାୟକ ଖଣ୍ଡାୟତ ସଂପ୍ରଦାୟର ହେଲେହେଁ ନାୟିକା ସମ-ସଂପ୍ରଦାୟଭୁକ୍ତା ନହେବା ଯୋଗୁ ଉଭୟଙ୍କ ଜୀବନରେ ତୁମୁଳ ଝଡ଼ଝଞ୍ଜାର ସୂତ୍ରପାତ ହୋଇଅଛି । ସେହିପରି 'ନୀଳକମଳ' ଉପନ୍ୟାସରେ ନାୟକ ଉତ୍କଳୀୟ ସମ୍ଭ୍ରାନ୍ତ ପରିବାରର ସନ୍ତାନ ରାମନାରାୟଣ ଓ ଉଚ୍ଚ ଶିକ୍ଷିତା, ବଙ୍ଗୀୟ ନାୟିକା 'କମଳ' ଉଭୟେ ପରସ୍ପର ପ୍ରତି ପ୍ରେମାସକ୍ତ ହୋଇ ପରିଶେଷରେ କିପରି ବହୁ ଝଡ଼ଝଞ୍ଜା ଅତିକ୍ରମ କରି ମିଳିତ ହୋଇପାରିଛନ୍ତି ତାହା ଚିତ୍ରିତ । ଏହା ଘଟନାବହୁଳ ନୁହେଁ; ପରନ୍ତୁ ଏକ ପରିବେଶ ଓ ଚରିତ୍ରପ୍ରଧାନ ଉପନ୍ୟାସ ।

ଭାରତୀୟ ଜାତୀୟ ସଂଗ୍ରାମ ଇତିହାସରେ ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଅହିଂସାତ୍ମକ ବିପ୍ଳବ ଏକ ଯୁଗାନ୍ତକାରୀ ଘଟଣା ଓ ଅଭିନବ ଭାବାଦର୍ଶ । ଆଧୁନିକ ଭାରତୀୟ ସାହିତ୍ୟରେ ଏହାର ବିପୁଳ ପ୍ରଭାବ ମଧ୍ୟ ଅନସ୍ୱୀକାର୍ଯ୍ୟ । ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ସମକାଳୀନ ରାଜନୈତିକ ଚେତନା ଓ ଅଭିଜ୍ଞାନ ସମ୍ବଳିତ ଉପନ୍ୟାସ ରଚୟିତା-ଭାବେ ରାମପ୍ରସାଦ ସିଂହ ଓ ହରେକୃଷ୍ଣ ମହତାବଙ୍କ ନାମ ଉଲ୍ଲେଖ-ଯୋଗ୍ୟ ।

ହରେକୃଷ୍ଣ ମହତାବଙ୍କ ପ୍ରଥମ ଉପନ୍ୟାସ 'ନୂତନ ଧର୍ମ', 'ଆନନ୍ଦ ଲହରୀ ଉପନ୍ୟାସ ମାଳା'ର ଅନ୍ୟତମ ଗ୍ରନ୍ଥ ଭାବେ ପ୍ରକାଶ ପାଇଥିଲା । ପରବର୍ତ୍ତୀ କାଳରେ ଲେଖକ 'ପ୍ରତିଭା', 'ଟାଉଟର', 'ଅବ୍ୟାପାର' ପ୍ରଭୃତି ଉପନ୍ୟାସ ପ୍ରଣୟନ କରିଥିଲେ । ତାହାଙ୍କ ଉପନ୍ୟାସଗୁଡ଼ିକର ପରିକଳ୍ପନାର ମହତ୍ତ୍ୱ ସ୍ୱୀକାର୍ଯ୍ୟ ହେଲେହେଁ ଚରିତ୍ର ଓ ପରିବେଶ ଚିତ୍ରଣ, ଭାଷାବିନ୍ୟାସ ଓ ପରିବେଷଣ ରୀତି ଦୃଷ୍ଟିରୁ ଲେଖକ ସଂପୂର୍ଣ୍ଣ ସଫଳକାମ ହୋଇପାରି ନାହାନ୍ତି । ସାମାଜିକ ଘାତ ପ୍ରତିଘାତକୁ ଅସ୍ୱୀକାର କରି ଆପଣାର ଆଦର୍ଶ-ବାଦକୁ ପ୍ରତିଷ୍ଠିତ କରିବାରେ ସମର୍ଥ ଓ ବଳିଷ୍ଠ ବ୍ୟକ୍ତିତ୍ୱ ସମ୍ପନ୍ନ ଚରିତ୍ରସୃଷ୍ଟି କରିବାରେ ଲେଖକଙ୍କ ଉଦ୍ୟମ ପ୍ରଶଂସାର୍ହ । କଳା ଦୃଷ୍ଟିରୁ ସେଗୁଡ଼ିକ ସାର୍ଥକ ନ ହେଲେହେଁ ରାଜନୈତିକ ପୃଷ୍ଠପଟରୁ ବଳିଷ୍ଠ ବ୍ୟକ୍ତିତ୍ୱସମ୍ପନ୍ନ ଚରିତ୍ର ସୃଷ୍ଟିରେ ଏହି ଉଦ୍ୟମ ପ୍ରଶଂସନୀୟ । ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ତାହା ଏକ ବଳିଷ୍ଠ ପଦକ୍ଷେପ ।

୧୯୩୦ରୁ ରାମପ୍ରସାଦ ସିଂହ ମୁଖ୍ୟତଃ ରାଜନୈତିକ ବିଷୟ ସମ୍ବଳିତ ଉପନ୍ୟାସ ରଚନା କରି ଓଡ଼ିଆ ସାହିତ୍ୟରେ ସୁଖ୍ୟାତି ଅର୍ଜନ କରିଅଛନ୍ତି । ସେ ରଉଡ଼ଲାଟ ଅତ୍ୟାଚାରକୁ ଭିତ୍ତିକରି 'ପ୍ରତିହିଂସା' (୧୯୩୦), ଅହିଂସାତ୍ମକ ସତ୍ୟାଗ୍ରହ ଆନ୍ଦୋଳନର ଚିତ୍ରକୁ ଭିତ୍ତିକରି 'ପୂଜାର ବଳି' ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ବିଷୟ ଅବଲମ୍ବନରେ 'ଛିନ୍ନମସ୍ତା' ପ୍ରଭୃତି ରଚନା କରିଛନ୍ତି । ଏହା ଛଡ଼ା 'ମରୁର ସାଥୀ', 'ଅଗ୍ନିପଥେ', 'ଯୁଗାନ୍ତର', 'ହୋମଶିଖା', 'ମରୀଚିକା', 'ପୂର୍ବରାଗ' ପ୍ରଭୃତି ମୁଖ୍ୟତଃ ରାଜନୈତିକ ତଥା ମାନବିକ ସମସ୍ୟାମୂଳକ ଉପନ୍ୟାସସମୂହ ଶୁଦ୍ଧ, ପରିମାର୍ଜିତ ଭାଷାରେ ରଚନା କରି ଲେଖକ ସୁନାମଧନ୍ୟ ହୋଇଅଛନ୍ତି ।

## ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ—

୧୯୩୦ ପରେ ଏ ଦେଶରେ ସମାଜ ସଂସ୍କାର ଲାଗି ତୁମୁଳ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଏହି ସମୟ ଥିଲା ଓଡ଼ିଶାର ଜାଗରଣ କ୍ଷେତ୍ରରେ ଏକ ସ୍ମରଣୀୟ ସନ୍ଧିକ୍ଷଣ । ଅସ୍ପୃଶ୍ୟତା ସଂସ୍କାର ବିରୁଦ୍ଧରେ ଏହି ସମୟରେ ରାଜନୀତି ଓ ସାହିତ୍ୟ କ୍ଷେତ୍ରରେ ପ୍ରବଳ ପ୍ରତିବାଦ ସୃଷ୍ଟି ହେଲା । ତେଣୁ ଏହି ସମୟର ଔପନ୍ୟାସିକ-ମାନଙ୍କ ରଚନାରେ ଏହି ସଂସ୍କାର ମନୋଭାବ ବିଶେଷଭାବେ ପ୍ରକାଶିତ । ଓଡ଼ିଶାର ଔପନ୍ୟାସିକଗଣ ତାହାର ବାର୍ତ୍ତା ସେମାନଙ୍କର ଉପନ୍ୟାସମାନଙ୍କରେ ଲିପିବଦ୍ଧ କରିଯାଇଅଛନ୍ତି । ଫକୀରମୋହନଙ୍କ ଯୁଗରେ ପ୍ରାଚୀନ ସଂସ୍କୃତି ଓ ପରମ୍ପରା ବିରୁଦ୍ଧରେ ପ୍ରତିବାଦର ସ୍ୱର ସାମୟିକ ଧ୍ୱନିତ ହୋଇଥିଲେହେଁ ତହିଁରେ ଜାତୀୟ ଓ ସାମ୍ପ୍ରଦାୟିକ ବିଭେଦର ବିଲୋପ ଲାଗି କୌଣସି ସ୍ପଷ୍ଟ ନିର୍ଦ୍ଦେଶ ନଥିଲା । ଫକୀରମୋହନଙ୍କ କୌଣସି ଚରିତ୍ର ସମାଜ ବିରୁଦ୍ଧରେ ବିଦ୍ରୋହ କରିନାହାନ୍ତି । ମାତ୍ର ଆଧୁନିକ ଉପନ୍ୟାସର ଚରିତ୍ର ସବୁ ସମାଜ ବିରୁଦ୍ଧରେ ଅଗ୍ରସର ।

ପ୍ରେମର ଅବଦମନ ମନୁଷ୍ୟର ଦେହ ମନକୁ ରୋଗାକ୍ରାନ୍ତ ଓ ବିକାରଗ୍ରସ୍ତ କରିଥାଏ । ଆଧୁନିକ ସମାଜରେ ନାନାପ୍ରକାର ବାଧା ଓ ନିଷେଧର ବିଦ୍ୟମାନତା, ଏ ଯୁଗର ଯୁବକ ଯୁବତୀମାନଙ୍କର ପ୍ରଣୟ ଓ ପରିଣୟ ପଥରେ ଅନ୍ତରାୟ ସୃଷ୍ଟି କରି ସେମାନଙ୍କ ନୈତିକ ଜୀବନକୁ ଦୋଷ ଦୁଷ୍ଟ କରୁଥିବା ବିଷୟ ମନସ୍ତତ୍ତ୍ୱବିଦ୍‌ମାନେ ବ୍ୟକ୍ତ କରନ୍ତି । ସାମ୍ପ୍ରତିକ ଉପନ୍ୟାସମାନଙ୍କରେ ଅବଦମିତ ପ୍ରଣୟର କୁପରିଣାମ ବିଶେଷଭାବେ ଚିତ୍ରିତ ହେଉଅଛି । ତାହାଛଡ଼ା ଅପରାଧପ୍ରବଣ ଚରିତ୍ରମାନଙ୍କୁ ଯୁକ୍ତି, ସମବେଦନା ଓ ସହାନୁଭୂତି

ସହ ଚିତ୍ରଣ କରିବାର ମନୋବୃତ୍ତି ମଧ୍ୟ ସାମ୍ପ୍ରତିକ ଉପନ୍ୟାସ ମାନଙ୍କରେ ପରିଲକ୍ଷିତ ହେଉଅଛି । ବହୁ ତରୁଣ ଲେଖକଙ୍କ ଉପନ୍ୟାସରେ ନିଷିଦ୍ଧ ପ୍ରେମ, ତଥା ପ୍ରେମର ବାଲ୍ୟପ୍ରବୃତ୍ତି ଓ ନଗ୍ନରୂପର ଅଭିବ୍ୟକ୍ତି ଦେଖିବାକୁ ମିଳିଥାଏ ।

ଅତ୍ୟାଧୁନିକ ତଥା ସମକାଳୀନ ଉପନ୍ୟାସରେ ମୁଖ୍ୟତଃ ଆଦର୍ଶବୋଧତା ଅପେକ୍ଷା ବାସ୍ତବତା ଉପରେ ସମଧିକ ଗୁରୁତ୍ୱ ଅର୍ପିତ ହେଉଅଛି । ଏହାଛଡ଼ା ଆଧୁନିକ ଜୀବନର ନାନା ସମସ୍ୟା, ଅର୍ଥନୈତିକ ଓ ଜାତିଗତ ବୈଷମ୍ୟ, ଅବିଚାର, ଶୋଷଣ ବିରୁଦ୍ଧରେ ପ୍ରତିବାଦର ସ୍ୱର ଅଧିକାଂଶ ଉପନ୍ୟାସର ଧ୍ୟେୟ ହୋଇଅଛି । ଅତୀତର ସମାଜ ବ୍ୟବସ୍ଥାରେ ସମାଜ ଓ ପ୍ରତିବେଶ ସମ୍ବନ୍ଧିତ ବ୍ୟକ୍ତି ମାନସର ସଂଘର୍ଷର ଅବକାଶ ନଥିଲା । ସୁତରାଂ ସମାଜ ନିରପେକ୍ଷ କେବଳ ପାତ୍ରପାତ୍ରୀଙ୍କ ହୃଦୟ-ବୃତ୍ତିର କ୍ରିୟା ପ୍ରତିକ୍ରିୟା ପ୍ରାଚୀନ ସାହିତ୍ୟରେ ରୂପାୟିତ ହେଉଥିଲା । ମାତ୍ର ଆଜିର ଜୀବନଧାରା ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥାଦ୍ୱାରା ସର୍ବତୋଭାବେ ନିୟନ୍ତ୍ରିତ ହେଉଅଛି । ପ୍ରାଚୀନ ମୂଲ୍ୟବୋଧ ଅପସୃତ ହେଉଛି ଓ ମନୁଷ୍ୟର ସହଜ ବିଶ୍ୱାସର ଭିତ୍ତିଭୂମି ଆଜି ଦୋଦୁଲ୍ୟମାନ ହୋଇପଡ଼ୁଛି । ଏହାର ଫଳସ୍ୱରୂପ ଏ ଯୁଗର ଔପନ୍ୟାସିକର ସନ୍ଦେହ-ପଙ୍କିଳ, ବିଶୃଙ୍ଖଳ, ନୈରାଶ୍ୟପୂର୍ଣ୍ଣ ଦୃଷ୍ଟିଭଙ୍ଗିରୁ ହେଉଛି ବିପର୍ଯ୍ୟସ୍ତ-ବିଶୃଙ୍ଖଳ-ଜୀବନ-ଦ୍ୟୋତକ, ଅସଂଖ୍ୟ ଅମୀମାଂସିତ-ସମସ୍ୟା-ବିଧୃତ, ସଂଶୟାନ୍ୱିତ ଚିତ୍ତବିକ୍ଷେପର ଚିତ୍ରରଚନା ଦେଖିବାକୁ ମିଳୁଅଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ସ୍ୱାଧୀନତା ପରବର୍ତ୍ତୀ ଉପନ୍ୟାସ ରଚୟିତାମାନଙ୍କ ମଧ୍ୟରେ ଜ୍ଞାନୀନ୍ଦ୍ର ବର୍ମା, ସୀତା ଦେବୀ, ଲବଙ୍ଗଲତା ଦେବୀ, ରାମଚନ୍ଦ୍ର ମିଶ୍ର (ଫକ୍କଡ଼ାନନ୍ଦ), ବସନ୍ତକୁମାରୀ ପଟ୍ଟନାୟକ,

ମହାପାତ୍ର ନୀଳମଣି ସାହୁ, ବିଭୂତି ପଟ୍ଟନାୟକ, କୃଷ୍ଣପ୍ରସାଦ ମିଶ୍ର, ଶାନ୍ତନୁକୁମାର ଆଚାର୍ଯ୍ୟ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହିସବୁ ଲେଖକମାନଙ୍କ ସୃଷ୍ଟିମୌଳ୍ୟ ରଚନା ଓ ତାର ଆଭିମୁଖ୍ୟ ସମ୍ପର୍କରେ କୌଣସି ଅଭିମତ ଦେବା ବର୍ତ୍ତମାନ ସମ୍ଭବପର ନୁହେଁ ।

ଯାହାହେଉ ସମକାଳୀନ ପ୍ରକାଶିତ ଉପନ୍ୟାସମାନଙ୍କ ମଧ୍ୟରେ ବସନ୍ତକୁମାରୀଙ୍କ ରଚିତ 'ଅମଡ଼ାବାଟ' ଉପନ୍ୟାସ ରଚନା-ସୌଷ୍ଠବ ଓ ଚରିତ୍ରଚିତ୍ରଣ ଦୃଷ୍ଟିରୁ ସ୍ୱତନ୍ତ୍ର ଓ ମହତ୍ତ୍ୱପୂର୍ଣ୍ଣ । ବିଶେଷତଃ ଏହି ଉପନ୍ୟାସରେ ନାରୀ ଚରିତ୍ରଚିତ୍ରଣରେ ଏବଂ ଗାର୍ହସ୍ଥ୍ୟ ଓ ପାରିବାରିକ ଜୀବନର ସ୍ନେହ-ସ୍ନିଗ୍ଧ, ସରସ, ମଧୁର ଚିତ୍ରାବଳୀ ଚିତ୍ରଣରେ ଲେଖିକା ଅପୂର୍ବ କୁଶଳତା ପ୍ରଦର୍ଶନ କରିଅଛନ୍ତି । ଲେଖକଙ୍କ ସୃଷ୍ଟ 'ମାୟା' ଏକ ଅନନ୍ୟ ବିଶିଷ୍ଟ ଚରିତ୍ର (type) ଭାବେ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଅମରତ୍ୱ ଲାଭକରିଛି । ଲେଖିକା ଏହି ଗୋଟିଏ ମାତ୍ର ଉପନ୍ୟାସରେ ପ୍ରାଚୀନ ରକ୍ଷଣଶୀଳା ନାରୀ ସାନ୍ଦୁ ବୋଉ, ଉଦାର ମନୋଭାବାପନ୍ନା ମହି ବୋଉ, ଶିକ୍ଷିତା କାବେରୀ, ପ୍ରଗତିଶୀଳା ମାୟା ପ୍ରଭୃତି ବିଭିନ୍ନ ଶିକ୍ଷା ଓ ସଂସ୍କୃତି-ସମ୍ପନ୍ନା ନାରୀ ଚରିତ୍ରର ଏକତ୍ର ସମାବେଶ ଓ ଜୀବନ୍ତ ଆଲେଖ୍ୟ ରଚନା କରି ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଆପଣାର ବୈଶିଷ୍ଟ୍ୟ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇ ପାରିଛନ୍ତି ।

ସ୍ନେହଶୀଳ ପିତାମାତା ଓ ଭାଇଙ୍କ ଆଦରରେ ପ୍ରତିପାଳିତା ଏବଂ ସ୍ୱଚ୍ଛ, ସଂସାର ମୁକ୍ତ, ଅକପଟ ମନ ଓ ଆଚରଣସମ୍ପନ୍ନା ମାୟା ଲୋକ ଚକ୍ଷୁରେ ଲଜ୍ଜାହୀନା, ମୁଖରା, 'ଅଣ୍ଡିରାଚଣ୍ଡୀ' ରୂପେ ପ୍ରଶଂସ୍ୟ-ମାନ ହୋଇଥିଲେ ହେଁ ଏବଂ ବୈବାହିକ ଜୀବନରେ ସେ ଅନ୍ୟର ମନନେଇ ଚଳିବା ବିଷୟରେ ନାନା ଆଶଙ୍କା ଦ୍ୱାରା ପୋଷିତ ହୋଇ-

ଥିଲେହେଁ ମାୟାର ବୈବାହିକ ଜୀବନରେ ଏହାର ଅସାରତା ପ୍ରତିପାଦିତ ହୋଇଛି । ବଧୂଭାବରେ ମାୟା ତ୍ୟାଗ, ଧୈର୍ଯ୍ୟ, ସହିଷ୍ଣୁତା, କର୍ତ୍ତବ୍ୟନିଷ୍ଠାର ଯେଉଁ ପରିଚୟ ଦେଇଛି ତାହା ତା'ର ଗୁଣବତ୍ତିକ ବଳିଷ୍ଠତାର ଦ୍ୟୋତକ । କାରବଣୀ ପରି ସେ ଅନୁଦାର, ସ୍ୱାର୍ଥ ସର୍ବସ୍ୱ ନୁହେଁ । ଏଣୁ ମାୟା ପ୍ରତି ପାଠକର ମନ ଶ୍ରଦ୍ଧା, ସମ୍ଭ୍ରମ ଓ ସମବେଦନାରେ ପରିପ୍ଲୁତ ହୋଇ ଉଠେ । ଉଚ୍ଚ ଶିକ୍ଷିତା ନାରୀ ବଧୂଭାବେ ଅନୁପଯୁକ୍ତା—ଏହି ଧାରଣାର ଅସାରତା ଲେଖିକା ମାୟା ଚରିତ୍ର ମାଧ୍ୟମରେ ପ୍ରତିପାଦିତ କରି ଅଛନ୍ତି । ଏହି ଉପନ୍ୟାସର କଥାବସ୍ତୁରେ କୌଣସି ଚମତ୍କାରିତା ବା ଜଟିଳ ସମସ୍ୟା ନାହିଁ । ପାରିବାରିକ ଜୀବନର ବୈଚିତ୍ର୍ୟହୀନ, ଅତି ସାଧାରଣ ଘଟଣାବଳୀକୁ ନେଇ ଉପନ୍ୟାସଟି ରଚିତ ହୋଇଥିଲେ ହେଁ ଲେଖିକା ଅତ୍ୟନ୍ତ ସରସଭାବରେ ସେଗୁଡ଼ିକ ବର୍ଣ୍ଣନା କରି ଅପୂର୍ବ କଳା ନୈପୁଣ୍ୟର ପରିଚୟ ଦେଇଅଛନ୍ତି ।

ଏହିସବୁ ଉପନ୍ୟାସମାନଙ୍କ ବ୍ୟତୀତ ଯୁଦ୍ଧୋତ୍ତର କାଳରେ ହିନ୍ଦୀ, ଇଂରାଜୀ, ବଙ୍ଗଳା ପ୍ରଭୃତି ଭାଷାରୁ ଗୋଲୋକବିହାରୀ ଧଳ, ଉଦୟନାଥ ଷଡ଼ଙ୍ଗୀ, ଲକ୍ଷ୍ମୀନାରାୟଣ ମହାନ୍ତି, ରାମକୃଷ୍ଣ ନନ୍ଦ, ଶ୍ରୀନିବାସ ଉଦ୍‌ଗାତା, ଗୋବିନ୍ଦ ମିଶ୍ର, ଚିତ୍ତରଞ୍ଜନ ଦାସ, ପ୍ରଭାସ-ଚନ୍ଦ୍ର ଶତପଥୀ, ନାରାୟଣ ବୀରବର ସାମନ୍ତ ପ୍ରଭୃତିଙ୍କ ଦ୍ୱାରା ବହୁ ବିଦେଶୀ ଉପନ୍ୟାସ ଓଡ଼ିଆରେ ଅନୂଦିତ ହୋଇଅଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଓଡ଼ିଆରେ ମାତ୍ର ଗୁଡ଼ିଏ ପାଞ୍ଚଗୋଟି ଡିଟେକଟିଭ ବା ରହସ୍ୟଭେଦମୂଳକ ଉପନ୍ୟାସ ରଚିତ ହୋଇଥିଲା । ମାତ୍ର ଯୁଦ୍ଧ ସମୟ ମଧ୍ୟରେ ଓଡ଼ିଆରେ ଏହି ଧରଣର ଉପନ୍ୟାସର ଜନପ୍ରିୟତା ହଠାତ୍ ବଢ଼ି ଯାଇଥିଲା । ବିଗତ ପ୍ରାୟ ୧୦ ବର୍ଷ

ମଧ୍ୟରେ ଓଡ଼ିଆରେ ପ୍ରାୟ ଦୁଇଶତାଧିକ ଡିଟେକ୍‌ଟିଭ ଉପନ୍ୟାସ ପ୍ରକାଶିତ ହୋଇଅଛି ।

ସ୍ଥୂଳତଃ, ପାଶ୍ଚାତ୍ୟ ସାହିତ୍ୟର ଉପନ୍ୟାସ ପରି ଉଚ୍ଚାଙ୍ଗ ଉପନ୍ୟାସ ରଚନା ଭାରତୀୟ ସାହିତ୍ୟରେ ସମ୍ଭବପର ନୁହେଁ ବୋଲି ଅନେକେ ମତପୋଷଣ କରିଥାନ୍ତି । କାରଣ ଭାରତୀୟ-ମାନଙ୍କର ଜୀବନଧାରା, ଧର୍ମ, ସଂସ୍କାର ଓ ସାମାଜିକତାର ଆବେଷ୍ଟନୀରେ ଏପରି ସୁସ୍ଥିର, ଶୃଙ୍ଖଳିତ ଯେ ତହିଁରେ ବିରାଟ ସଂଘର୍ଷର ସମ୍ଭାବନା ସ୍ୱଳ୍ପ । ଏଣୁ ପ୍ରେମ ଓ ତଜ୍ଜନିତ ଭାବାକୁଳତା ହିଁ ଭାରତୀୟ ଉପନ୍ୟାସର ପ୍ରଧାନ ଉପଜୀବ୍ୟ ବିଷୟ ହୋଇ-ରହିଛି । ଉତ୍କଳୀୟ ପରିବେଶରୁ ବିଚାର କଲେ ମଧ୍ୟ ଏହାର ସତ୍ୟତା ଅନୁଭୂତ ହୋଇଥାଏ ।

ଏହାଛଡ଼ା ଜାତୀୟ ଜୀବନର ବହୁମୁଖୀ ସଂପ୍ରସାରଣ ଉପରେ ମଧ୍ୟ ସାହିତ୍ୟର ବିକାଶ ନିର୍ଭରଶୀଳ । ସ୍ୱାଧୀନତା ପରେ ଓଡ଼ିଶାର ମନୁଷ୍ୟର ଜୀବନ-ଯାତ୍ରା ପଥରେ କିଞ୍ଚିତ୍ ସ୍ୱାଚ୍ଛଲ୍ୟ ଓ ଗତିର ସୂଚନା ମିଳୁଥିବାରୁ ଆଧୁନିକ ଓଡ଼ିଆ ଉପନ୍ୟାସରେ ବିକାଶର ମୃଦୁ ପଦଧ୍ୱନି ଶ୍ରୁତିଗୋଚର ହେଉଅଛି । ସ୍ତ୍ରୀ-ଶିକ୍ଷାର ପରିଣାମ, ବିଧବା ବିବାହ, ଜାତିପ୍ରଥାର କୁପରିଣାମ, ଅର୍ଥନୈତିକ ବୈଷମ୍ୟ, ଜମିଦାରୀ ଅତ୍ୟାଚାର, ଦେଶ ମିଶ୍ରଣ, ସ୍ୱାଧୀନତାପାଇଁ ଅହିଂସାତ୍ମକ ସଂଗ୍ରାମ, ଗଡ଼ଜାତ-ଅତ୍ୟାଚାର ପ୍ରଭୃତି ଏକପ୍ରକାର ଆଉ ସାମାଜିକ ସମସ୍ୟା ହୋଇ ରହିନାହିଁ ଅଥବା ସେସବୁ ବିଷୟ ହୋଇଗଲାଣି । ମାତ୍ର ଏହା ପରିବର୍ତ୍ତେ ନୂତନତର ବିଷୟବସ୍ତୁର ସନ୍ଧାନଲାଗି ସମାଜ-ଜୀବନ-ଅଧ୍ୟୟନରେ ଯେଉଁ ନିଷ୍ଠା, ଧୈର୍ଯ୍ୟ, ସାଧନା ଆବଶ୍ୟକ ତାହା ଆମ୍ଭେମାନେ ଏପର୍ଯ୍ୟନ୍ତ ଅର୍ଜନ କରିବାକୁ ସମର୍ଥ

ହୋଇ ପାରିନାହିଁ । ଫଳତଃ ଆଧୁନିକ ଓଡ଼ିଆ ଉପନ୍ୟାସ ଆଶାନୁରୂପ ଅଗ୍ରଗତି କରିପାରୁ ନାହିଁ ।

ଉଦାହରଣ ସ୍ୱରୂପ ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ବଙ୍ଗସାହିତ୍ୟରେ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଗବେଷକଗଣଙ୍କ ଗବେଷଣା ଫଳରେ ଊନବିଂଶ ଶତାବ୍ଦୀର ବଙ୍ଗସମାଜ ସମ୍ପର୍କରେ ବହୁ ଜ୍ଞାତବ୍ୟ ତଥ୍ୟ ଆବିଷ୍କୃତ ହେବା ଯୋଗୁଁ ବଙ୍ଗର ଔପନ୍ୟାସିକଗଣ, ସାହେବ ବିବି ଗୋଲାମ, କେରି ସାହେବେର ମୁନ୍‌ସି, ଅଗ୍ନିବନ୍ୟା ପରି ବହୁ ଐତିହାସିକ ପଟ୍ଟଭୂମିକାଯୁକ୍ତ-ଉପନ୍ୟାସ ରଚନା କରିବା'କୁ ସମର୍ଥ ହୋଇ ପାରିଛନ୍ତି । ମାତ୍ର ଓଡ଼ିଶାରେ ସମ୍ପୂର୍ଣ୍ଣ ଐତିହାସିକ ବା ଐତିହାସିକ-ପଟ୍ଟଭୂମିକାଯୁକ୍ତ ଉପନ୍ୟାସର ଏକାନ୍ତ ଅଭାବ ପରିଲକ୍ଷିତ ହେଉ-ଅଛି—ମୁଖ୍ୟତଃ ଏହି ଗବେଷଣାର ଅଭାବରୁ । ଉପନ୍ୟାସ ଲେଖକ ମାନେ ମଧ୍ୟ ଓଡ଼ିଶାର ନବଜାଗ୍ରତ ଜୀବନର ରୂପକାର ହେବା ଲାଗି ଜୀବନଧାରା ସହିତ ଯେପରି ଗଭୀର ସମ୍ପର୍କ ସ୍ଥାପନ ଓ ଜୀବନର ସୂକ୍ଷ୍ମ ଅନୁଧ୍ୟାନ କରିବା କଥା ତାହା କରିବାରେ ବିମୁଖ । ଏଥିପାଇଁ ଯୁଦ୍ଧ ପରବର୍ତ୍ତୀକାଳରେ ଓଡ଼ିଆ ଉପନ୍ୟାସ ରଚନାକ୍ଷେତ୍ରରେ ଆମେ କେବଳ ମୁଷ୍ଟିମେୟ ଉପନ୍ୟାସ-ରଚୟିତା ଓ ସେମାନଙ୍କର ସ୍ୱଳ୍ପ ସଂଖ୍ୟକ ସାର୍ଥକ ଉପନ୍ୟାସକୁହିଁ ଦେଖିବାକୁ ପାଉଅଛୁ ।



# ଆଧୁନିକ ଓଡ଼ିଆ କ୍ଷୁଦ୍ର ଗଳ୍ପ

## କ୍ଷୁଦ୍ରଗଳ୍ପ ଓ ତାହାର ରଚନାରୀତି

ସାହିତ୍ୟର ବିଭିନ୍ନ ବିଭାବମାନଙ୍କ ମଧ୍ୟରୁ କଥା-ସାହିତ୍ୟ ପ୍ରାଚୀନତମ । ମନୁଷ୍ୟ ଆଦିମ, ଅନୁନ୍ନତ ଥିବା ସମୟରୁ ସମ୍ଭବତଃ ଚିତ୍ତବିନୋଦନ ଅଥବା ଶିକ୍ଷାଦାନ ଉଦ୍ଦେଶ୍ୟରେ 'କଥା'ର ଆବିଷ୍କାର କରିଅଛି । ପୃଥିବୀର ସକଳ ଦେଶରେ ପ୍ରଚଳିତ ଲୋକ-କଥା, କାହାଣୀ ବା ଗ୍ରାମ୍ୟଗଳ୍ପମାନଙ୍କରୁ ତାହାହିଁ ପ୍ରମାଣିତ । ଏହି କାଳ୍ପନିକ ଲୋକ କଥା ସହିତ ପ୍ରେମ ଓ ବୀରତ୍ୱବ୍ୟଞ୍ଜକ ଜୀବନ ସତ୍ୟର ସଂଯୋଗରେ ମଧ୍ୟଯୁଗରେ ଉପାଖ୍ୟାନ, ବୃତ୍ତାନ୍ତ ଓ 'ରୋମାନ୍ସ' ସମୂହ ରଚିତ ହୋଇଥିଲା । ପରବର୍ତ୍ତୀକାଳରେ ଏହି ପରମ୍ପରାର କ୍ରମ ପରିଣାମସ୍ୱରୂପ ଆଧୁନିକ କ୍ଷୁଦ୍ରଗଳ୍ପର ସୂତ୍ରପାତ ହେଲା ।

କଥାସାହିତ୍ୟ ସୃଷ୍ଟିର ଇତିହାସରେ ଭାରତବର୍ଷର ସ୍ଥାନ ଗୁରୁତ୍ୱପୂର୍ଣ୍ଣ । ପ୍ରାଚୀନ ଭାରତବର୍ଷ କଥାସାହିତ୍ୟର କେବଳ ଯେ ଅନ୍ୟତମ ଜନ୍ମପୀଠ ତାହା ନୁହେଁ, ଭାରତୀୟ ପ୍ରାଚୀନ ସାହିତ୍ୟରେ କଥାସାହିତ୍ୟର ପୁଷ୍କଳ ଅଭିବ୍ୟକ୍ତି ଓ ବିକାଶ ଦେଖିବାକୁ ମିଳିଥାଏ । ତିନି ହଜାର ବର୍ଷରୁ ପ୍ରାଚୀନ ବୈଦିକ ସାହିତ୍ୟରେ ଉର୍ବଶୀ, ପୁରୁରବା, ଯମ ଓ ଯମୀ ପ୍ରଭୃତି ବହୁ ଉପାଖ୍ୟାନର ଉଲ୍ଲେଖ ଦେଖାଯାଏ । ବୌଦ୍ଧଜାତକ ଓ ଜୈନ-ସାହିତ୍ୟରେ ମଧ୍ୟ ବହୁ ଉପାଖ୍ୟାନ ନିହିତ । ପ୍ରାକୃତ ଭାଷାରେ ଗୁଣାଢ଼୍ୟଙ୍କ ଦ୍ୱାରା 'ବୃହତ୍ କଥା' ରଚିତ ହୋଇଥିଲା । ଏହାର ସଂସ୍କୃତରୂପ ହେଉଛି

କ୍ଷେମେନ୍ଦ୍ରଙ୍କ 'ବୃହତ୍ କଥା-ମଞ୍ଜରୀ'। ଭାରତର ଅମର ମହାକାବ୍ୟ ରାମାୟଣ ଓ ମହାଭାରତ ମଧ୍ୟ ବହୁ ଆଖ୍ୟାୟିକା ଓ ଉପାଖ୍ୟାନରେ ସମୃଦ୍ଧ। ଏହାଛଡ଼ା ବିଷ୍ଣୁଶର୍ମାଙ୍କ ହିତୋପଦେଶ, ପଞ୍ଚତନ୍ତ୍ର, ବେତାଳପଞ୍ଚବିଂଶତି ପ୍ରଭୃତି ସଂସ୍କୃତ ରଚନାବଳୀରୁ ପ୍ରାଚୀନ ଭାରତରେ ନୀତିକଥା ଓ ଧର୍ମସମ୍ବନ୍ଧୀୟ ଉପାଖ୍ୟାନମୂଳକ କଥା-ସାହିତ୍ୟର ପ୍ରଭୂତ ବିକାଶ ଦେଖିବାକୁ ମିଳିଥାଏ।

ପ୍ରାଚୀନ ଯୁଗରେ ପୃଥିବୀର ଅନ୍ୟାନ୍ୟ ଦେଶରେ ମଧ୍ୟ କଥା-ସାହିତ୍ୟ ସୃଷ୍ଟିର ନିଦର୍ଶନ ମିଳେ। ଗ୍ରୀସ୍ ଓ ରୋମର ପୌରାଣିକ କଥା-ସାହିତ୍ୟ, ଆରବ ପାରଶ୍ୟ ଦେଶର ଲୋକ-କଥା, ଇଂଲଣ୍ଡର ଏଶପଙ୍କ ନୀତିକଥାସମୂହ କଥା-ସାହିତ୍ୟର ଆଦିମ ରୂପ ଭାବେ ସ୍ୱୀକୃତି ଲାଭ କରିଅଛି। ଆଧୁନିକ ଯୁଗରେ ସେହି ସବୁ ପ୍ରାଚୀନ ଲୋକ-କଥା, କାହାଣୀ, ନୀତିକଥା ପ୍ରଭୃତିର ସଂଗ୍ରହ, ସଂକଳନ ଓ ସେ ସମ୍ପର୍କୀୟ ଗବେଷଣାରେ ଅନେକେ ନିୟୋଜିତ। ଇଂରାଜୀ ସାହିତ୍ୟରେ ଚତୁର୍ଦ୍ଦଶ ଶତାବ୍ଦୀରେ ଚସର୍‌ଙ୍କ ଦ୍ୱାରା ଲିଖିତ 'କ୍ୟାଣ୍ଟରବେରି ଟେଲସ୍' ଇଂରାଜୀ କ୍ଷୁଦ୍ରଗଳ୍ପର ଆଦିମ ରୂପଭାବେ ଗୃହୀତ ହୁଏ। ସେହିପରି ଚତୁର୍ଦ୍ଦଶ ଶତାବ୍ଦୀରେ ବୋକାସିଓଙ୍କ ରଚିତ 'ଡେକାମେରନ୍'କୁ ଇଟାଲି ଗଳ୍ପସାହିତ୍ୟର ଆଦିମ ରୂପ-ଭାବେ ଗ୍ରହଣ କରାଯାଇଥାଏ।

ମଧ୍ୟଯୁଗରେ ପୃଥିବୀର ସର୍ବତ୍ର କାବ୍ୟକବିତା ଜନପ୍ରିୟତା ଲାଭ କରିଥିଲା। ସମ୍ଭବତଃ ଏଥିପାଇଁ ସେହି ସମୟରେ ପୃଥିବୀର ଅଧିକାଂଶ ସାହିତ୍ୟରେ କଥା-ସାହିତ୍ୟର ଆଶାନୁରୂପ ପ୍ରଗତି ହୋଇ ପାରିନଥିଲା। ଏହାପରେ ୧୮ଶ ଶତାବ୍ଦୀର ମଧ୍ୟଭାଗରୁ ପୃଥିବୀ-ସାହିତ୍ୟରେ ଆଧୁନିକ କ୍ଷୁଦ୍ରଗଳ୍ପର ସୂତ୍ରପାତ ହୋଇଅଛି

ବୋଲି ଆଲୋଚକମାନେ ମତ ବ୍ୟକ୍ତ କରିଥାନ୍ତି । ଆଧୁନିକ ସାହିତ୍ୟର ବିଭିନ୍ନ ବିଭବ ମଧ୍ୟରେ କଥା-ସାହିତ୍ୟ ଜନପ୍ରିୟତା ଦୃଷ୍ଟିରୁ ଅଗ୍ରଗଣ୍ୟ । ପୃଥିବୀର ପ୍ରତ୍ୟେକ ପ୍ରତିଷ୍ଠାପନ୍ନ ସାହିତ୍ୟରେ ପ୍ରତି ସପ୍ତାହରେ ଅସଂଖ୍ୟ କ୍ଷୁଦ୍ରଗଳ୍ପ ରଚିତ ଓ ପ୍ରକାଶିତ ହେଉଅଛି । ଆଧୁନିକ ଯୁଗରେ ସ୍ୱଳ୍ପସମୟ ମଧ୍ୟରେ ପାଠକର ପଠନ ସ୍ପୃହାକୁ ପରିତୃପ୍ତ କରିବାଲାଗି କ୍ଷୁଦ୍ରଗଳ୍ପ ପ୍ରକୃଷ୍ଟ ମନେ ହୋଇଥାଏ । ତା'ଛଡ଼ା କ୍ଷୁଦ୍ରଗଳ୍ପ ମଧ୍ୟରେ ଆଧୁନିକ ଯୁଗର ନାନା, ଭାବନା, ଅଭିଜ୍ଞତା ଓ ଉପଲବ୍ଧି ମଧ୍ୟ ସାର୍ଥକଭାବେ ରୂପାୟିତ ହୋଇଥାଏ ।

ଆଧୁନିକ କ୍ଷୁଦ୍ରଗଳ୍ପ ପ୍ରାଚୀନ ଲୋକକଥା ଓ କାହାଣୀର କ୍ରମପରିଣାମ ହେଲେ ହେଁ ଆଧୁନିକ ଯୁଗର କ୍ଷୁଦ୍ରଗଳ୍ପ ଓ ପ୍ରାଚୀନ ଯୁଗର କାହାଣୀ ବା ଲୋକ-କଥା ପ୍ରଭୃତି ସମପର୍ଯ୍ୟାୟଭୁକ୍ତ ନୁହନ୍ତି । କାହାଣୀ ବା ଲୋକକଥା ମୁଖ୍ୟତଃ ଅଲୀକ, ଅବାସ୍ତବ, କଳ୍ପନାଶ୍ରୟୀ ବିଷୟବସ୍ତୁକୁ ନେଇ ଗଠିତ; ଏଣୁ ତହିଁରେ କାଳ୍ପନିକ କଥାବସ୍ତୁର ପ୍ରାଧାନ୍ୟ ସ୍ୱୀକୃତ । ମାତ୍ର ଆଧୁନିକ କ୍ଷୁଦ୍ରଗଳ୍ପ ମୁଖ୍ୟତଃ ବାସ୍ତବ ଜୀବନର କଥାବସ୍ତୁକୁ ନେଇ ରଚିତ ହୋଇଥାଏ । ଏକମାତ୍ର ଆକାରର କ୍ଷୁଦ୍ରତା କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ମଧ୍ୟରେ ପାର୍ଥକ୍ୟ-ନିର୍ଦ୍ଦେଶକ ଗୁଣ ନୁହେଁ । ଅତୀତରେ ସମୟରେ ଶେଷ କରିଦେଲାଭଳି ଗଦ୍ୟରେ ରଚିତ ବିଷୟକୁ କ୍ଷୁଦ୍ରଗଳ୍ପ ବୋଲି ଅତୀତରେ ଗ୍ରହଣ କରାଯାଉଥିଲା । (୧) ମାତ୍ର କ୍ଷୁଦ୍ରଗଳ୍ପ ଏକସୃଷ୍ଟା

(୧) Story is a prose narrative requiring from an hour to one cr two hours in its perusal -Edgar Alan Poe.

ବିଶିଷ୍ଟ ହୋଇପାରେ, ଏକାଧିକ ଧାରା ସୃଷ୍ଟି ବିଶିଷ୍ଟ ମଧ୍ୟ ହୋଇ-ପାରେ । ସେହିପରି କ୍ଷୁଦ୍ରଗଳ୍ପ ଉପନ୍ୟାସର ସଂକ୍ଷିପ୍ତ ସଂସ୍କରଣ ନୁହେଁ କିମ୍ବା ଉପନ୍ୟାସ କ୍ଷୁଦ୍ରଗଳ୍ପର ପରିବର୍ଦ୍ଧିତ ସଂସ୍କରଣ ନୁହେଁ । କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ଉଭୟେ କଥାସାହିତ୍ୟର ଅଙ୍ଗୀଭୂତ ହେଲେହେଁ ଉଭୟର ଶିଳ୍ପଗତ ପରସ୍ପରଠାରୁ ପୃଥକ ।

କ୍ଷୁଦ୍ରଗଳ୍ପରେ ଲେଖକ ଜୀବନର ଖଣ୍ଡାଂଶକୁ ରୂପଦେବାକୁ ସଚେଷ୍ଟ, ମାତ୍ର ଉପନ୍ୟାସରେ ଜୀବନର ପୂର୍ଣ୍ଣାଙ୍ଗ ରୂପ ଚିତ୍ରଣ ଲେଖକଙ୍କ ମୁଖ୍ୟ ଉଦ୍ଦେଶ୍ୟ । କ୍ଷୁଦ୍ରଗଳ୍ପରେ ଜୀବନର ଏକ ବିଶିଷ୍ଟ ମୁହୂର୍ତ୍ତ, ଏକ ବିଶିଷ୍ଟ ପରିବେଶ ମଧ୍ୟରେ କିପରି ଲେଖକଙ୍କଦ୍ୱାରା ପ୍ରତ୍ୟକ୍ଷୀଭୂତ ହୋଇଅଛି ତାହାର ଚିତ୍ରଣ ଦେଖିବାକୁ ମିଳିଥାଏ । ମାତ୍ର ଉପନ୍ୟାସରେ ସାଧାରଣତଃ ବହୁ ଚରିତ୍ରର ପାରସ୍ପରିକ ସମ୍ପର୍କରୁ ଉଦ୍ଭୂତ ଘଟଣାର ପରମ୍ପରା ତାର ପରିଣାମ ଓ ସମ୍ପ୍ରସାରିତ ବିବରଣୀ ଚିତ୍ରିତ ହୋଇଥାଏ । "ଗୀତି କବିତା ଭଳି କ୍ଷୁଦ୍ରଗଳ୍ପ ଏକମୁଖୀ—ଗାଢ଼-ନିବଦ୍ଧ ଆଙ୍ଗିକର ସହାୟତାରେ ଏକ ବିଶେଷ ସତ୍ୟ ବା ଏକ ବିଶେଷ ମାନସିକତା (mood) ଉପରେ ଆଲୋକ ପ୍ରକ୍ଷେପ କରେ ।"

ଟର୍ଚ୍ଚଲାଇଟର ଆଲୋକ ଯେପରି ଅନ୍ଧକାରାବୃତ ସ୍ଥାନ ମଧ୍ୟରୁ କେବଳ ସୀମାବଦ୍ଧ ସ୍ଥାନକୁ ଉଦ୍ଭାସିତ କରିଥାଏ, କ୍ଷୁଦ୍ରଗଳ୍ପ ରଚୟିତା ସେହିପରି ଜୀବନର ବହୁ ଘଟଣା ମଧ୍ୟରୁ ଗୋଟିଏ ବିଶିଷ୍ଟ ଘଟଣା ଅବଲମ୍ବନ କରି ତାହା ମାଧ୍ୟମରେ ବର୍ଣ୍ଣିତ ଚରିତ୍ରର ବିଶିଷ୍ଟତାକୁ ପ୍ରକଟିତ କରନ୍ତି । ଏଣୁ କ୍ଷୁଦ୍ରଗଳ୍ପ ଲେଖକଙ୍କ ପକ୍ଷେ ସଂଯମ, ନିର୍ବାଚନ ଓ ପରିବର୍ଜନ ବିଷୟରେ ସବିଶେଷ ସଜାଗ ହେବାକୁ ପଡ଼େ । କ୍ଷୁଦ୍ରଗଳ୍ପରେ ଅନାବଶ୍ୟକ ଚରିତ୍ର, ପରିବେଶ-

ବର୍ଣ୍ଣନା ଓ ସଂଳାପକୁ କ୍ରମିକଭାବେ ପରିବର୍ଜନ କରିବାକୁ ପଡ଼ିଥାଏ । ଆକାରଗତ କ୍ଷୁଦ୍ରତା ଯୋଗୁଁ ମଧ୍ୟ କ୍ଷୁଦ୍ରଗଳ୍ପରେ ବହୁ ଘଟଣା ସମାବେଶ ବା ବହୁ ଚରିତ୍ରର ସମାବେଶ ସମ୍ଭବପର ନୁହେଁ । ତା'ଛଡ଼ା ଏହିସବୁ ବିଷୟକୁ କ୍ଷୁଦ୍ରଗଳ୍ପରେ ସ୍ଥାନଦେଲେ କ୍ଷୁଦ୍ରଗଳ୍ପର ମୁଖ୍ୟ ଉଦ୍ଦେଶ୍ୟ ବ୍ୟାହତ ହୋଇଥାଏ; ଏକରସ ପରିଣାମ (unity of effect) ସମ୍ପାଦନ ସମ୍ଭବପର ହୋଇପାରେ ନାହିଁ । ଏଣୁ ଗଳ୍ପରେ ଏକକେନ୍ଦ୍ରାଭିମୁଖିନତା ଲାଗି କଥାକାର ସର୍ବଦା ଯତ୍ନଶୀଳ ହୁଅନ୍ତି । *

କ୍ଷୁଦ୍ରଗଳ୍ପର ପ୍ରାରମ୍ଭ ଓ ପରିଣତି ବିଷୟରେ ମଧ୍ୟ ଲେଖକଙ୍କୁ ସବିଶେଷ ସତର୍କତା ଓ କଳା-କୌଶଳ ଅବଲମ୍ବନ କରିବାକୁ ପଡ଼ିଥାଏ । ଲେଖକ କ୍ଷୁଦ୍ରଗଳ୍ପକୁ ଚିତ୍ତାକର୍ଷକ କରିବାଲାଗି ଯେପରି ନାଟକୀୟ ଢଙ୍ଗରେ କଥାବସ୍ତୁର ଉପସ୍ଥାପନା କରନ୍ତି, ସେହିପରି ସଚନାତ୍ମକ ପରିଣତିରେ କଥାବସ୍ତୁର ଉପସଂହାର କରି ଥାଆନ୍ତି । କ୍ଷୁଦ୍ରଗଳ୍ପର କ୍ଷୁଦ୍ର ପରିସର ମଧ୍ୟରେ ବର୍ଣ୍ଣିତବ୍ୟ ଚରିତ୍ରମାନଙ୍କର ସମଗ୍ର ବିଷୟ ବର୍ଣ୍ଣନା ଅସମ୍ଭବ । ଏଣୁ ହଠାତ୍ ଏକ ବିଶେଷ ମୁହୂର୍ତ୍ତରେ କଥାବସ୍ତୁର ସମାପ୍ତିରେଖା ଟାଣିବାକୁ ଲେଖକ ବାଧ୍ୟ ।

ଊନବିଂଶ ଶତାବ୍ଦୀକୁ କଥାସାହିତ୍ୟର ସ୍ୱର୍ଣ୍ଣଯୁଗ କୁହାଯାଇ ପାରେ । ଫ୍ରାନ୍ସ ଦେଶର ସାହିତ୍ୟିକମାନଙ୍କ ଦ୍ୱାରା ଏହି ଶତାବ୍ଦୀରେ

* It should impress us as absolutely clear in out line, well proportioned, full enough for the purpose, yet without the slightest suggestion of crowding, and within its frame work complete. – (Hudson,)

ମୁଖ୍ୟତଃ କଥାସାହିତ୍ୟର ସବିଶେଷ ବିକାଶ ସାଧିତ ହୋଇଥିଲା । ସେମାନଙ୍କ ମଧ୍ୟରୁ ବାଲଜାକ୍, ଭିକ୍ଟର ହ୍ୟୁଗୋ, ଆଲେକଜାଣ୍ଡାର ଡୁମା, ଏମିଲ ଜୋଲା, ଅନାତୋଲ ଫ୍ରାନ୍ସ, ମୋପାସାଁ ପ୍ରଭୃତିଙ୍କ ନାମ ବିଶ୍ୱ ବିଶ୍ରୁତ । ରୁଷିଆରେ ମଧ୍ୟ ତୁର୍ଗେନିଭ, ଗୋଗୋଲ, ଦସ୍ତୋଭସ୍କି, ଟଲଷ୍ଟୟ, ଶେକଫ ଏବଂ ଗୋର୍କୀଙ୍କରେ ଗଳ୍ପ ରଚନା କରି ବିଶ୍ୱର ଅମର କଥାଶିଳ୍ପୀଭାବେ ସୁପ୍ରସିଦ୍ଧ । ଇଂରାଜୀ ସାହିତ୍ୟରେ ସ୍କଟ, ଡିକେନ୍ସ, ଥ୍ୟାକରେ, ଜର୍ଜ ଏଲିଅଟ୍, ହାର୍ଡି ପ୍ରଭୃତି ଲେଖକଗଣ ବହୁ କଥାସାହିତ୍ୟ ରଚନାକରି ଅମରତ୍ୱ ଲାଭ କରିଅଛନ୍ତି ।

ମନୁଷ୍ୟର ବିବିଧ ଜଟିଳ ଭାବନା ଓ ତାର ବିଚିତ୍ର ଅଭିବ୍ୟକ୍ତି ଯୋଗୁ ଆଧୁନିକ କ୍ଷୁଦ୍ରଗଳ୍ପର ଶ୍ରେଣୀବିଭାଗ ଅତୀବ କଷ୍ଟସାଧ୍ୟ । ତଥାପି ମୋଟାମୋଟିଭାବେ କ୍ଷୁଦ୍ରଗଳ୍ପକୁ ୧—ଘଟଣାପ୍ରଧାନ; ୨—ଚରିତ୍ରାଶ୍ରୟୀ; ୩—ସମାଜ ସମସ୍ୟାମୂଳକ; ୪—ମନସ୍ତାତ୍ତ୍ୱିକ; ୫—ବୈଜ୍ଞାନିକ; ୬—ହାସ୍ୟରସାତ୍ମକ; ୭—ଉଦ୍ଭଟ ବା ଅତିପ୍ରାକୃତ; ୮—ରୂପକଧର୍ମୀ ( Symbolic), ୯—ଐତିହାସିକ; ୧୦—ଗାର୍ହସ୍ଥ୍ୟ; ୧୧—ମାନବେତର; ୧୨—ଅପରାଧ-ରହସ୍ୟ-ଭେଦମୂଳକ ( Detective ); ୧୩—ବିଦେଶୀ ପରିବେଶାତ୍ମକ ଭେଦରେ ବହୁ ଭାଗରେ ବିଭକ୍ତ କରାଯାଇଥାଏ ।

## ଓଡ଼ିଆ କ୍ଷୁଦ୍ରଗଳ୍ପର ପୃଷ୍ଠଭୂମି—

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପଦ୍ୟରେ ରଚିତ କ୍ଷୁଦ୍ର ଉପାଖ୍ୟାନ, ବୃତ୍ତାନ୍ତ (Anecdote) କଥା (tale) ସମନ୍ୱିତ ରଚନାର ଅଭାବ ନାହିଁ । ଓଡ଼ିଶାର ପ୍ରଚଳିତ ବହୁ ଓଷା, ବ୍ରତ

କଥାରେ ମଧ୍ୟ ଗଳ୍ପର ମୌଳିକ ରୂପ ନିହିତ । ତନ୍ମଧ୍ୟରୁ କେତେକ ମଧ୍ୟ ଗଦ୍ୟରେ ଲିଖିତ । ଏହାଛଡ଼ା ଯାଲଗୀତରେ ମଧ୍ୟ ଦେବତାଙ୍କ ମାହାତ୍ମ୍ୟସୂଚକ ବହୁ ଉପାଖ୍ୟାନ ପରିଦୃଷ୍ଟ ହୁଏ । ଶିବଦାସଙ୍କ ରଚିତ 'ବତିଶ ସିଂହାସନ', ବଳରାମଦାସଙ୍କ 'ବଉଳାଗାଈ' ଓ ଯଶୋବନ୍ତଙ୍କ 'ଗୋବିନ୍ଦଚନ୍ଦ୍ର' ପ୍ରଭୃତି ଗଳ୍ପ ରଚନାର ଅନ୍ୟତମ ଦୃଷ୍ଟାନ୍ତ । ଶ୍ରୀମନ୍ଦିରର 'ମାଦଳାପାଞ୍ଜିରେ'ମଧ୍ୟ ଵୃଦ୍ଧ ମାଠିଆ ମିଶ୍ର, ଚନ୍ଦ୍ରଚୂଡ଼ର ବାହିନୀପତି, ଚୋଡ଼ଗଙ୍ଗଦେବ, ଗଙ୍ଗେଶ୍ୱରଦେବଙ୍କ ସମ୍ପର୍କରେ ବହୁ ବୃତ୍ତାନ୍ତ ଗଦ୍ୟରେ ଲିପିବଦ୍ଧ ହୋଇଥିବା ଦେଖାଯାଏ । ଅଷ୍ଟାଦଶ ଶତାବ୍ଦୀର କବି ଯାନକୃଷ୍ଣଙ୍କ 'ପ୍ରସ୍ତାବସିନ୍ଧୁ'ରେ ବହୁ ନୀତିଶିକ୍ଷାମୂଳକ କ୍ଷୁଦ୍ର କାହାଣୀ ପଦ୍ୟରେ ବର୍ଣ୍ଣିତ ହୋଇଅଛି । ମାତ୍ର ସ୍ୱାଧୀନଭାବେ ଗଦ୍ୟରେ ଗଳ୍ପ ଲେଖିବାରେ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ବ୍ରଜନାଥ ବଡ଼ଜେନାଙ୍କ ଉଦ୍ୟମ ଓଡ଼ିଆ ସାହିତ୍ୟରେ ଅନନ୍ୟ ଓ ଅଭିନବ । ସଂସ୍କୃତ 'ହିତୋପଦେଶ', 'ପଞ୍ଚତନ୍ତ୍ର' ରୀତିରେ ସେ ଗଳ୍ପ ରଚନାରେ ବ୍ରତୀ ହେଲେହେଁ ଓଡ଼ିଶାରେ ପ୍ରଚଳିତ ଲୋକଗଳ୍ପ ତାହାଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା । ନିଜର ଉଦ୍ଦେଶ୍ୟ ବିଷୟରେ ସମ୍ପୂର୍ଣ୍ଣ ସଚେତନ ହୋଇ ସେ କଥା-ସାହିତ୍ୟ ସୃଷ୍ଟି କରିଥିଲେ । 'ଦେଶ ଭାଷାରେ', 'କଥା' ଲେଖିବାକୁ ଯାଇ ଚତୁରବିନୋଦ ଗ୍ରନ୍ଥାରମ୍ଭରେ ସେ ଏକ ସଂସ୍କୃତ ଶ୍ଳୋକ ଉଲ୍ଲେଖ କରିଥିଲେ—

"ମିଥ୍ୟାଗ୍ରନ୍ଥ ପ୍ରବନ୍ଧେନ ମନୋ ହରତି ଯା ଭୃଶଂ
ନାନା କୌତୁକହାସ୍ୟାଦ୍ୟୈଃ ସା କଥେତ୍ୟଭିଧୀୟତେ ।"

ଅର୍ଥାତ୍ ମନୋହରକାରୀ ଅଳୀକ, ଅବାସ୍ତବ-କଳ୍ପନା ଓ କୌତୁକ ହାସ୍ୟରସାତ୍ମକ ବିଷୟହିଁ 'କଥା' ନାମରେ ଅଭିହିତ ।

ତାହାଙ୍କ ବିନୋଦପ୍ରଦ 'ଚତୁର ବିନୋଦ' କଥା-ଗ୍ରନ୍ଥର ପ୍ରୀତି-ବିନୋଦ, ନୀତି-ବିନୋଦ, ରସ-ବିନୋଦ, ହାସ୍ୟ-ବିନୋଦ ଏହିପରି ଚାରିଗୋଟି ବିଭାଗ ଥିଲେହେଁ ପ୍ରତ୍ୟେକଟି ବିଭାଗରେ ବହୁ ଉପାଖ୍ୟାନ ମୂଳ ଗଳ୍ପ ସହିତ ଉପଲକ୍ଷ୍ୟ ଛଳରେ ସୁକୌଶଳରେ ଗ୍ରଥିତ ହୋଇଅଛି । ଗଳ୍ପଗୁଡ଼ିକରେ ଲେଖକ ସମସ୍ୟାସୃଷ୍ଟି ଓ ତାର ସମାଧାନ, ଆକସ୍ମିକତା, ସନ୍ଦେହ, ଦ୍ୱନ୍ଦ୍ୱ, ଉତ୍କଣ୍ଠା ପ୍ରଭୃତି ସୃଜାତ କରିବାରେ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି । 'ପ୍ରୀତି-ବିନୋଦ'ରେ ଛଅଟି ଉପଦେଶାତ୍ମକ ଗଳ୍ପ ଥିଲେହେଁ ତାହାଙ୍କ ଅନ୍ୟାନ୍ୟ ଗଳ୍ପରେ ସବିଶେଷ ଉପଦେଶାତ୍ମକତା ପରିଲକ୍ଷିତ ହୁଏନାହିଁ ।

କବିସମ୍ରାଟ ବଳଦେବ ରଥଙ୍କ 'ହାସ୍ୟ-କଲ୍ଲୋଳ' ଗଦ୍ୟରେ ରଚିତ ଏକ ଉପାଖ୍ୟାନ; ଏଥିରେ ଆଧୁନିକ କ୍ଷୁଦ୍ରଗଳ୍ପର ଏକ-କେନ୍ଦ୍ରାଭିମୁଖିନତା ବା ପରିଣତିରେ ସୂଚନାତ୍ମକତା ପରିଲକ୍ଷିତ ହେଉ ନଥିଲେ ହେଁ, ଅତିରଞ୍ଜନ ଓ ଉଦ୍ଭଟ କଳ୍ପନା ଦ୍ୱାରା ବିଚିତ୍ର ପରିବେଶ ଓ ଆଚରଣର ବର୍ଣ୍ଣନା ମାଧ୍ୟମରେ ଲେଖକ ରସସୃଷ୍ଟିର ପ୍ରୟାସ କରିଅଛନ୍ତି । ସ୍ଥୂଳତଃ ପାଶ୍ଚାତ୍ୟ କ୍ଷୁଦ୍ରଗଳ୍ପରୀତି ଓଡ଼ିଆରେ ଅନୁସୃତ ହେବା ପୂର୍ବରୁ ଏହିସବୁ ରଚନା ଓଡ଼ିଆ ସାହିତ୍ୟରେ ରଚିତ ହୋଇଥିଲା ।

## ଓଡ଼ିଆ କ୍ଷୁଦ୍ରଗଳ୍ପର ପ୍ରଥମ ପର୍ଯ୍ୟାୟ—

ଫକୀରମୋହନ ଆଧୁନିକ କ୍ଷୁଦ୍ରଗଳ୍ପର ଆଦିସ୍ରଷ୍ଟା । ଜୀବନର ଶେଷ ଦୁଇ ଦଶକ ମଧ୍ୟରେ ସେ ତାଙ୍କର ସରସ, ଚିର-ସ୍ମରଣୀୟ ଗଳ୍ପଗୁଡ଼ିକ ରଚନା କରିଥିଲେ । ଫକୀରମୋହନଙ୍କ

ଗଳ୍ପମାନଙ୍କରେ ମୁଖ୍ୟତଃ ଆମେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବବର୍ତ୍ତୀ ଉତ୍କଳୀୟ ସମାଜଜୀବନର ପ୍ରତିଫଳନ ଦେଖିବାକୁ ପାଉଥାଉ । ପୂର୍ବରୁ ଫକୀରମୋହନଙ୍କ ଗଳ୍ପ ରଚନା ସମ୍ପର୍କରେ ଆଲୋଚନା କରାଯାଇଥିବାରୁ ଏଠାରେ ତାହାର ବର୍ଣ୍ଣନା ଅନାବଶ୍ୟକ । ଫକୀରମୋହନଙ୍କ ସମକାଳରେ ଓଡ଼ିଶାର ପ୍ରଚଳିତ ଗ୍ରାମ୍ୟ-ଗଳ୍ପ ବା କାହାଣୀମାନଙ୍କୁ ସଂଗ୍ରହ କରିବାର ପ୍ରଚେଷ୍ଟା ହୋଇଥିଲା । ଏ ଦିଗରେ ଗୋପାଳଚନ୍ଦ୍ର ପ୍ରହରାଜ (ଉତ୍କଳ କାହାଣୀ), ରାଘବାନନ୍ଦ ଦାସଙ୍କ ସହଧର୍ମିଣୀ (କଥାଲହରୀ-ସଙ୍କଳୟିତ୍ରୀ ଜନୈକ କରଣ ମହିଳା)ଙ୍କ ନାମ ଉଲ୍ଲେଖଯୋଗ୍ୟ । ପ୍ରଥମ ବିଶ୍ୱଯୁଦ୍ଧ ମଧ୍ୟରେ ଓଡ଼ିଆରେ ମୁଷ୍ଟିମେୟ ଲେଖକ ସାହିତ୍ୟ-ପତ୍ରିକା ମାଧ୍ୟମରେ ଗଳ୍ପ ରଚନାରେ ମନୋନିବେଶ କରିଥିଲେହେଁ ଦୀର୍ଘକାଳ ପର୍ଯ୍ୟନ୍ତ କୌଣସି ଲେଖକ କଥାଶିଳ୍ପୀ ଫକୀରମୋହନଙ୍କ ପ୍ରଭାବରୁ ନିଜକୁ ମୁକ୍ତ କରିପାରି ନଥିଲେ ।

ଏହି ସମୟର ଅଧିକାଂଶ କ୍ଷୁଦ୍ର ଗଳ୍ପ ମୁଖ୍ୟତଃ 'ମୁକୁର', 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ଓ ସେଗୁଡ଼ିକରେ ସୂକ୍ଷ୍ମ ବ୍ୟଞ୍ଜନା ବା ସଂଯମ ପରିବର୍ତ୍ତେ କାହାଣୀର ଚମତ୍କାରିତା ଓ ଉପାଖ୍ୟାନର ପ୍ରାଧାନ୍ୟ ପରିଲକ୍ଷିତ ହୁଏ ।

ଏହି ସମୟରୁ ଐତିହାସିକ ଘଟଣାବଳୀକୁ ଅବଲମ୍ବନ କରି ଓଡ଼ିଆରେ ଗଳ୍ପ ରଚନାର ସୂତ୍ରପାତ ହୋଇଥିଲା । ଐତିହାସିକ ଗଳ୍ପ ରଚୟିତାଭାବେ ରାମଚନ୍ଦ୍ର ଆଚାର୍ଯ୍ୟ, ବାସୁଦେବ ମହାପାତ୍ର, ଦୟାନିଧି ମିଶ୍ର ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ଅଦ୍ଭୁତ ପରିଣାମ' (ପ୍ର·ପ୍ର: ୧୯୧୫) ଆଲୋଚ୍ୟ କାଳ ମଧ୍ୟରେ ପ୍ରକାଶିତ ଓ ଏହା 'ଗଳ୍ପ' ନାମରେ ଲେଖକଙ୍କ ଦ୍ୱାରା

ଚହ୍ନିତ ହୋଇଥିଲେହେଁ ଏହା ଏକ ଉପନ୍ୟାସ ପର୍ଯ୍ୟାୟଭୁକ୍ତ ରଚନା । ସେହିପରି ନନ୍ଦକିଶୋର ମଧୁସୂଦନ ଦାଶ 'ହେମମାଳା' ନାମକ ଏକ ଐତିହାସିକ ଗଳ୍ପ ଲେଖିଥିଲେହେଁ ତାହା ଏକ ଉପନ୍ୟାସର ସଂକ୍ଷିପ୍ତ ସଂସ୍କରଣ । ନନ୍ଦକିଶୋର ବଳଙ୍କ ରଚିତ ଏକମାତ୍ର ଗଳ୍ପ 'ଲକ୍ଷ୍ମୀ' (ମୁକୁର ୭ମ ଭାଗ-୧୯୧୩) ଏକ ସାମାଜିକ 'ସତ୍ୟ ଘଟଣା ମୂଳକ' ଗଳ୍ପ ହେଲେହେଁ ତାହାର କଥାବସ୍ତୁ ଓ ଫକୀରମୋହନଙ୍କ 'ଢରେଇ ବଣାଲ' ଗଳ୍ପର କଥାବସ୍ତୁ ମଧ୍ୟରେ କୌଣସି ଭିନ୍ନତା ପରିଲକ୍ଷିତ ହୁଏନାହିଁ । ସମ୍ଭବତଃ ଉଭୟ ଲେଖକ ତତ୍‌କାଳୀନ କୌଣସି ଏକ ସତ୍ୟ ଘଟଣାକୁ ଅନୁସରଣ କରି ଦୁଇଟି ଗଳ୍ପ ରଚନା କରିଅଛନ୍ତି ।

## ଓଡ଼ିଆ କ୍ଷୁଦ୍ରଗଳ୍ପର ଦ୍ୱିତୀୟ ପର୍ଯ୍ୟାୟ (୧୯୧୮—୪୩)

ଫକୀର ମୋହନଙ୍କ ବିୟୋଗ ବା ୧ମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ପଚିଶ ବର୍ଷ ମଧ୍ୟରେ ଓଡ଼ିଆ କ୍ଷୁଦ୍ର ଗଳ୍ପ କ୍ରମଶଃ ପ୍ରତିଷ୍ଠା ଓ ଜନପ୍ରିୟତା ଅର୍ଜନ କରିବାକୁ ସମର୍ଥ ହୋଇଥିଲା । କ୍ଷୁଦ୍ରଗଳ୍ପ ପତ୍ରିକାର ସଂକୁଚିତ ପରିସରରୁ ମୁକ୍ତିଲାଭ କରି ସ୍ୱତନ୍ତ୍ର ଓ ପୁସ୍ତକାକାରରେ ବିହାର କରିବାର ଗୌରବ ଲାଭ କଲା । ବହୁ ଲେଖକ ମଧ୍ୟ କ୍ଷୁଦ୍ର-ଗଳ୍ପ ରଚନା କରିବାରେ ମନୋନିବେଶ କରିଥିଲେ । ସେମାନଙ୍କ ମଧ୍ୟରୁ ଚନ୍ଦ୍ରଶେଖର ନନ୍ଦ (ଚଷ), ଚିନ୍ତାମଣି ମହାନ୍ତି, ଲକ୍ଷ୍ମୀକାନ୍ତ ମହାପାତ୍ର, ଦୟାନିଧି ମିଶ୍ର (କଥା କଦମ୍ବ, ଗୋଦାବରୀଶ ମିଶ୍ର, ଦିବ୍ୟସିଂହ ପାଣିଗ୍ରାହୀ (ଅମୃତ କଙ୍କଣ), ରମାରଞ୍ଜନ ମହାନ୍ତି (ଧାର-୧୯୩୦) ଉପେନ୍ଦ୍ର ପ୍ରସାଦ ମହାନ୍ତି, ବାଙ୍କନିଧି ପଟ୍ଟନାୟକ (ଧୂପଛାୟା), ଗୋଦାବରୀଶ ମହାପାତ୍ର (ପଲ୍ଲୀଛାୟା), ଉପେନ୍ଦ୍ରପ୍ରସାଦ ଦାସ ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ ।

ଉତ୍କଳ-ସାହିତ୍ୟ, ମୁକୁର, ସତ୍ୟବାଦୀ, ପ୍ରଜାତନ୍ତ୍ର, ବାରୁଣୀ, ସହକାର, ନବଭାରତ, ଚତୁରଙ୍ଗ, ଡଗର, ପ୍ରଗତି, ଆଦି ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ପୂର୍ବୋକ୍ତ ଲେଖକମାନଙ୍କର ବହୁ ଗଳ୍ପ ଆଲୋଚ୍ୟ କାଳମଧ୍ୟରେ ପ୍ରକାଶିତ ହୋଇଥିଲା । ଏହି ଗଳ୍ପ ଲେଖକମାନଙ୍କ ମଧ୍ୟରୁ ଅନେକେ ଅକାଳରେ କଥାସାହିତ୍ୟ ସୃଷ୍ଟି କ୍ଷେତ୍ରରୁ ବିଦାୟ ନେଇଅଛନ୍ତି ଓ ଅନେକେ ପରବର୍ତ୍ତୀ କାଳରେ ସେମାନଙ୍କ ନିରବଚ୍ଛିନ୍ନ ସୃଷ୍ଟିଶୀଳତା ଯୋଗୁଁ ଅଧିକତର ପ୍ରତିଷ୍ଠା ଅର୍ଜନ କରିଅଛନ୍ତି ।

ସାମ୍ପ୍ରତିକ ପ୍ରତିଷ୍ଠାପନ୍ନ ଗଳ୍ପ ଲେଖକମାନଙ୍କ ମଧ୍ୟରୁ ଅଧିକାଂଶ ୧୯୨୫ ପରଠାରୁ ଗଳ୍ପରଚନାରେ ବ୍ରତୀ ହୋଇଥିବାର ଜଣାଯାଏ । ଆଲୋଚ୍ୟ ସମୟର ଶେଷଭାଗରେ ଏ ଦେଶରେ ସ୍ୱାଧୀନତା ଆନ୍ଦୋଳନ, ଜନ-ଜାଗରଣ ବିବିଧ ରାଜନୈତିକ ମତବାଦର ପ୍ରଚାର ଫଳରେ ଲେଖକମାନଙ୍କ ମନରେ ଯେଉଁ ସଂଶୟ, ଅନିଶ୍ଚୟତା, ବିଦ୍ରୋହ ଓ ନୈରାଶ୍ୟବାଦ ପ୍ରକାଶ ପାଇଥିଲା ତାହା ଆଧୁନିକ କ୍ଷୁଦ୍ର ଗଳ୍ପ ସୃଷ୍ଟିରେ ପ୍ରଭୂତ ସାହାଯ୍ୟ କରିଥିଲା । ଏହି ସମୟର ଗଳ୍ପ ଲେଖକମାନଙ୍କ ମଧ୍ୟରୁ କାଳିନ୍ଦୀଚରଣ ପାଣିଗ୍ରାହୀ, ଅନନ୍ତପ୍ରସାଦ ପଣ୍ଡା (ସତ୍ୟଜିତ ଡନେ), ପ୍ରାଣକୃଷ୍ଣ ସାମଲ, ହରିଶ୍ଚନ୍ଦ୍ର ବଡ଼ାଳ, ରାଜକିଶୋର ପଟ୍ଟନାୟକ, ଗୋପୀନାଥ ମହାନ୍ତି, କାହ୍ନୁଚରଣ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ରାଜକିଶୋର ରାୟ ପ୍ରଭୃତି ସୁଖ୍ୟାତି ଅର୍ଜନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ କଥା-ସାହିତ୍ୟକୁ ସୁସମୃଦ୍ଧ ଓ ଜନାଦୃତ କରିଅଛନ୍ତି ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବ୍ୟବହିତ ପୂର୍ବରୁ ଓ ଯୁଦ୍ଧର ବିସ୍ତୃତ କାଳମଧ୍ୟରେ ସ୍ୱର୍ଗତ ଭଗବତୀଚରଣ ପାଣିଗ୍ରାହୀ, ଶଚିଦାନନ୍ଦ

ରାଜକିଶୋରଙ୍କ ଗଳ୍ପ ଗୁଡ଼ିକରୁ ଯୁଗ-ଚେତନା, ସାମାଜିକ ଅବିଚାର କୁସଂସ୍କାର ଓ ଶୋଷଣ ବିରୁଦ୍ଧରେ ପ୍ରତିବାଦର ପ୍ରଶ୍ନାତ୍ମକ ସ୍ୱର ଧ୍ୱନିତ ହେବା ଶୁଣିବାକୁ ମିଳିଥାଏ । ନିପୀଡ଼ିତ ଜନସାଧାରଣଙ୍କ ପ୍ରତି ଅନୁକମ୍ପା, ସାମାଜିକ କୁସଂସ୍କାର, ଅର୍ଥନୈତିକ ବୈଷମ୍ୟର କୁପରିଣାମ ପ୍ରତି ଅଙ୍ଗୁଳିନିର୍ଦ୍ଦେଶ ଏହି ଯୁଗର ଅନ୍ୟାନ୍ୟ ଗଳ୍ପ ରଚୟିତାମାନଙ୍କର ମଧ୍ୟ ଉଦ୍ଦେଶ୍ୟ ହୋଇଅଛି । ଅବଶ୍ୟ ସ୍ୱପ୍ନବାଦିତା, କଳ୍ପନା-ପ୍ରବଣତା, ନରନାରୀଙ୍କ ପାରସ୍ପରିକ ସମ୍ପର୍କର ନାନା ସମସ୍ୟା ସମ୍ପର୍କରେ ବହୁ ସଂଖ୍ୟକ ଗଳ୍ପ ଏହି ସମୟର ଲେଖକମାନେ ଲେଖିଅଛନ୍ତି । ମାତ୍ର ଏହି ସମୟର ଅଧିକାଂଶ ଗଳ୍ପ ଲେଖକଙ୍କ ଗଳ୍ପରେ ସ୍ପଷ୍ଟ ବିଦ୍ରୋହ ନୋହିଲେ ପ୍ରଶ୍ନମୂଳକତା ପରିଲକ୍ଷିତ ହୋଇଥାଏ ।

## ଯୁଦ୍ଧ ଓ ସ୍ୱାଧୀନତା ପରବର୍ତ୍ତୀ କ୍ଷୁଦ୍ର ଗଳ୍ପ—

୧୯୩୯ ମସିହାରୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ସୂତ୍ରପାତ ହୋଇଥିଲେହେଁ ଓଡ଼ିଶାର ଜାତୀୟଜୀବନରେ ତାହାର ପ୍ରଭାବ ୧୯୪୨-ଠାରୁ ସବିଶେଷ ଅନୁଭୂତ ହୋଇଥିଲା । ପ୍ରତ୍ୟକ୍ଷଭାବେ ଉତ୍କଳବାସୀ ଯୁଦ୍ଧଲୀଳାର ବିଭୀଷିକା ଅନୁଭବ କରି ନଥିଲେହେଁ ଅନ୍ନ, ବସ୍ତ୍ର, ଆଲୋକର ନିୟନ୍ତ୍ରଣ, ଉତ୍ପୀଡ଼ନ, ଅଭାବ, ଆତଙ୍କ ଓ ଆତ୍ମରକ୍ଷାର ଅସହାୟ ମୁହୂର୍ତ୍ତ ମଧ୍ୟରେ, ତଥା ୧୯୪୨ର ଦୁର୍ଭିକ୍ଷ, ଝଡ଼, ଭାରତଛାଡ଼ ଆନ୍ଦୋଳନ, ଜନଜାଗୃତି, ଇଂରେଜ ସରକାରଙ୍କ ଦମନ ଭିତରେ ଓଡ଼ିଶାର ଜାତୀୟ ଜୀବନ ଏକପ୍ରକାର ଉତ୍ତେଜିତ, ବିକ୍ଷୁବ୍ଧ ହୋଇ ପଡ଼ିଥିଲା । କାଗଜର ଅଭାବ, ମୁଦ୍ରଣଗତ ନିୟନ୍ତ୍ରଣ ଯୋଗୁ ଓଡ଼ିଆ ପତ୍ରପତ୍ରିକା ଓ ପୁସ୍ତକ ପ୍ରକାଶନକ୍ଷେତ୍ରରେ ଯୁଦ୍ଧ ସମୟରେ ଏକ ପ୍ରକାର ଜଡ଼ତାର ସୃଷ୍ଟି ହୋଇଥିଲା । ଏଣୁ

ଉତ୍କଳୀୟ ଗଳ୍ପ ଲେଖକମାନଙ୍କଦ୍ୱାରା ଯୁଦ୍ଧ ବିଷୟକ, ଯୁଦ୍ଧର ପୃଷ୍ଠଭୂମିକାରେ ରଚିତ ବା ଯୁଦ୍ଧର ପରିଣାମସୂଚକ ଗଳ୍ପ ଓଡ଼ିଆରେ ପର୍ଯ୍ୟାପ୍ତ ରଚିତ ହୋଇ ପାରିନାହିଁ । ତଥାପି କାଳିନ୍ଦୀଚରଣ ପାଣିଗ୍ରାହୀ, ନିତ୍ୟାନନ୍ଦ ମହାପାତ୍ର, ଗୋପୀନାଥ ମହାନ୍ତି,ରାଜକିଶୋର ରାୟ, ପ୍ରାଣବନ୍ଧୁ କର ପ୍ରଭୃତି ଲେଖକଗଣ ଏହାକୁ ପ୍ରତିଫଳିତ କରିବାରେ ଯଥାସାଧ୍ୟ ଚେଷ୍ଟା କରିଛନ୍ତି ।

ଏହିପରି ଯୁଦ୍ଧକାଳୀନ ପରିବେଶରେ ଓଡ଼ିଆ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ ସୁରେନ୍ଦ୍ର ମହାନ୍ତିଙ୍କ ଆବିର୍ଭାବ । ତାଙ୍କର ପ୍ରଥମ ଗଳ୍ପ 'ମଣିଷ ଓ ଅର୍ଥନୀତି', 'ଆରତି' ମାସିକ ପତ୍ରରେ ୧୯୪୨ରେ ପ୍ରକାଶିତ ହୋଇଥିଲା । ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ ଏହି ଯଶସ୍ୱୀ କଥାଶିଳ୍ପୀଙ୍କ ବିବିଧ ଗଳ୍ପ ସମ୍ଭାରରେ ସୁସମୃଦ୍ଧ ହୋଇଅଛି । କଥା-ବସ୍ତୁଗତ ତଥା ପ୍ରକାଶଭଙ୍ଗୀଗତ ବୈଚିତ୍ର୍ୟ ଓ ବିଭିନ୍ନ ପରୀକ୍ଷା ପ୍ରୟୋଗରେ କୃତିତ୍ୱ ତାହାଙ୍କ ଗଳ୍ପମାନଙ୍କରୁ ଉପଲବ୍ଧ ହୁଏ । ଯାନ୍ତ୍ରିକତାର କୁଫଳ, ଜାତିଗତ (ହିନ୍ଦୁ ମୁସଲମାନ) ବୈଷମ୍ୟର କୁପରିଣାମ, ଅମଲାତନ୍ତ୍ର ଓ ଜାତୀୟତାବୋଧର ସଙ୍ଘର୍ଷ, ଅର୍ଥ-ନୈତିକ ବୈଷମ୍ୟ ଓ ବଣିକ ମନୋବୃତ୍ତି ସମ୍ପନ୍ନ ସମାଜର କୁପରିଣାମ, ରାଜନୈତିକ ବିପ୍ଳବୀର ବିଚିତ୍ର ଜୀବନ, କିରାଣି ଜୀବନରେ ଅର୍ଥାଭାବ ଓ ପ୍ରଲୋଭନର ଦ୍ୱନ୍ଦ୍ୱ, ବେକାରର ଲକ୍ଷ୍ୟ—ଶୃଙ୍ଖଳା ଓ ନୀତିହୀନ ଜୀବନ, ବ୍ୟସ୍ତ କର୍ମବହୁଳ ଜୀବନରେ କଳାନୁରାଗ ଓ ସୁରୁଚିବୋଧର ଲାଞ୍ଛନା, ବନ୍ୟା, ଭୋଟ, ଜନସେବା, ରାଜନୀତି, ସାମାଜିକ ବିଷୟବସ୍ତୁ ତଥା ପୁରାଣ, ଇତିହାସ ଓ କିମ୍ବଦନ୍ତୀମୂଳକ ବହୁ ବିଷୟକୁ ଅବଲମ୍ବନ କରି ତାହାଙ୍କ ଗଳ୍ପଗୁଡ଼ିକ ରସମୟ । ତାହାଙ୍କୁ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ଅପ୍ରତିଦ୍ୱନ୍ଦ୍ୱୀ ଲେଖକ କହିଲେ ଅତ୍ୟୁକ୍ତି ହେବନାହିଁ ।

ଯଶସ୍ୱୀ କବି ସଚ୍ଚିଦାନନ୍ଦ ରାଉତରାୟ ମଧ୍ୟ ଆଧୁନିକ ଓଡ଼ିଆ ଗଳ୍ପ-ସାହିତ୍ୟକୁ ସମୃଦ୍ଧ କରିବାରେ ଅନ୍ୟତମ ଅଗ୍ରଣୀ କଳାକାର । ବିଦେଶୀ ଗଳ୍ପର ଅବଲମ୍ବନ ଓ ଅନୁସରଣରେ ସେ ଅନେକଗୁଡ଼ିଏ ଉପାଦେୟ ଗଳ୍ପ ରଚନା (ଛୁରି) କରିବା ସଙ୍ଗେ ସଙ୍ଗେ କେତେକ ମନସ୍ତାତ୍ତ୍ୱିକ, ସମସ୍ୟାମୂଳକ ଗଳ୍ପ ରଚନା କରିଅଛନ୍ତି । ତାଙ୍କର 'ମଶାଣିର ଫୁଲ', 'ମାଟିର ତାଜ' ଗଳ୍ପସଂକଳନସ୍ଥ ପ୍ରତ୍ୟେକଟି ଗଳ୍ପ ରସୋତ୍ତୀର୍ଣ୍ଣ ଗଳ୍ପଭାବେ ପ୍ରସିଦ୍ଧ । ତାହାଙ୍କ ଗଳ୍ପଗୁଡ଼ିକ ସଂଖ୍ୟା ଦୃଷ୍ଟିରୁ ସ୍ୱଳ୍ପ ହେଲେହେଁ 'ମାଟିର ତାଜ', 'ମଲ୍ଲିକଇଁ', 'ରଜାପୁଅ' 'ଅନ୍ଧାରୁଆ' ପ୍ରଭୃତି ଗଳ୍ପ ଶିଳ୍ପଦୃଷ୍ଟିରୁ ସାର୍ଥକ ।

ଏହାଛଡ଼ା ସାମ୍ପ୍ରତିକ ଗଳ୍ପରଚୟିତାଭାବେ ଯେଉଁମାନେ ପ୍ରସିଦ୍ଧି, ଜନପ୍ରିୟତା ଅର୍ଜନ କରିଛନ୍ତି ସେମାନଙ୍କ ମଧ୍ୟରୁ ପ୍ରାଣବନ୍ଧୁ କର, ଦେବ ମହାପାତ୍ର, ବାମାଚରଣ ମିତ୍ର, ବିଭୂତିଭୂଷଣ ତ୍ରିପାଠୀ, କମଳାକାନ୍ତ ଦାସ, ଫତୁରାନନ୍ଦ (ରାମଚନ୍ଦ୍ର ମିଶ୍ର), ମହାପାତ୍ର ନୀଳମଣି ସାହୁ, ବ୍ରହ୍ମାନନ୍ଦ ପଣ୍ଡା, ଜ୍ଞାନୀନ୍ଦ୍ର ବର୍ମା, ଶାନ୍ତନୁକୁମାର ଆଚାର୍ଯ୍ୟ, ରାଜକିଶୋର ମହାନ୍ତି, କିଶୋରୀଚରଣ ଦାସ, ଅଚ୍ୟୁତାନନ୍ଦ ପତି, ବିଭୂତିଭୂଷଣ ପଟ୍ଟନାୟକ, ଦୁର୍ଗାମାଧବ ମିଶ୍ର ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ ।

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟ କ୍ଷେତ୍ରରେ ବହୁ ଲେଖିକାଙ୍କର ଆବିର୍ଭାବ ହୋଇଅଛି । ନାରୀଜୀବନର ବହୁ ଦୁଃଖ-ସୁଖ, ଆଶା-ନିରାଶା, ପାରିବାରିକ ଜୀବନର ସରସ ମଧୁର ଚିତ୍ର ଅଙ୍କନରେ ଏମାନଙ୍କ ମଧ୍ୟରୁ ଅନେକେ ସୁଲେଖିକାଭାବେ ଉଚ୍ଚ ପ୍ରଶଂସିତ ହୋଇଅଛନ୍ତି । ସେମାନଙ୍କ ମଧ୍ୟରୁ ବସନ୍ତକୁମାରୀ ପଟ୍ଟନାୟକ (ପାଲଟା ଡେଉ), ବସନ୍ତକୁମାରୀ ଦେବୀ, ତ୍ରିବେଣୀ-

ମୋହନ, ମନୋରମା ମହାପାତ୍ର, କୁନ୍ତଳା ଆଚାର୍ଯ୍ୟ (ହିସାବଖାତା), ରାଜେଶ୍ୱରୀ ଦଳବେହେରା, କ୍ଷୀରୋଦ୍ରା କାନନଗୋ (ଧୂସର ଦିଗନ୍ତ) ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ ।

ବହୁ ବିଦେଶୀ ଗଳ୍ପକୁ ଓଡ଼ିଆରେ ଭାଷାନ୍ତରିତ ଓ ଅନୁସରଣକରି ଗଳ୍ପ ରଚନା କରିବାରେ, ଯୁଦ୍ଧ ପୂର୍ବବର୍ତ୍ତୀ କାଳରେ ଗୋଦାବରୀଶ ମହାପାତ୍ର, ନର୍ମଦା କର, ସୁପ୍ରଭା କର, ଗୋଦାବରୀଶ ମିଶ୍ର, ଲିଙ୍ଗରାଜ ମିଶ୍ର ପ୍ରଭୃତି ଯେଉଁ ଧାରା ପ୍ରବର୍ତ୍ତନ କରିଥିଲେ ଯୁଦ୍ଧୋତ୍ତର କାଳରେ ପ୍ରଭାସଚନ୍ଦ୍ର ଶତପଥୀ, ଲକ୍ଷ୍ମୀନାରାୟଣ ମହାନ୍ତି, ଗୋବର୍ଦ୍ଧନ ମିଶ୍ର, ରମେଶଚନ୍ଦ୍ର ମହାନ୍ତି, ରମେଶଚନ୍ଦ୍ର ଧଳ, ଗୋପାଳଚନ୍ଦ୍ର ମିଶ୍ର; ଅନସୂୟାପ୍ରସାଦ ପାଠକ ପ୍ରଭୃତି ସେହି ଧାରାକୁ ପରିପୁଷ୍ଟ କରୁଅଛନ୍ତି । ଓଡ଼ିଆରେ ବୈଜ୍ଞାନିକ ବିଷୟକୁ ଅବଲମ୍ବନ କରି ସବିଶେଷ ଗଳ୍ପ ରଚିତ ହୋଇନାହିଁ । ଏ ଦିଗରେ ଗୋକୁଳାନନ୍ଦ ମହାପାତ୍ରଙ୍କ 'ଉଡ଼ନ୍ତା ଥାଳିଆ' ଏକ ପ୍ରଶଂସନୀୟ ପଦକ୍ଷେପ ।

ଫକୀରମୋହନଙ୍କ ପରେ ଓଡ଼ିଆରେ ହାସ୍ୟରସାତ୍ମକ କ୍ଷୁଦ୍ର ଗଳ୍ପ ରଚନାର ଧାରା ଏକାନ୍ତ ମନ୍ଦୀଭୂତ ହୋଇ ଯାଇଥିଲା । ଏକମାତ୍ର ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଗଳ୍ପଗୁଡ଼ିକରେ ଆମ୍ଭେମାନେ ଲଘୁ ହାସ୍ୟରସର ଅଭିବ୍ୟକ୍ତି ଦେଖିବାକୁ ପାଇଥାଉ । ତାହାଙ୍କ 'ଦେହି ପଦପଲ୍ଲବମୁଦାରଂ'ସ୍ଥ ଦାଡ଼ିର କରାମତି, ଏଥର କାହାର ପାଳି, ଅନ୍ଧାରି ମଜା, ଜର୍ଜେଟ ଶାଢ଼ୀ ପ୍ରଭୃତି ସମସ୍ତ ଗଳ୍ପ ହାସ୍ୟରସାତ୍ମକ । ଲେଖକ ମୁଖ୍ୟତଃ ପରିବେଶ ଚିତ୍ରଣରେ, ବ୍ୟକ୍ତିବିଶେଷଙ୍କର ସ୍ଖଳନ, ଦୋଷତ୍ରୁଟି, ଅବସ୍ଥା ବିପର୍ଯ୍ୟୟର ବର୍ଣ୍ଣନା ମାଧ୍ୟମରେ ହାସ୍ୟରସ ସୃଷ୍ଟି କରିବାକୁ କ୍ଷମ ହୋଇ ଅଛନ୍ତି ।

ପରବର୍ତ୍ତୀ କାଳରେ ଉଦୟନାଥ ଷଡ଼ଙ୍ଗୀ 'ଦାକ୍ଷିଣ୍ୟକଳହେ-ବୈଚିତ୍ର', 'ସ୍ତ୍ରୀପୁଂ ଚରିତ' ପ୍ରଭୃତି ବହୁ ହାସ୍ୟରସାତ୍ମକ ଗଳ୍ପ ରଚନାରେ ମଧ୍ୟ ସଫଳକାମ ହୋଇ ଅଛନ୍ତି । ସମକାଳୀନ ଓଡ଼ିଆ ସାହିତ୍ୟରେ ଦେବ ମହାପାତ୍ର, ଫଲ୍ଗୁଣନନ୍ଦ, ମହାପାତ୍ର ନୀଳମଣି ସାହୁ, ଚୌଧୁରୀ ହେମକାନ୍ତ ମିଶ୍ର, ମୃଣାଳମୋହନ ମିଶ୍ର ପ୍ରଭୃତି ଲେଖକଗଣ ହାସ୍ୟରସାତ୍ମକ ଗଳ୍ପ ରଚନାରେ ନିୟୋଜିତ ।

ଏହାଛଡ଼ା ଓଡ଼ିଶାର ଅଧିକାଂଶ ଉପନ୍ୟାସ ଲେଖକ ମଧ୍ୟ ସାମୟିକ ଗଳ୍ପ ରଚନାରେ ମନୋନିବେଶ କରିଅଛନ୍ତି । ଗଳ୍ପ ରଚନାରେ ବ୍ରତୀଥିବା ସମକାଳୀନ ଲେଖକମାନଙ୍କ ଗଳ୍ପର ମୂଲ୍ୟାଙ୍କନ କରିବା ଅତୀବ କଷ୍ଟସାଧ୍ୟ । ସେମାନଙ୍କ ସୃଷ୍ଟିର ସମାପ୍ତି ସୂଚିତ ହୋଇ ନ ଥିବାରୁ ସେମାନଙ୍କ ଗଳ୍ପ ସମ୍ପର୍କରେ କୌଣସି ଅଭିମତ ଦେବା ସମ୍ଭବପର ନୁହେଁ । ଏହାଛଡ଼ା ବହୁ କ୍ଷୁଦ୍ରଗଳ୍ପ ଲେଖକ ସେମାନଙ୍କ ପ୍ରାଥମିକ ଗଳ୍ପ ରଚନାରେ ଉଜ୍ଜ୍ୱଳ ସମ୍ଭାବନାର ପ୍ରତିଶ୍ରୁତି ଦେଇଥିଲେହେଁ ପରବର୍ତ୍ତୀ କାଳରେ ସେମାନେ ଗଳ୍ପ ରଚନା କ୍ଷେତ୍ରରୁ ଅବ୍ୟାହତି ନେଇଛନ୍ତି । ବହୁ ଗଳ୍ପ ଲେଖକଙ୍କ ରଚନାବଳୀ ବିଗତ ଅର୍ଦ୍ଧଶତାବ୍ଦୀର ବିଭିନ୍ନ ଓଡ଼ିଆ ପତ୍ର ପତ୍ରିକାର ଜୀର୍ଣ୍ଣ ପୃଷ୍ଠାରେ ଶାୟିତ; ଏବେ ମଧ୍ୟ ସେସବୁ ସ୍ୱତନ୍ତ୍ର ପୁସ୍ତକାକାରରେ ପ୍ରକାଶ ପାଇ ନାହିଁ । ତଥାପି କେତେକ ଗଳ୍ପ ଲେଖକଙ୍କ ସମ୍ପର୍କରେ ଏକ ସଂକ୍ଷିପ୍ତ ଅଭିମତ ପ୍ରକାଶ କରାଯାଇ ପାରେ ।

ମୋଟାମୋଟି ଭାବେ ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଶାର ଅଧିକାଂଶ ଗଳ୍ପ ଲେଖକଙ୍କୁ ରୋମାଣ୍ଟିକ୍ ଧର୍ମୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱାଧୀନତା ପୂର୍ବବର୍ତ୍ତୀ ଗଳ୍ପ ଲେଖକ ପ୍ରାଣକୃଷ୍ଣ ସାମଲଙ୍କ 'ସାତସାପ' ସଂକଳନସ୍ଥ 'ଅସୀମା' ଓ ଅନ୍ୟାନ୍ୟ ଗଳ୍ପଗୁଡ଼ିକ ରୋମାଣ୍ଟିକ୍ ଧର୍ମାକ୍ରାନ୍ତ । ତହିଁରେ ସମାଜ-ସମସ୍ୟାର ରେଖାପାତ ଦେଖିବାକୁ

ମିଳେ ନାହିଁ । ନିତ୍ୟାନନ୍ଦ ମହାପାତ୍ରଙ୍କ ଗଳ୍ପମାନଙ୍କରେ ସମାଜ ସଚେତନ ବାସ୍ତବବାଦିତା ପରିଲକ୍ଷିତ ହେଲେ ହେଁ ତାଙ୍କର ସଂଖ୍ୟାଧିକ ଗଳ୍ପରେ ଗୂଢ଼ ଦାର୍ଶନିକତା ଓ ଅତିକଳ୍ପନାର ପ୍ରଭାବ ସୁସ୍ପଷ୍ଟ । ଏହି ଦୃଷ୍ଟିରୁ ରାଜକିଶୋର ପଟ୍ଟନାୟକ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ତାହାଙ୍କ ଉପନ୍ୟାସ ଅପେକ୍ଷା ଅଧିକ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି । ବାସ୍ତବନିଷ୍ଠ କଥାକାରଭାବେ ବିଶେଷତଃ ମାନବେତର ପ୍ରାଣୀମାନଙ୍କ ସହ ମାନବଜୀବନର ସଂପର୍କମୂଳକ ଗଳ୍ପ ରଚନା କରିବାରେ ରାଜକିଶୋର ଓ ନିତ୍ୟାନନ୍ଦଙ୍କ କୃତିତ୍ୱ ଉଲ୍ଲେଖଯୋଗ୍ୟ ।

ରାଜକିଶୋର ରାୟ ସମ୍ପୂର୍ଣ୍ଣ ରୋମାଣ୍ଟିକ୍ ଓ ଆତ୍ମନିମଗ୍ନ କଳାକାର । ତାହାଙ୍କ ଅଧିକାଂଶ ଗଳ୍ପ ଅଧିକ ଆତ୍ମକେନ୍ଦ୍ରିକ ଓ ତାହା ନରନାରୀଙ୍କ ଆସକ୍ତି ସମ୍ପର୍କୀୟ ବିଭିନ୍ନ ସମସ୍ୟା ଉପରେ ପର୍ଯ୍ୟବସିତ । ଗଳ୍ପଗୁଡ଼ିକରେ ଚରିତ୍ରଚିତ୍ରଣର ଗୁରୁତ୍ୱ ଅପେକ୍ଷା ଲେଖକଙ୍କର ବଚନବିନ୍ୟାସ ଓ ଅଳଙ୍କରଣ ବିଷୟରେ ସମଧିକ ଆଗ୍ରହ ପାଠକ ଅନୁଭବ କରିଥାଏ । ଗୋଦାବରୀଶ ମହାପାତ୍ର କ୍ଷୁଦ୍ର କବିତାରେ ଶାଣିତ ବ୍ୟଙ୍ଗ, ବିଦ୍ରୂପକୁ ପ୍ରତିଫଳିତ କରିବାରେ ଅନନ୍ୟ ସ୍ରଷ୍ଟା ହେଲେହେଁ ତାହାଙ୍କର ଅଧିକାଂଶ କ୍ଷୁଦ୍ରଗଳ୍ପରେ ସେ କାରୁଣ୍ୟ ଓ ମହାନୁଭୂତି ପ୍ରକଟନରେ ସାର୍ଥକତା ଅର୍ଜନ କରିଅଛନ୍ତି । ଆଙ୍ଗିକ ଦୃଷ୍ଟିରୁ, ବିଶେଷତଃ ସଂକ୍ଷେପରେ କଥାବସ୍ତୁର ସଜୀବ ଅଭିବ୍ୟକ୍ତି ଦୃଷ୍ଟିରୁ ଲେଖକଙ୍କ ଦକ୍ଷତା ଅନନ୍ୟ ଓ ଅସାମାନ୍ୟ । ପଲ୍ଲୀଜୀବନର ବାସ୍ତବାଶ୍ରୟୀ ଜୀବନାଲେଖ୍ୟ ରଚନା କରିବାରେ ଓ ରାଜନୈତିକ-ସମସ୍ୟା ସଚେତନ ଶିଳ୍ପୀ ଭାବେ ଗୋଦାବରୀଶଙ୍କ ଖ୍ୟାତି ସୁପ୍ରତିଷ୍ଠିତ । ଗଳ୍ପସ୍ରଷ୍ଟାଭାବେ ଗୋପୀନାଥ ମହାନ୍ତି ମଧ୍ୟ ଅସାମାନ୍ୟ କୃତିତ୍ୱ ଓ ଖ୍ୟାତିର ଅଧିକାରୀ । ବହୁବିଧ ବିଷୟବସ୍ତୁ ଆଶ୍ରୟ କରି ଗଳ୍ପ ରଚନା କରିବାରେ ଓ ବିବିଧ ରସସୃଷ୍ଟି କରିବାରେ ତଥା ବିଚିତ୍ର ଚରିତ୍ର-

ମାନଙ୍କୁ ଚିତ୍ରଣ କରିବାରେ ତାହାଙ୍କ କୃତିତ୍ୱ ସମଧିକ । ବିଶେଷତଃ ପରିବେଶ ଚିତ୍ରଣରେ ଓ 'ଛିଟିହାସ', 'ଘର', 'ସଞ୍ଜ' ଭଳି ବ୍ୟଙ୍ଗାତ୍ମକ ଗଳ୍ପ ରଚନାରେ ତାହାଙ୍କ ଦକ୍ଷତା ଅପ୍ରତିଦ୍ୱନ୍ଦ୍ୱୀ ।

ସ୍ୱାଧୀନତା ପରେ ଓଡ଼ିଶାର ଲୋକକଥା, କାହାଣୀମାନଙ୍କ ସଂଗ୍ରହ, ସଙ୍କଳନକ୍ଷେତ୍ରରେ ଅଗ୍ରଗତିର ପରିଚୟ ମିଳେ । ଉକ୍ତରେ କୁଞ୍ଜବିହାରୀ ଦାସ, ପ୍ରେମଲତା ଦାସ, କନକମଞ୍ଜରୀ ମହାପାତ୍ର ପ୍ରଭୃତି ଅନେକେ ଏ ଦିଗରେ ଉଦ୍ୟମ କରିଅଛନ୍ତି । ଏତଦ୍‌ବ୍ୟତୀତ ବହୁ ଲେଖକଙ୍କ ଦ୍ୱାରା ବହୁ ବିଦେଶୀ ଓ ଭାରତର ବିଭିନ୍ନ ପ୍ରାନ୍ତରେ ପ୍ରଚଳିତ ଲୋକକଥାମାନଙ୍କର ଆହରଣ ମଧ୍ୟ ଓଡ଼ିଆ ସାହିତ୍ୟରେ ହୋଇଅଛି ।

ଓଡ଼ିଶାର ଦୁର୍ଭାଗ୍ୟ, ବହୁ ସୁଲେଖକ ଗଳ୍ପ ରଚନାକ୍ଷେତ୍ରରେ ଆବିର୍ଭୂତ ହୋଇଥିଲେ ହେଁ ଅନେକେ ନିରବଚ୍ଛିନ୍ନଭାବେ ଗଳ୍ପ-ରଚନାରେ ଅଭିନିବିଷ୍ଟ ବା ସାଧନାରତ ହୋଇ ପାରିନାହାନ୍ତି । ମାତ୍ର କେତେଗୋଟି ଗଳ୍ପ ଲେଖି ସେମାନେ ଗଳ୍ପରଚନା କ୍ଷେତ୍ରରୁ ଅପ୍ରତ୍ୟାଶିତଭାବେ ବିଦାୟ ନେଇଛନ୍ତି । କେବଳ ଗଳ୍ପ ନୁହେଁ ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ବିଭାବ ପ୍ରତି ମଧ୍ୟ ଏହା ଉକ୍ତି ପ୍ରଯୁଜ୍ୟ । ପୂର୍ବରୁ କ୍ଷୁଦ୍ର ଗଳ୍ପର ଯେଉଁସବୁ ଶ୍ରେଣୀ ବିଭାଗ ବିଷୟ ଉଲ୍ଲେଖ କରାଯାଇଅଛି, ଓଡ଼ିଆରେ ସେସବୁ ଶ୍ରେଣୀର କ୍ଷୁଦ୍ର ଗଳ୍ପ ଯଥେଷ୍ଟ ପରିମାଣରେ ରଚିତ ହୋଇ ନାହିଁ । ବିଶେଷତଃ ବିଦେଶୀ ପୃଷ୍ଠ-ଭୂମିକାଯୁକ୍ତ ଗଳ୍ପ, ଦାର୍ଶନିକ ରୂପକ ବା ପ୍ରତୀକଧର୍ମୀ, ଉଦ୍‌ଭଟ ଓ ବୈଜ୍ଞାନିକ ଗଳ୍ପ ରଚନା କ୍ଷେତ୍ରରେ ଓଡ଼ିଆ ଗଳ୍ପ ସାହିତ୍ୟର ହୀନତା ଅତ୍ୟନ୍ତ ସ୍ପଷ୍ଟ । ଓଡ଼ିଶାର ଗଳ୍ପ ଲେଖକଗଣ ଏହିବିଷୟରେ ଅବହିତ ହେବା ବାଞ୍ଛନୀୟ ।

---

# ପରିଶିଷ୍ଟ

## ହଣ୍ଟର ସାହେବଙ୍କ ପ୍ରଦତ୍ତ ଓଡ଼ିଆ କବିମାନଙ୍କ ବିବରଣୀ

[ ଉଇଲିୟମ ହଣ୍ଟରଙ୍କ ଇଂରାଜୀରେ ଲିଖିତ ଓଡ଼ିଶାର ଇତିହାସ 'ଓଡ଼ିଶା' ପ୍ରାୟ ଏକ ଶତାବ୍ଦୀ ପୂର୍ବେ ୧୮୭୨ ମସିହାରେ ପ୍ରକାଶିତ ହୋଇଥିଲା । ତତ୍କାଳୀନ ଓଡ଼ିଶାର କମିସନର ଟି. ଇ. ରେଭେନ୍‌ସାଙ୍କ ଉଦ୍ୟମରେ ଓଡ଼ିଶାର କବି ଓ ତତ୍‌ପ୍ରଣୀତ ଓଡ଼ିଆ ଓ ସଂସ୍କୃତ ରଚନାମାନଙ୍କର ଯେଉଁ ବିବରଣୀ ସଂଗୃହୀତ ହୋଇଥିଲା ତାହାକୁ ହଣ୍ଟର ସାହେବ ଆପଣାର ଓଡ଼ିଶାର ଇତିହାସ ପୁସ୍ତକରେ ସଂଯୋଜିତ କରିଥିଲେ । ଇଂରାଜୀ ଓ ଓଡ଼ିଆରେ ଲିଖିତ ପାଣ୍ଡୁଲିପିରୁ ଏହି ବିବରଣୀ ସଙ୍କଳିତ ହୋଇଥିଲା । କିପରି ଓ କେଉଁମାନେ ଏହି ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ ତାହା ଜଣାଯାଇ ନାହିଁ । ବହୁ ଉତ୍କଳୀୟ ପଣ୍ଡିତଙ୍କ ଉଦ୍ୟମରେ ଏହି ବିବରଣୀ ସଂଗୃହୀତ ହୋଇଥିବା ସମ୍ଭବପର । ଯାହାହେଉ, ଏହା ଆଧୁନିକ ସାହିତ୍ୟ କ୍ଷେତ୍ରରେ ପ୍ରଥମ ସାହିତ୍ୟାଲୋଚନା ଭାବେ ସ୍ମରଣୀୟ ।

ଏହି ସଂଗ୍ରହରେ ୧୦୭ଜଣ କବିଙ୍କର ଇଂରାଜୀ ବର୍ଣ୍ଣମାଳାନୁକ୍ରମିକ ସୂଚୀ, ସେମାନଙ୍କ ପ୍ରଣୀତ ଗ୍ରନ୍ଥ ଓ ୪୭ ଜଣ ଅଜ୍ଞାତନାମା କବିଙ୍କ ରଚିତ ଓଡ଼ିଆ ଓ ସଂସ୍କୃତ ଗ୍ରନ୍ଥର ତାଲିକା ସନ୍ନିବିଷ୍ଟ ହୋଇଅଛି । ପ୍ରାୟ ଏକଶତାବ୍ଦୀ ପୂର୍ବେ ସଙ୍କଳିତ ସେହିସବୁ ବିବରଣୀରେ ବହୁ ଭ୍ରମ, ପ୍ରମାଦ ରହିଥିବା ସ୍ୱାଭାବିକ । ଏହି ବିବରଣୀକୁ ଭିତ୍ତି କରି ପରବର୍ତ୍ତୀ କାଳରେ ଜଗବନ୍ଧୁ ସିଂହ, ତାରିଣୀ ଚରଣ, ମୃତ୍ୟୁଞ୍ଜୟ

ପ୍ରଭୃତି ବହୁ ଆଲୋଚକ ଓଡ଼ିଆ ସାହିତ୍ୟ ଆଲୋଚନାରେ ପ୍ରକୃତ ହୋଇଛନ୍ତି । ଏହା ଓଡ଼ିଆ ସାହିତ୍ୟ ସମ୍ପର୍କୀୟ ପ୍ରାଚୀନତମ ଐତିହାସିକ ବିବରଣୀ ହୋଇଥିବାରୁ ଓ ଷ୍ଟର୍ଲିଂଙ୍କ ଇତିହାସ ପୁସ୍ତକଟି ସହଜଲଭ୍ୟ ହୋଇ ନଥିବାରୁ ଉକ୍ତ ବିବରଣୀର ଅନୁବାଦ ଏହି ପୁସ୍ତକରେ ସଂଯୋଜିତ ହେଲା । —ଲେଖକ]

୧ । ଅଭିମନ୍ୟୁ ସାମନ୍ତସିଂହାର—୧୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ତାହାଙ୍କ ରଚନାବଳୀମାନଙ୍କ ମଧ୍ୟରୁ ସୁପ୍ରସିଦ୍ଧ ଓ ଜନପ୍ରିୟ ରଚନା ହେଉଛି (୧) ବିଦଗ୍ଧ ଚିନ୍ତାମଣି (୨) ପ୍ରୀତିଚିନ୍ତାମଣି । ଦୁଇଟି ଯାକ ପୁସ୍ତକର କଥାବସ୍ତୁ କୃଷ୍ଣ ଓ ରାଧାଙ୍କ ପ୍ରଣୟ-ଲୀଳା ଅନୁସରଣରେ ରଚିତ ।

୨ । ଅଚ୍ୟୁତାନନ୍ଦ ଦାସ—୧୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନାବଳୀ (୧) ଅନନ୍ତ ଗୋଇ—ପ୍ରାଚୀନ ସାଧୁ ସନ୍ନ୍ୟାସୀ-ମାନେ ମୁକ୍ତି ଲଗି ଯେଉଁ କଠୋର ସାଧନା କରୁଥିଲେ, ସେଇସବୁ ବର୍ଣ୍ଣନା ସମ୍ବଳିତ ଧର୍ମ ପୁସ୍ତକ, (୨) ଅଚ୍ୟୁତାନନ୍ଦ ମାଳିକା—ଆଗତଭବିଷ୍ୟ ବିଷୟକ, (୩) ସପ୍ତ ଭାଗବତ—ସଂସ୍କୃତ ଭାଗବତର ଅନୁବାଦ ।

୩ । ଆରତ ଦାସ—ସମୟ ଅଜ୍ଞାତ, ଜଗନ୍ନାଥଙ୍କ ପ୍ରାର୍ଥନା, ପ୍ରଶସ୍ତି ସମ୍ବଳିତ 'ଜଗନ୍ନାଥ ଜଣାଣ'ର ରଚୟିତା ।

୪ । ବଳଭଦ୍ର ଭଞ୍ଜ—ସମୟ ଅଜ୍ଞାତ, ଘୁମୁସରର ଜନୈକ ରାଜା । ସେଇ ରାଜ୍ୟର ରାଜକୁମାର ଓ ଓଡ଼ିଶାର ପ୍ରସିଦ୍ଧତମ କବି ଉପେନ୍ଦ୍ର ଭଞ୍ଜଙ୍କର ସମ୍ଭବତଃ ପୂର୍ବପୁରୁଷ । ରଚନା ଭାବବତୀ, ଏହା ଜନୈକ ରାଜକୁମାରଙ୍କ ପ୍ରଣୟ ଲୀଳାକୁ ଉପଜୀବ୍ୟ କରି ରଚିତ ।

୫ । ବଳରାମ ଦାସ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ପୁରୀର ଜନୈକ ବୈଷ୍ଣବ, ବହୁ ସଂଖ୍ୟକ ପୁସ୍ତକର ରଚୟିତା । ତନ୍ମଧ୍ୟରୁ ନିମ୍ନୋକ୍ତ ୨୩ଟି ପୁସ୍ତକ ପ୍ରଧାନ ।

୧ । ବେଢ଼ା ପରିକ୍ରମା—ପବିତ୍ର ପୁରୀ ଜଗନ୍ନାଥ ମନ୍ଦିରର ବେଢ଼ାରେଥିବା ଛୋଟ ଛୋଟ ମନ୍ଦିର ଓ ଦେବପ୍ରତିମା ବିଷୟ ବର୍ଣ୍ଣନାସମ୍ବଳିତ କବିତା । ୨ । ଅର୍ଜ୍ଜୁନ ଗୀତା—(ଧର୍ମାଶ୍ରୟୀ କବିତା ) । ୩ । ଭାବସମୁଦ୍ର—( ନୀତିମୂଳକ କବିତା ) । ୪ । ଭାଗବତ ଗୀତା—ଓଡ଼ିଆମାନଙ୍କ ଦ୍ୱାରା ସର୍ବଦା ପଠିତ ଓ ଅଧ୍ୟାହୃତ ପୁସ୍ତକ; ସଂସ୍କୃତରୁ ଅନୂଦିତ ବୈଷ୍ଣବ ଧର୍ମଗ୍ରନ୍ଥ । ୫ । ଭକ୍ତି ରସାମୃତ ସିନ୍ଧୁ—( ଭକ୍ତିମୂଳକ ରଚନା ) । ୬ । ଭୃତକେଳୀ—( କୃଷ୍ଣ ରାଧାଙ୍କ ଲୀଳା ସମ୍ବନ୍ଧୀୟ ) । ୭ । ବିରାଟ ଗୀତା—( ନୀତିମୂଳକ କବିତା ) । ୮ । ଚଣ୍ଡୀ ପୁରାଣ—ଚଣ୍ଡୀଙ୍କଦ୍ୱାରା ମହିଷାସୁର ନିଧନ ବିଷୟକ ରଚନା । ୯ । ଛତିଶ ଗୀତା—( ଧର୍ମମୂଳକ କବିତା ) । ୧୦ । ଗଜ ନିସ୍ତାରଣ ଗୀତା—କୁମ୍ଭୀରର କବଳରୁ ହସ୍ତୀର ଉଦ୍ଧାରମୂଳକ ମହାଭାରତ କାହାଣୀ ଅବଲମ୍ବନରେ ରଚିତ । ୧୧ । ଗଣେଶ ବିଭୂତି—ଧର୍ମମୂଳକ କବିତା ।୧୨। ଗରୁଡ଼ ଗୀତା—ଆଧ୍ୟାତ୍ମିକ ଆଲୋଚନା ସମ୍ବଳିତ ପ୍ରସିଦ୍ଧ କବିତା । ୧୩ । ଗୀତାସାର, (ନୀତିମୂଳକ) ।୧୪। ଗୁପ୍ତ ଗୀତା—କୃଷ୍ଣ ଓ ଅର୍ଜ୍ଜୁନଙ୍କ ମଧ୍ୟରେ ହୋଇଥିବା ଅଧ୍ୟାତ୍ମିକ ଓ ନୈତିକ ଆଲୋଚନା ସମ୍ବଳିତ କବିତା । ୧୫ । କୃଷ୍ଣଲୀଳା । ୧୬ । ମହାଭାରତ—(ସଂସ୍କୃତ ମହାଭାରତର ଅନୁବାଦ) । ୧୭ । ମୃଗୁଣୀ ସ୍ତୁତି—ଏଥିରେ ପରଶୁରାମଙ୍କ ଦ୍ୱାରା ମୃଗୁଣୀର ଦୁଃଖରୁ ଉଦ୍ଧାର ଓ ମୃଗୁଣୀ ଦ୍ୱାରା ଉଦ୍ଧାରକାରୀଙ୍କ ଗୁଣକୀର୍ତ୍ତନ ବର୍ଣ୍ଣିତ ହୋଇ-

ଅଛି । ୧୮ । ନାମରତ୍ନ ଗୀତା— (ଧର୍ମମୂଳକ କବିତା) । ୧୯ । ରାମାୟଣ—(ସଂସ୍କୃତ ରାମାୟଣର ଓଡ଼ିଆ ଅନୁବାଦ) । ୨୦ । ରସବିନୋଦ— ରାଧାକୃଷ୍ଣ ଲୀଳାତ୍ମକ ରଚନା । ୨୧ । ରସକେଳି—( ରାଧାକୃଷ୍ଣ ଲୀଳାତ୍ମକ ) । ୨୨ । ଶରୀର ଭୂଗୋଳ— କୃଷ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ବ୍ରହ୍ମତତ୍ତ୍ୱ ଓ ଆଧ୍ୟାତ୍ମିକ ଆଲୋଚନାତ୍ମକ କବିତା । ୨୩ । ଭୁଲାଭଣା— ପୂର୍ବୋକ୍ତ ବିଷୟ ସମ୍ବଳିତ ରଚନା ।

୬ । ବର୍ଦ୍ଧମାନ ମହାପାତ୍ର – ପୁରୀର ବ୍ରାହ୍ମଣ, ୬୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ସଂସ୍କୃତ ଭାଷାରେ ସୁପରିଚିତ ଲେଖକ । ତାଙ୍କର ରଚନାବଳୀ—ବର୍ଦ୍ଧମାନକାରିକା ( ସଂସ୍କୃତ ), ଦୁର୍ଗୋତ୍ସବ ଚନ୍ଦ୍ରିକା (ସଂସ୍କୃତ) । ପ୍ରଥମଟି ସ୍ମୃତିଶାସ୍ତ୍ର ଓ ଶେଷୋକ୍ତଟି ଦଶଭୁଜା ଦୁର୍ଗାଙ୍କ ପୂଜାବିଷୟକ ।

୭ । ବାସୁଦେବ ମିଶ୍ର – ସମୟ ଅଜ୍ଞାତ । ବସୁଚନ୍ଦ୍ରିକା ଓ ସାର- ମଞ୍ଜରୀ ନାମକ ଦୁଇଟି ସଂସ୍କୃତ ବ୍ୟାକରଣ ଗ୍ରନ୍ଥର ପ୍ରଣେତା ।

୮ । ବାସୁଦେବ ଶର୍ମା—ସମୟ ଅଜ୍ଞାତ । ବ୍ରାହ୍ମଣ, ସଂସ୍କୃତ ଅଳଙ୍କାର ଗ୍ରନ୍ଥ ସାହିତ୍ୟଦର୍ପଣର ଟୀକା 'ପ୍ରଭା-ସ୍ମୃତି'ର ରଚୟିତା ।

୯ । ବାସୁଦେବ ତ୍ରିପାଠୀ—ସମୟ ଅଜ୍ଞାତ । ବ୍ରାହ୍ମଣ, ହିନ୍ଦୁ ଆଚାର ପୂଜା, ପାର୍ବଣ ସମ୍ପର୍କୀୟ ସଂସ୍କୃତ ଭାଷାରେ ରଚିତ ଏକ ସଂକଳନ 'ପ୍ରାୟଶ୍ଚିତ ବିଲୋଚନ' ପ୍ରଣେତା ।

୧୦ । ବସୁରଥ ବାଜପେୟୀ—ସମୟ ଅଜ୍ଞାତ । ସ୍ୱନାମାଙ୍କିତ ଏକ ସଂସ୍କୃତ ସ୍ମୃତିଶାସ୍ତ୍ରର ରଚୟିତା ।

୧୧ । ଭଗବାନ କବିରାଜ—୬୦୦ ବର୍ଷ ପୂର୍ବେ ଜୀବିତ ଥିଲେ ; ନାଟକୀୟ ଶୈଳୀରେ ବିଖ୍ୟାତ ସଂସ୍କୃତ ରଚନା "ଗୁଣ୍ଡିଚା ଚମ୍ପୂ"ର ରଚୟିତା । ଏଥିରେ ଜଗନ୍ନାଥଙ୍କ ସ୍ନାନ ଓ

ରଥଯାତ୍ରାର ବିବରଣୀ ଲିଖିତ । ଚକ୍ରପାଣି ପଟ୍ଟନାୟକ ମଧ୍ୟ ଏହି ନାମରେ ଏକ ଚମ୍ପୂ ରଚନା କରିଛନ୍ତି ।

୧୨ । ଭକ୍ତଚରଣ ଦାସ କବି—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ମଥୁରା ମଙ୍ଗଳ ନାମକ ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନାତ୍ମକ ଏକ ବିଖ୍ୟାତ ରଚନାର ରଚୟିତା ।

୧୩ । ଭିକାରୀ ପଟ୍ଟନାୟକ—ସମୟ ଅଜ୍ଞାତ । ରାମଚନ୍ଦ୍ରଙ୍କ ଲଙ୍କା ବିଜୟ ବିଷୟକ ଏକ କ୍ଷୁଦ୍ର ନାଟିକା 'ଲଙ୍କା ଦହନ ନାଟିକା' ରଚନା କରିଥିଲେ ।

୧୪ । ଖ୍ରାମ ଦାସ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ପ୍ରସିଦ୍ଧ ବୈଷ୍ଣବ କବି, ଧର୍ମ ବିଷୟକ 'ଭକ୍ତରତ୍ନମାଳା'ର ରଚୟିତା ।

୧୫ । ଖ୍ରାମା ଧୀବର—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ ; ଧୀବର ଜାତୀୟ ସୁବିଖ୍ୟାତ କବି । ରଚନାବଳୀ, ୧ । କପଟପାଶା (ମହାଭାରତର ଉପାଖ୍ୟାନ, ଯୁଧିଷ୍ଠିରଙ୍କ ପଶାଖେଳରେ ହାରିବା ବିଷୟକ ), ୨ । ଭାରତସାବିତ୍ରୀ—ମହାଭାରତର ପଦ୍ୟ ରୂପ ।

୧୬ । ବିଦ୍ୟାକର ପୁରୋହିତ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ବ୍ରାହ୍ମଣ, 'ନାରାୟଣ ଶତକ' ସଂସ୍କୃତରେ ରଚନା କରିଥିଲେ ।

୧୭ । ବିଦ୍ୟାକର ବାଜପେୟୀ—ସମୟ ଅଜ୍ଞାତ । ସଂସ୍କୃତରେ ଏକ ସ୍ମୃତି ଗ୍ରନ୍ଥ 'ବିଦ୍ୟାକର ପଦ୍ଧତି' ପ୍ରଣୟନ କରିଥିଲେ ।

୧୮ । ବିପ୍ର କଣ୍ଠ ଦାସ—୨୫୦ ବର୍ଷ ପୂର୍ବେ ଜୀବିତ ଥିଲେ । କୃଷ୍ଣଙ୍କର ବାଲ୍ୟଲୀଳାତ୍ମକ ଦୁଇଟି ଜନପ୍ରିୟ କ୍ଷୁଦ୍ର କଥା କବିତା । ନ' ପୋଇ ଓ ଛ' ପୋଇର ରଚୟିତା ।

୧୯ । ବିଶ୍ୱନାଥଦାସ କବି ଓରଫ ପୁରୁଷୋତ୍ତମ ବିଶ୍ୱନାଥ ଖୁଣ୍ଟିଆ - ୩୦୦ବର୍ଷ ପୂର୍ବେ ଜୀବିତ ଥିଲେ । ଉତ୍କଳର ବିଖ୍ୟାତ ଲେଖକ ଓ 'ବିଚିତ୍ର ରାମାୟଣ'ର ରଚୟିତା । ଏହା ମୂଳ ସଂସ୍କୃତ ରାମାୟଣର ଓଡ଼ିଆ ପଦ୍ୟ ରୂପ । ଓଡ଼ିଆ ସାହିତ୍ୟରେ ରାମାୟଣର ଯେତେ ପଦ୍ୟ ରୂପ ଦେଖାଯାଏ ଏହା ସବୁଠାରୁ ଜନପ୍ରିୟ । ରଙ୍ଗମଞ୍ଚରେ ନାଟୁଆ ପିଲମାନେ ଏହା ଏବେ ମଧ୍ୟ ରାମାୟଣର ଦୃଶ୍ୟ ଓ ଘଟଣାବଳୀ ପ୍ରଦର୍ଶନ କଲେ ବୋଲିଥାନ୍ତି । "Of all the versions of the Ramayana in Oriya, this is the most popular and passages from it are still recited by dancing boys when the scenes and events of the epic are acted on the stage."

୨୦ । ବିଶ୍ୱନାଥ ଷଡ଼ଙ୍ଗୀ—ସମୟ ଅଜ୍ଞାତ । ଜନୈକ ବ୍ରାହ୍ମଣ, ସଂସ୍କୃତରେ "ଉଷାପରିଣୟ ନାଟକ"ର ରଚୟିତା ।

୨୧ । ବିଶ୍ୱନାଥ ନାମା ପଣ୍ଡିତ—୮୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ସଂସ୍କୃତରେ "ସ୍ମୃତିସାର" ପୁସ୍ତକର ରଚୟିତା ।

୨୨ । ବିଶ୍ୱମ୍ଭର ମିଶ୍ର କବି—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । 'ବିଚିତ୍ର ଭାରତ'ର ରଚୟିତା । ଏହା ସଂସ୍କୃତ ମହାଭାରତର ଅରଣ୍ୟ ଓ ବିରାଟପର୍ବର ପଦ୍ୟାନୁବାଦ । ଉତ୍କଳୀୟମାନଙ୍କ ମଧ୍ୟରେ ଏହା ବିଶେଷ ଜନପ୍ରିୟ ।

୨୩ । ବ୍ରଜନାଥ ଦାସ—ସମୟ ଅଜ୍ଞାତ । ତାହାଙ୍କ ରଚନାବଳୀ, ୧ । ଅମ୍ବିକା ବିଳାସ ( ମହାଭାରତୋକ୍ତ ଅମ୍ବିକାପ୍ରଣୟ ଉପାଖ୍ୟାନ), ୨ । ସମର ତରଙ୍ଗ; ଯୁଦ୍ଧ ବିଷୟକ ଏକ ପଦ୍ୟ

୩ । ଗୁଣ୍ଡିଚ୍ଚ ବିଜେ—ରଥଯାତ୍ରା ବେଳେ ବଳଭଦ୍ର ସୁଭଦ୍ରାଙ୍କ ସହ ଜଗନ୍ନାଥଙ୍କ ଗୁଣ୍ଡିଚ୍ଚ ଗୃହକୁ ଯାତ୍ରା ବିଷୟକ ରଚନା ।

୨୪ । ଚକ୍ରଦତ୍ତ – ବଙ୍ଗୀୟ କାୟସ୍ଥ । ସମୟ ଅଜ୍ଞାତ, ସ୍ୱନାମାଙ୍କିତ ଏକ ଚିକିତ୍ସା ଗ୍ରନ୍ଥର ପ୍ରଣେତା । କଟକର ଦକ୍ଷିଣାଞ୍ଚଳର ସ୍ଥାନୀୟ ଚିକିତ୍ସକମାନେ ଏହି ଗ୍ରନ୍ଥ ଅନୁସରଣ କରନ୍ତି ।

୨୫ । ଚକ୍ରପାଣି ପଟ୍ଟନାୟକ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । କରଣ; ସଂସ୍କୃତରେ ଗୁଣ୍ଡିଚ୍ଚ ଚମ୍ପୂ ରଚନା କରିଥିଲେ ।

୨୬ । ଚନ୍ଦ୍ରମଣି ମୋହନ୍ତ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନାବଳୀ—୧ । ସୁଦର୍ଶନ ବିଳାସ, (ସୁଦର୍ଶନଙ୍କ ପ୍ରଣୟ-ମୂଳକ ସଂସ୍କୃତ ରଚନା), ୨ । ହଂସଦୂତ, ( ବଙ୍ଗୀୟ ବୈଷ୍ଣବ ରୂପଗୋସ୍ୱାମୀଙ୍କ ପୁସ୍ତକର ଓଡ଼ିଆ ଅନୁବାଦ), ୩ । ଶବ୍ଦ କଳ୍ପଲତା, (ସଂସ୍କୃତ ଶବ୍ଦକୋଷ) ।

୨୭ । ଚନ୍ଦ୍ରଶେଖର ରାଜଗୁରୁ—ସମୟ ଅଜ୍ଞାତ । ବ୍ରାହ୍ମଣ; ରାଜାଙ୍କ ଧର୍ମଗୁରୁ, କୃଷ୍ଣଙ୍କ ନାତି ଅନିରୁଦ୍ଧ ଚରିତ ବର୍ଣ୍ଣନା କରି 'ମଧୁରାନିରୁଦ୍ଧ ନାଟକ' ସଂସ୍କୃତରେ ରଚନା କରିଥିଲେ । ଏହା ପଣ୍ଡିତମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ।

୨୮ । ଧନଞ୍ଜୟ ଭଞ୍ଜ—ସମୟ ଅଜ୍ଞାତ । ଘୁମୁସର ରାଜା; ୧ । ରଘୁନାଥ ବିଳାସ, ୨ । ରାମବିଳାସର ରଚୟିତା ।

୨୯ । ଧର୍ମଦାସ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ଜ୍ୟୋତିଷ ବିଷୟରେ 'ନକ୍ଷତ୍ର କଣ୍ଠମାଳା' ସଂସ୍କୃତରେ ରଚନା କରିଥିଲେ ।

୩୦ । ଧରଣୀଧର—୨୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ବିଖ୍ୟାତ କବି ଜୟଦେବଙ୍କ 'ଗୀତଗୋବିନ୍ଦ'କୁ ପଦ୍ୟରେ ଅନୁବାଦ କରିଥିଲେ ।

୩୧ । ଦିବାକର ମିଶ୍ର—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ଜଗନ୍ନାଥଙ୍କ ବିଷୟରେ 'ଜଗନ୍ନାଥ ଚରିତାମୃତ' ଲେଖି ଥିଲେ ।

୩୨ । ଦିବ୍ୟସିଂହ ମହାପାତ୍ର—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ସଂସ୍କୃତରେ ହିନ୍ଦୁ ସ୍ମୃତି ଶାସ୍ତ୍ର ଓ ଦଶାହ (ମୃତାଶୌଚ) ବିଷୟରେ ଦୁଇଟି ପୁସ୍ତକ ଲେଖିଥିଲେ ।

୩୩ । ଦୀନବନ୍ଧୁ ଦାସ—ସମୟ ଅଜ୍ଞାତ । ବ୍ରାହ୍ମଣ; ଛନ୍ଦ ହରିପ୍ରିୟା ନାମକ ଏକ ପ୍ରେମମୂଳକ କାବ୍ୟର ରଚୟିତା ।

୩୪ । ଦୀନବନ୍ଧୁ ରାୟ—୨୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ଏକ କରଦ ରାଜ୍ୟର ରାଜା । 'ରାଧା ବିଳାସ' ନାମକ ରାଧାଙ୍କ ପ୍ରଣୟଲୀଳା ବର୍ଣ୍ଣନାତ୍ମକ କାବ୍ୟର ରଚୟିତା ।

୩୫ । ଦୀନକୃଷ୍ଣ ଦାସ—ସିନ୍ଧୁ ନାମରେ ମଧ୍ୟ ପରିଚିତ । ୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । କରଣ ବୈଷ୍ଣବ; ସର୍ବାଧିକ ଜନପ୍ରିୟ । ଏଣୁ ସେ ଜଗନ୍ନାଥଙ୍କ ପୁତ୍ରଭାବେ ବିବେଚିତ ହୁଅନ୍ତି । ତାହାଙ୍କ ରଚନାବଳୀ ସାବଲୀଳ ଓ ଅପୂର୍ବ ସ୍ୱଚ୍ଛ ରୀତିରେ ରଚିତ । ଏହାଙ୍କ ପ୍ରକୃତି ବର୍ଣ୍ଣନା ଅତୀବ ଚମତ୍କାର । ଏହାଙ୍କର ନିମ୍ନୋକ୍ତ ୧୫ଟି ପୁସ୍ତକ ଏବେମଧ୍ୟ ବ୍ୟାପକ-ଭାବେ ଜନପ୍ରିୟ ।

୧ । ରସକଲ୍ଲୋଳ, କୃଷ୍ଣଙ୍କ ଆଦ୍ୟ କୈଶୋର ଲୀଳାତ୍ମକ କାବ୍ୟ, ୨ । ଚନ୍ଦ୍ରଧର ବିଳାସ, ପୂର୍ବୋକ୍ତ ବିଷୟକ, ୩ । ମଧୁସୂଦନ ବିଳାସ, ପୂର୍ବୋକ୍ତ ବିଷୟକ, ୪ । ମାଧବଙ୍କର ଗୀତ, (ଚକଡ଼ାସମ୍ବନ୍ଧୀୟ ଗ୍ରନ୍ଥ), ୫ । ଆର୍ତ୍ତତ୍ରାଣ ଚଉତିଶା, (ଜଗନ୍ନାଥଙ୍କ ଜଣାଣ), ୬ । ବାରମାସୀ କୋଇଲି (ପୁତ୍ର ବିଚ୍ଛେଦରେ ରାମଜନନୀଙ୍କ ଶୋକ), ୭ । ଜଗମୋହନ, ଜଗନ୍ନାଥଙ୍କ ବିଷୟକ, ୮ । ସାମୁଦ୍ରିକ, ହସ୍ତରେଖା ଅଧ୍ୟୟନ ବିଷୟକ ସଂସ୍କୃତରୁ ଅନୂଦିତ ଗ୍ରନ୍ଥ, ୯ । ଗୁଣ୍ଡିଚା ବିଜେ, ରଥଯାତ୍ରାବେଳେ ଜଗନ୍ନାଥଙ୍କର ଗୁଣ୍ଡିଚା ମନ୍ଦିରକୁ ଯିବା ବିଷୟକ ଗ୍ରନ୍ଥ, ୧୦ । ପ୍ରସ୍ତାବ ସିନ୍ଧୁ (ଦଶରଥଙ୍କୁ ବଶିଷ୍ଠ ଦେଇଥିବା ବକ୍ତୃତା ବିଷୟକ); ୧୧ । ଗୁଣସାଗର, କୃଷ୍ଣଙ୍କ ଶୈଶବ ଲୀଳା ବିଷୟକ; ୧୨ । ଉଜ୍ଜ୍ୱଳ ନୀଳମଣି କାରିକା, କୃଷ୍ଣ ଓ ରାଧା ବିଷୟକ ଗଦ୍ୟ ରଚନା, ୧୩ । ରାଧା କବଚ—ପୂଜା ଓ ମନ୍ତ୍ର ସମ୍ବନ୍ଧୀୟ ପୁସ୍ତକ, ୧୪ । ଦ୍ୱାଦଶ କୁଞ୍ଜ ଲୀଳା—କୃଷ୍ଣଙ୍କ ପ୍ରଣୟ ଲୀଳାତ୍ମକ ଗ୍ରନ୍ଥ, ୧୫ । କୃଷ୍ଣ-ଦାସ ବୋଲି—ଚକଡ଼ା ଗ୍ରନ୍ଥ ।

୩୬ । ଗଦାହର(Gadahar) ମହାପାତ୍ର ରାଜଗୁରୁ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ଓଡ଼ିଶାର ରାଜାଙ୍କର ଧର୍ମଗୁରୁ । ସଂସ୍କୃତରେ ହିନ୍ଦୁ ବିଧିବିଧାନ କର୍ମକାଣ୍ଡ ବିଷୟକ ନିମ୍ନୋକ୍ତ ପୁସ୍ତକମାନଙ୍କର ରଚୟିତା—୧ । କାଳ ସାର, ୨ । ଶ୍ରାଦ୍ଧ ସାର, ୩ । ଆଚାର ସାର ।

୩୭ । ଗଦାଧର ପଟ୍ଟନାୟକ—୧୭୦ ବର୍ଷ ପୂର୍ବେ ଜୀବିତ ଥିଲେ । 'ରସକଲ୍ପଲତା' ନାମକ ପ୍ରଣୟପ୍ରଧାନ କାବ୍ୟର ରଚୟିତା ।

୩୮ । ଗୋପାଳ ଭଞ୍ଜ—୬୦୦ ବର୍ଷ ପୂର୍ବେ ଜୀବିତ ଥିଲେ । କୋଣାର୍କ ନିର୍ମାତା ଲାଙ୍ଗୁଳିଆ ନରସିଂହ ଦେବଙ୍କ ସମକାଳୀନ ସଂସ୍କୃତ 'ଅର୍କ ମାହାତ୍ମ୍ୟ'ର ରଚୟିତା—ଏଥିରେ ମନ୍ଦିରର ଦେବତା ଓ ନିର୍ମାଣ ବିଷୟ ବର୍ଣ୍ଣିତ ହୋଇଅଛି ।

୩୯ । ଗୋପେନ୍ଦ୍ର—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । କୃଷ୍ଣ ଓ ବୃନ୍ଦାବନର ଗୋପୀମାନଙ୍କ ଲୀଳା ବର୍ଣ୍ଣନାତ୍ମକ 'ମଧୁର ଚଉତିଶା' ନାମକ ଏକ ଜନପ୍ରିୟ ରଚନାର ଲେଖକ ।

୪୦ । ଗୋପୀନାଥ କବିଭୂଷଣ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । କବି ଚିନ୍ତାମଣି—ପଦ୍ୟରଚନା ସମ୍ପର୍କୀୟ ଗ୍ରନ୍ଥ, ୨ । ରାମଚନ୍ଦ୍ର ବିହାର—ରାମ ଚରିତମୂଳକ ଗ୍ରନ୍ଥ ।

୪୧ । ଗୋପୀନାଥ ରଥ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ବ୍ରାହ୍ମଣ, କବିମାନଙ୍କ ବିଷୟରେ ସଂସ୍କୃତ ଟୀକାକାର । ରଚନା—୧ । ହଂସଦୂତ ଟୀକା, ୨ । ନୈଷଧଟୀକା ।

୪୨ । ଗୋବିନ୍ଦ ଦାସ—୨୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ତିଗିରିଆ ନାମକ ଗଡଜାତର ଅଧିବାସୀ—ସଂସ୍କୃତ ପ୍ରକ୍ରିୟାସାର ବ୍ୟାକରଣର ରଚୟିତା ।

୪୩ । ଗୋବିନ୍ଦ ଦାସ—୨୬୦ ବର୍ଷ ପୂର୍ବେ ଜୀବିତଥିଲେ । ବ୍ରାହ୍ମଣ, ବୈଷ୍ଣବ ଧର୍ମାବଲମ୍ବୀ । ବିଷ୍ଣୁଙ୍କ ଦୁଇ ଅବତାରର ଗୁଣ ବର୍ଣ୍ଣନାମୂଳକ 'ଚରଣ ସୁଧାନିଧି' ପୁସ୍ତକର ରଚୟିତା ।

୪୪ । ଗୋବିନ୍ଦ ସାନ୍ତ୍ର—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ବ୍ରାହ୍ମଣ, ରଚନା—୧ । ସୁଖ ସର୍ବସ୍ୱ, ୨ । ବୀର ସର୍ବସ୍ୱ । ଦୁଇଟିଯାକ ପୁସ୍ତକ ସଂସ୍କୃତ ନୀତି ଓ ସମାଜବିଧି ସମ୍ପର୍କୀୟ ।

୪୫ । ହରି ଦାସ—୧୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ହରିଦାସ ମାଳିକା ରଚନା କରିଥିଲେ ।

୪୬ । ହରିଚନ୍ଦନ ଦେବ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । କୌଣସି ଏକ ଗଡ଼ଜାତର ରାଜା । ରଚନା—ଲୀଳାବତୀ ଏହା ଶୈଳରାଜ କନ୍ୟା ଲୀଳାବତୀ ଓ ଅଙ୍ଗ ଦେଶର ରାଜକୁମାର ଚନ୍ଦ୍ରଭାନୁର ପ୍ରଣୟ ବର୍ଣ୍ଣନାମୂଳକ କାବ୍ୟ ।

୪୭ । ହଳଧର ଦାସ—୫୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—ଅଧ୍ୟାତ୍ମ ରାମାୟଣ (ରାମାୟଣର ଅନ୍ୟ ଏକ ଓଡ଼ିଆ ଅନୁବାଦ), ୨ । ହଳଧରକାରିକା, ହିନ୍ଦୁ ସମାଜ ଓ ଧର୍ମବିଧି ସମ୍ପର୍କୀୟ ।

୪୮ । ହନୁମାନ ମିଶ୍ର—ସମୟ ଅଜ୍ଞାତ । ବିଖ୍ୟାତ ସଂସ୍କୃତ ନାଟକ 'ମହାନାଟକ'ର ଟୀକାକାର ।

୪୯ । ହରିହର କବି—ପ୍ରାୟ ୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରାମାୟଣର ଗୀତ ରୂପ 'ସୁଚିତ୍ର ରାମାୟଣ'ର ରଚୟିତା । ଏହା ସରଳତାରେ ବିଚିତ୍ର ରାମାୟଣର ସମକକ୍ଷ ।

୫୦ । ହରିହର ଆଚାର୍ଯ୍ୟ—ପ୍ରାୟ ୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ହିନ୍ଦୁଧର୍ମ ଓ ସମାଜ ବିଧି ସମ୍ପର୍କୀୟ ସଂସ୍କୃତ ଗ୍ରନ୍ଥ 'ଧର୍ମ ପ୍ରଦୀପ'ର ପ୍ରଣେତା ।

୫୧ । ହରିକୃଷ୍ଣ ମହାପାତ୍ର—ସମୟ ଅଜ୍ଞାତ । କୃଷ୍ଣପତ୍ନୀ ରୁକ୍ମଣୀଙ୍କ ଲୀଳା ବର୍ଣ୍ଣନାତ୍ମକ 'ରୁକ୍ମଣୀ ବିଳାସ'ର ପ୍ରଣେତା ।

୫୨ । ହରି ନାୟକ—୨୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ଈଶ୍ୱର ବର୍ଣ୍ଣନାମୂଳକ ସଂସ୍କୃତ ରଚନା 'ଗୀତ ପ୍ରକାଶ' ରଚୟିତା ।

୫୩ । ଯଦୁମଣି ଭଞ୍ଜ—୨୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ଘୁମୁସରର ରାଜା । 'ରୁକ୍ମଣୀ ବିଳାସ' ରଚୟିତା । ଏହା କୃଷ୍ଣ ଓ ରୁକ୍ମଣୀଙ୍କ ଲୀଳା ବର୍ଣ୍ଣନାତ୍ମକ ଗ୍ରନ୍ଥ ।

୫୪ । ଜଗନ୍ନାଥ ଦାସ—୩୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । ପାଷାଣ୍ଡ ଦଳନ—ଧର୍ମମୂଳକ ରଚନା । ୨ । ଭାଗବତ—ବୈଷ୍ଣବ ଧର୍ମଗ୍ରନ୍ଥ ଭାଗବତର ଓଡ଼ିଆ ଅନୁବାଦ, ଏହା ଓଡ଼ିଶାର ଅଧିବାସୀଙ୍କ ଦ୍ୱାରା ପଠିତ ଏବଂ ଅଧ୍ୟାହୃତ ହୁଏ । ୩ । ମନଶିକ୍ଷା—ଶୁକ ଓ ସନକଙ୍କ ମଧ୍ୟରେ କୃଷ୍ଣଙ୍କର ତାରୁଣ୍ୟଲୀଳା ସମ୍ପର୍କୀୟ କଥୋପକଥନ । ୪ । ଜଗନ୍ନାଥ କାରିକା—ସଂସ୍କୃତ ସ୍ତୁତି ଗ୍ରନ୍ଥ । ଏହାଙ୍କ ରଚନାବଳୀ ଲୋକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୁଏ ।

୫୫ । ଜଳନ୍ତରର କବିସୂର୍ଯ୍ୟ ରାଜଗୁରୁ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ପାରିକୁଦର ଅଧିବାସୀ । ରଚନା—୧ । ଶ୍ଳୋକପଦ୍ୟ (କବିତା ସଂଗ୍ରହ), ୨ । କେଶରୀ ଚନ୍ଦ୍ର ଚମ୍ପୂ (କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ) ରାଧା ଓ କୃଷ୍ଣଙ୍କ ପ୍ରଣୟ ସମ୍ବନ୍ଧୀୟ । ୩ । ଆନନ୍ଦ ଦାମୋଦର ଚମ୍ପୂ—ପୂର୍ବୋକ୍ତ ବିଷୟକ । ୪ । ହାସ୍ୟାର୍ଣ୍ଣବ ( ହାସ୍ୟରସାତ୍ମକ କବିତାବଳୀ) । ପ୍ରଥମ ତିନୋଟି ପୁସ୍ତକ ଆଂଶିକ ଓଡ଼ିଆ ଓ ଆଂଶିକ ସଂସ୍କୃତରେ ଲିଖିତ ।

୫୬ । କବିଚନ୍ଦ୍ର ରଘୁନାଥ ପରିଚ୍ଛା—୬୦୦ ବର୍ଷ ପୂର୍ବେ ଜୀବିତ ଥିଲେ । କୃଷ୍ଣ ଓ ଗୋପୀମାନଙ୍କ ପ୍ରଣୟଲୀଳାତ୍ମକ ସଂସ୍କୃତ ନାଟକ 'ଗୋପୀନାଥ ବଲ୍ଲଭ'ର ରଚୟିତା । ଲାଙ୍ଗୁଳିଆ ନରସିଂହ ଦେବଙ୍କ ସମସାମୟିକ ।

୫୭ । କବୀନ୍ଦ୍ର ନାରାୟଣ ଶର୍ମା—୧୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରାଜା ଲଲାଟେନ୍ଦୁକେଶରୀଙ୍କ ସମସାମୟିକ । ରଚନା—ଏକାମ୍ର-ଚନ୍ଦ୍ରିକା ଓ ବିରଜା ମହାତ୍ମ୍ୟ ନାମକ ଦୁଇଟି ସଂସ୍କୃତ ଗ୍ରନ୍ଥ ।

ଦୁଇଟିଯାକ ଗ୍ରନ୍ଥ ବହୁଳ ପ୍ରଶଂସିତ ଓ ଯଥାକ୍ରମେ ଭୁବନେଶ୍ବର ଓ ଯାଜପୁରର ପବିତ୍ରତା ସମ୍ବନ୍ଧୀୟ ରଚନା ।

୫୮ । କାଳୀଦାସ ଚଇନିନାମା ପଣ୍ଡିତ—୫୦୦ ବର୍ଷ ପୂର୍ବେ ଜୀବିତ ଥିଲେ । 'ଶୁଦ୍ଧିଚନ୍ଦ୍ରିକା' ନାମକ ହିନ୍ଦୁ ନୀତିଶିକ୍ଷା-ମୂଳକ ସଂସ୍କୃତ ରଚନାର ଲେଖକ ।

୫୯ । କର୍ଣ୍ଣାମଗିରି—୧୦୦ ବର୍ଷ ପୂର୍ବେ ଜୀବିତ—ଜନୈକ ସନ୍ୟାସୀ, 'ଭକ୍ତିରସାମୃତ' ନାମକ ଭକ୍ତିମୂଳକ ପ୍ରଖ୍ୟାତ ରଚନାର ଲେଖକ ।

୬୦ । କେଶବ ଦାସ କବି—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—'ସୁଚନ୍ଦ୍ରଭାରତ' । ଏହା ମହାଭାରତ ଅବଲମ୍ବନରେ ରଚିତ ।

୬୧ । କୃଷ୍ଣ ଦାସ—ସମୟ ଅଜ୍ଞାତ । ରଚନା—୧ । 'ପୀୟୂଷ ରତ୍ନାକର'—ଭକ୍ତିମୂଳକ ରଚନା, ୨ । ଗୀତଗୋବିନ୍ଦ—ଜୟଦେବଙ୍କ ଗୀତଗୋବିନ୍ଦର ଓଡ଼ିଆ ପଦ୍ୟରୂପ, ୩ । ଭାଗବତ—ସଂସ୍କୃତ ଭାଗବତର ଓଡ଼ିଆନୁବାଦ ।

୬୨ । କୃଷ୍ଣ ମିଶ୍ର –୨୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା— ୧ । ପ୍ରବୋଧ ଚନ୍ଦ୍ରୋଦୟ ନାଟିକା—(ସଂସ୍କୃତ ନାଟକ) ୨ । ସଂସ୍କୃତ ଅଳଂକାର ଗ୍ରନ୍ଥ ସାହିତ୍ୟ ରତ୍ନାକରର ଟୀକା—ସାହିତ୍ୟ ରତ୍ନାକର ଅଳଙ୍କାର ଟୀକା, ୩ । କୃଷ୍ଣ ମିଶ୍ର ପ୍ରକ୍ରିୟା—(ସଂସ୍କୃତ ବ୍ୟାକରଣ) ।

୬୩ । କୃଷ୍ଣ ସିଂହ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । କବି ସଂସ୍କୃତର ରାମାୟଣ, ଭାରତ ଓ ଭାଗବତକୁ ଓଡ଼ିଆରେ ଅନୁବାଦ କରିଥିଲେ ଓ ସଂସ୍କୃତ ହରିବଂଶର ଗଦ୍ୟାନୁବାଦ କରିଥିଲେ ।

୬୪ । କୃପାସିନ୍ଧୁ ଦାସ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । ଶ୍ରୀଜଗନ୍ନାଥ ସ୍ତୁତି, ୨ । ବ୍ରଜବିହାର—(କୃଷ୍ଣଙ୍କ ସହ ଗୋପୀଙ୍କଲୀଳାତ୍ମକ)

୬୫ । କୃପାସିନ୍ଧୁ ପଟ୍ଟନାୟକ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ୧ । ଦଶବାଲି (Dasa Bali) ବ୍ରଜବିହାର, ବୃନ୍ଦାବନରେ କୃଷ୍ଣଙ୍କ ଲୀଳାବିଷୟକ, ୨ । କମଳାକାନ୍ତ ଚଉତିଶା, କୃଷ୍ଣଙ୍କ ଚରିତ ବର୍ଣ୍ଣନାତ୍ମକ ଗ୍ରନ୍ଥ, ୩ । ସଜନୀ ଚଉତିଶା, (ପୂର୍ବୋକ୍ତ ବିଷୟକ) ।

୬୬ । କୁଞ୍ଜବିହାରୀ ପଟ୍ଟନାୟକ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—କୁଞ୍ଜବିହାରୀ (ବିହାର), କୃଷ୍ଣ ବିଷୟକ ପଦ୍ୟ ।

୬୭ । ଲକ୍ଷ୍ମୀଧର ଦାସ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—ଅଙ୍ଗଦପଦ୍ଧି ।

୬୮ । ଲକ୍ଷ୍ମୀଧର ମିଶ୍ର—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ଭୁବନେଶ୍ୱରର ଅଧିବାସୀ, ରଚନା—ଶିବକଳ୍ପଦ୍ରୁମ (ଶିବ ଉପାସନାମୂଳକ ସଂସ୍କୃତ ଗ୍ରନ୍ଥ) ।

୬୯ । ଲୋକନାଥ ବିଦ୍ୟାଧର—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । ଚିତ୍ରକଳା, ୨ । ସର୍ବାଙ୍ଗସୁନ୍ଦରୀ, ୩ । ଚିତ୍ରୋତ୍ପଳା (ଚିତ୍ରକଳା), ୪ । ପରିମଳା, ୫ । ରସକଳା, ସବୁଗୁଡ଼ିକ ପ୍ରଣୟାତ୍ମକ ରଚନା ।

୭୦ । ଲୋକନାଥ ଦାସ—୧୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । କାରିକାବଳୀ, ୨ । କର୍ମକାଣ୍ଡ । ଦୁଇଟିଯାକ ବିଧିବିଧାନ, ନୀତିମୂଳକ ସଂସ୍କୃତ ରଚନା ।

୭୧ । ଲୋକନାଥ ନାୟକ—୨୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—ଖଡ଼ି ଲୀଳାବତୀ, ଗଣିତ ବିଷୟକ ଓଡ଼ିଆ ପଦ୍ୟ ।

୭୨ । ମାଧବକର—୪୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ଜ୍ୟୋତିଷ ଗ୍ରନ୍ଥ 'ମାଧବକର' ସଂସ୍କୃତରେ ରଚନା କରିଥିଲେ । ଏହା ବହୁ ପ୍ରଶଂସିତ ଓ କଟକର ଉତ୍ତରବର୍ତ୍ତୀ ସ୍ଥାନମାନଙ୍କରେ ଜ୍ୟୋତିଷକଙ୍କ ଦ୍ୱାରା ବ୍ୟବହୃତ ହୁଏ ।

୭୩ । ମାଗୁଣି ପଟ୍ଟନାୟକ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—ରାମଚନ୍ଦ୍ର ବିହାର, ରାମଙ୍କ କାର୍ଯ୍ୟାବଳୀ ସମ୍ପର୍କୀୟ ଗ୍ରନ୍ଥ ।

୭୪ । ମହାଦେବ ଦାସ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । ପଦ୍ମପୁରାଣ, ୨ । ମାର୍କଣ୍ଡ ପୁରାଣ, ୩ । ମାଘ-ମହାତ୍ମ୍ୟ, ୪ । ବୈଶାଖ ମହାତ୍ମ୍ୟ, ୫ । କାର୍ତ୍ତିକ ମହାତ୍ମ୍ୟ, ୬ । ରାମାୟଣ । ସବୁଗୁଡ଼ିକ ପୂର୍ବୋକ୍ତ ନାମବିଶିଷ୍ଟ ସଂସ୍କୃତ ଗ୍ରନ୍ଥର ଅନୁବାଦ ।

୭୫ । ମାଣିକ୍ୟଦେବ ପଣ୍ଡିତ—ସମୟ ଅଜ୍ଞାତ । ସଂସ୍କୃତ ଗ୍ରନ୍ଥ ଶୁଦ୍ଧିଗୁଚ୍ଛ (Guchchha)ର ଲେଖକ ।

୭୬ । ମାର୍କଣ୍ଡ ଦାସ—୬୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—କେଶବ କୋଇଲି ଓ ଜ୍ଞାନ ଉଦୟ କୋଇଲି, (ଧର୍ମତତ୍ତ୍ୱ-ମୂଳକ) ।

୭୭ । ନାରାୟଣ ଆଚାର୍ଯ୍ୟ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ପ୍ରେମମୂଳକ କାବ୍ୟ 'ସୁଲକ୍ଷଣା'ର ରଚୟିତା ।

୭୮ । ନାରାୟଣ ପୁରୋହିତ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—ବୃତ୍ତ ରତ୍ନାକର, ଓଡ଼ିଆ ଛନ୍ଦରେ କବିତା ରଚନାର ତତ୍ତ୍ୱସମ୍ବନ୍ଧୀୟ (Brutta Ratnakar, a tre-tise on versification written in a kind of Oriya verse called chhanda.)

୭୯ । ନାଥ ରଥ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । କାଳି-ଦାସଙ୍କର 'ରଘୁବଂଶ'କୁ ଓଡ଼ିଆରେ ଅନୁବାଦ କରିଥିଲେ ।

୮୦ । ନୀଳାମ୍ବର ଭଞ୍ଜ—୧୫୦ ବର୍ଷ ପୂର୍ବେ ହଳଦିଆର ରାଜା ଥିଲେ । ରଚନା—୧ । କୃଷ୍ଣଲୀଳାମୃତ, ୨ । ଚଉପଦୀ, (ପ୍ରେମବିଷୟକ) ।

୮୧ । ନୀଳାମ୍ବର ଦାସ—୪୦୦ ବର୍ଷ ପୂର୍ବେ ଜୀବିତ ଥିଲେ ଓ ଜୈମିନୀ ଭାରତର ଓଡ଼ିଆ ଅନୁବାଦ କରିଥିଲେ ।

୮୨ । ନରସିଂହ ବାଜପେୟୀ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । ଆଚାର ପ୍ରଦୀପ, ୨ । ବ୍ୟବସ୍ଥା ପ୍ରଦୀପ, ୩ । ପ୍ରାୟଶ୍ଚିତ୍ତ ପ୍ରଦୀପ, ୪ । ବାଜପେୟୀ ସ୍ମୃତି, ୫ । ଦାନ-ସାଗର । ସବୁ ପୁସ୍ତକଗୁଡ଼ିକ ହିନ୍ଦୁ ପୂଜାପର୍ବ, ଦାନ, ନୀତି ପ୍ରଭୃତି ବିଷୟକ ସଂସ୍କୃତରେ ରଚିତ ଗ୍ରନ୍ଥ ।

୮୩ । ନରସିଂହ ପଟ୍ଟନାୟକ—୯୦ ବର୍ଷ ପୂର୍ବେ ଜୀବିତ ଥିଲେ । ଗୀତରେ 'ଶବ୍ଦମାଳା' ନାମକ ସଂସ୍କୃତ ଅଭିଧାନ ଲେଖିଛନ୍ତି ।

୮୪ । ପଦ୍ମନାଥ ଦେବ—୪୦୦ ବର୍ଷ ପୂର୍ବେ କୌଣସି ଗଡ଼ଜାତର ରାଜାଥିଲେ । ପ୍ରଣୟପ୍ରଧାନ କାବ୍ୟ 'ପ୍ରଭାବତୀ'ର ରଚୟିତା ।

୮୫ । ପଦ୍ମନାଥ ପଟ୍ଟନାୟକ—୧୫୦ ବର୍ଷ ପୂର୍ବେ 'ଗୀତତାଳ ପ୍ରବନ୍ଧ' ନାମକ ସଙ୍ଗୀତ ବିଷୟକ ଗ୍ରନ୍ଥର ପ୍ରଣେତା ।

୮୬ । ପିଣ୍ଡିକ ଶ୍ରୀଚନ୍ଦନ—ସମୟ ଅଜ୍ଞାତ । ସ୍ତୁତିଗୀତମୂଳକ 'ମୁକୁନ୍ଦ-ମାଳା' ଗୀତର ରଚୟିତା ।

୮୭ । ପୀତାମ୍ବର ରାଜେନ୍ଦ୍ର—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ଏକ କରଦ ରାଜ୍ୟର ରାଜା । 'ରାମଲୀଳା' ରଚନା କରିଥିଲେ ।

୮୮ । ପୀତାମ୍ବର ମିଶ୍ର କବିଚନ୍ଦନ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । ଗୁଣ୍ଡିଚା ଚମ୍ପୂ, ୨ । ନାରାୟଣ ଶତକ ଟୀକା, ୩ । ଜାତକାଳଙ୍କାର ଟୀକା, ୪ । ରାମ ବିରୁଦାବଳୀ, ୫ । ପୀତାମ୍ବର ଚଣ୍ଡୀ (ସଂସ୍କୃତ ଚଣ୍ଡୀ ଭାଗବତର ଟୀକା) ।

୮୯ । ପୀତାମ୍ବର ଦେବ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ଜନୈକ ରାଜା, ଭକ୍ତିମୂଳକ ଗ୍ରନ୍ଥ 'ଅଖିଳ ରସ ଚନ୍ଦ୍ରାମଣି' ଲେଖିଛନ୍ତି ।

୯୦ । ପୁରୁଷୋତ୍ତମ ଦାସ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ସଂସ୍କୃତ 'ଗୁଣ୍ଡିଚା ବିଜେ'କୁ ଓଡ଼ିଆରେ ଅନୁବାଦ କରିଥିଲେ ।

୯୧ । ପୁରୁଷୋତ୍ତମ ମିଶ୍ର—୫୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ବ୍ରାହ୍ମଣ; ରଚନା—୧ । ସଙ୍ଗୀତ ନାରାୟଣ (ସଂସ୍କୃତ ସ୍ତୁତି ଗୀତାଦି), ୨ । କ୍ଷେତ୍ର ମହାତ୍ମ୍ୟ, ପୁରୀର ଦେବଦେବୀ ଓ ପୁରୀର ବିବରଣୀମୂଳକ ପ୍ରସିଦ୍ଧ ରଚନା । ୩ । ନୀଳାଦ୍ରି ମହାତ୍ମ୍ୟ—ଜଗନ୍ନାଥ ଓ ମନ୍ଦିର ବିଷୟକ ସଂସ୍କୃତ ଗ୍ରନ୍ଥ ।

୯୨ । ପୁରୁଷୋତ୍ତମ ପାଢ଼ୀ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ୧ । ଅନର୍ଘ ରାଘବ ଟୀକା (ସଂସ୍କୃତ ଅନର୍ଘ ରାଘବର ଟୀକା), ୨ । ସମସ୍ତ କବିମାନଙ୍କର ଟୀକା (ସବୁ କବିମାନଙ୍କ ବିଷୟରେ ସଂସ୍କୃତ ଟୀକା), ୩ । ଅମରକୋଷ ଟୀକା—ସଂସ୍କୃତ ଅଭିଧାନର ଟୀକା ।

୯୩ । ରଘୁନାଥ ଦାସ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ବିଖ୍ୟାତ ସଂସ୍କୃତ ପଣ୍ଡିତ, ଲେଖକ ଓ ଟୀକାକାର । ରଚନା—୧ । ବୈଦ୍ୟ କଳ୍ପଲତିକା—ପଦାର୍ଥ ବିଜ୍ଞାନ (phdsics) ବିଷୟରେ ସଂସ୍କୃତ ଗ୍ରନ୍ଥ । ୨ । ପ୍ରାୟଶ୍ଚିତ୍ତ ତରଙ୍ଗିଣୀ, (ସଂସ୍କୃତ) । ୩ । ଅମରକୋଷ ଟୀକା, ୪ । ରଘୁନାଥ ଦାସ

ଚନ୍ଦ୍ରିକା, (ସଂ:ବ୍ୟାକରଣ) ୫ । ବର୍ଦ୍ଧମାନ ବ୍ୟାକରଣ ଟୀକା—(ସଂ: ବ୍ୟାକରଣ ଟୀକା) ୬ । ସମସ୍ତ କବିଙ୍କର ଟୀକା, ୭ । ସଂସ୍କୃତ ମଞ୍ଜରୀ—(ବ୍ୟାକରଣ ଗ୍ରନ୍ଥ), ୮ । ରଘୁବଂଶ ଟୀକା, ୯ । ଉତ୍ପାତ ତରଙ୍ଗିଣୀ—ସଂସ୍କୃତ ପଦ୍ୟ ।

୯୪ । ରାମଚନ୍ଦ୍ର ବାଜପେୟୀ—୦୯୦ ବର୍ଷ ପୂର୍ବେ ଜୀବିତଥିଲେ । ପୁରୀବ୍ରାହ୍ମଣ, କର୍ମାଙ୍ଗ ପଦ୍ଧତି ସଂସ୍କୃତରେ ରଚନା କରିଥିଲେ ।

୯୫ । ରାମଚନ୍ଦ୍ର ଦାସ—୨୦୦ ବର୍ଷ ପୂର୍ବେ ଜୀବିତଥିଲେ । ରଚନା—୧ । ବଳଭଦ୍ର ବୋଲି (କୃଷ୍ଣବିଷୟକ), ୨ । ଚଉପଦୀ, (ଏକ କ୍ଷୁଦ୍ର କବିତା ସଂଗ୍ରହ) ।

୯୬ । ରାମଚନ୍ଦ୍ର ପଟ୍ଟନାୟକ—୫୦୦ ବର୍ଷ ପୂର୍ବେ ଜୀବିତ ଥିଲେ । 'ରଚନା—ହାରାବଳୀ', ପ୍ରଣୟପ୍ରଧାନ କାବ୍ୟ । 'ଶିବଚନ୍ଦ୍ରାମଣି', ସଂସ୍କୃତରେ ଶିବ ଉପାସନାମୂଳକ ଗ୍ରନ୍ଥ ।

୯୭ । ରାମକୃଷ୍ଣ ରଥ—ସମୟ ଅଜ୍ଞାତ । ସଂସ୍କୃତରେ ଏକ ଅଳଙ୍କାର ଗ୍ରନ୍ଥର ଟୀକା 'ସାହିତ୍ୟ ରତ୍ନାକର ଅଳଙ୍କାର' ରଚନା କରିଥିଲେ ।

୯୮ । ସଦାଜୟ—ସମୟ ଅଜ୍ଞାତ । ରଚନା—୧ । ସାରଳା ସ୍ତୁତି, ୨ । ମଙ୍ଗଳାସ୍ତୁତି, ୩ । ବିମଳାସ୍ତୁତି (ପୁରୀ ବିମଳାଙ୍କ ବନ୍ଦନା) ।

୯୯ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା—୧୬୨ ବର୍ଷ ପୂର୍ବେ ଜୀବିତ ଥିଲେ । ଗୀତ ଓ ଭକ୍ତିମୂଳକ ଜନପ୍ରିୟ ରଚନାବଳୀର ଲେଖକ । ରଚନା—୧ । ନିସ୍ତାର ଚିନ୍ତାମଣି, ୨ । ନାମଚିନ୍ତାମଣି, ୩ । ପ୍ରେମ ପଞ୍ଚାମୃତ, ୪ । ଯୁଗଳ ରସାମୃତ ଲହରି, ୫ । ପ୍ରେମତରଙ୍ଗିଣୀ, ୬ । ପ୍ରେମ ଲହରୀ, ୭ । ପ୍ରେମ ଭଉଁରୀ, ୮ । ଯୁଗଳରସାମୃତ ଚଉତିଶା । ସବୁଗୁଡ଼ିକ ଭକ୍ତିମୂଳକ ବା ଧର୍ମମୂଳକ ଗ୍ରନ୍ଥ ।

୧୦୦ । ଶମ୍ଭୁକର ବାଜପେୟୀ—୧୫୦ ବର୍ଷ ପୂର୍ବେ ଜୀବିତ ଥିଲେ । ବ୍ରାହ୍ମଣ; ନିଜ ନାମାଙ୍କିତ ସଂସ୍କୃତ ସ୍ମୃତି ଗ୍ରନ୍ଥ ରଚନା କରିଥିଲେ ।

୧୦୧ । ସାରଳା ଦାସ କବି—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ସଂସ୍କୃତ ମହାଭାରତକୁ ଓଡ଼ିଆରେ ଅନୁବାଦ କରିଥିଲେ ।

୧୦୨ । ଶିଶୁ ଦାଶ ଦାଶ—ସମୟ ଅଜ୍ଞାତ । ଦାରୁବ୍ରହ୍ମ ଗୀତା—ଦାରୁବ୍ରହ୍ମଙ୍କ ଆବିର୍ଭାବ ଓ ପୁରୀ ମନ୍ଦିର ନିର୍ମାଣ କାହାଣୀ ବିଷୟକ ଚମତ୍କାର ଗ୍ରନ୍ଥ ।

୧୦୩ । ଶିଶୁଶଙ୍କର ଦାସ—୨୫୦ ବର୍ଷ ଜୀବିତ ଥିଲେ । ସଂସ୍କୃତ ଉଷାହରଣୟ ନାଟକକୁ ଓଡ଼ିଆରେ ଅନୁବାଦ କରିଥିଲେ ।

୧୦୪ । ଶ୍ରୀଧର ଦାସ—୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ବାଙ୍କିର ଅଧିବାସୀ । କୃଷ୍ଣଙ୍କ ଆଦ୍ୟଲୀଳା ବିଷୟକ 'କାଞ୍ଚନଲତା' ରଚନା କରିଥିଲେ ।

୧୦୫ । ଶ୍ରୀପତି ଦାଶ—୬୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ବିଖ୍ୟାତ ବ୍ରାହ୍ମଣ ଜ୍ୟୋତିଷ । ନିଜ ନାମାନୁସାରେ 'ଶ୍ରୀପତି' ନାମକ ବିଖ୍ୟାତ ଜ୍ୟୋତିଷ ଗ୍ରନ୍ଥର ପ୍ରଣେତା । ଏହି ପୁସ୍ତକାନୁସାରେ ଓଡ଼ିଆ ବାର୍ଷିକ ପଞ୍ଜିକା ପ୍ରସ୍ତୁତ ହୁଏ ।

୧୦୬ । ହିପୁରାରି ଦାସ—୨୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା—୧ । କଟପାୟୀ, ସଂସ୍କୃତ ଜ୍ୟୋତିଷ ଗ୍ରନ୍ଥ, ୨ । କେରଳ ଗୀତା, ଜ୍ୟୋତିଷ ଗ୍ରନ୍ଥ, ୩ । ରାମକୃଷ୍ଣ କେଳି କଲ୍ଲୋଳ (ରାମ ଓ କୃଷ୍ଣ ବିଷୟକ), ୪ । ରାଧାକୃଷ୍ଣ କେଳିକଲ୍ଲୋଳ (କୃଷ୍ଣ ରାଧା ବିଷୟକ) ।

୧୦୬ । ଉପେନ୍ଦ୍ର ଭଞ୍ଜ – ଘୁମୁସରର ରାଜା । ଓଡ଼ିଶାର କବିମାନଙ୍କ-ମଧ୍ୟରେ ସବୁଠାରୁ ପ୍ରଖ୍ୟାତ । ୩୦୦ ବର୍ଷ ପୂର୍ବେ ଜୀବିତ ଥିଲେ । ରଚନା – ୧ । ଅବନା ରସତରଙ୍ଗ (ରାମ ବିଷୟକ), ୨ । ବା' ଚଉତିଶା, କୃଷ୍ଣବିଷୟକ ସଙ୍ଗୀତ, ୩ । ବୈଦେହୀଶ ବିଳାସ, ୪ । ଲାବଣ୍ୟବତୀ, ପ୍ରଣୟ ପ୍ରଧାନ କାବ୍ୟ, ୫ । ବ୍ରଜଲୀଳା – କୃଷ୍ଣ ଲୀଳାତ୍ମକ, ୬ । ଚନ୍ଦ୍ରକଳା କାବ୍ୟ, ୭ । ଚନ୍ଦ୍ରରେଖା – ପ୍ରଣୟ ପ୍ରଧାନ କାବ୍ୟ, ୮ । ଚୌପଦୀ ଭୂଷଣ, ୯ । ଚୌପଦୀ ଚନ୍ଦ୍ର, ୧୦ । ଛାନ୍ଦଭୂଷଣ – କାବ୍ୟ ରଚନା ରୀତି ସଂପର୍କୀୟ, ୧୧ । ଶବ୍ଦଲେଖା – ପ୍ରଣୟ କାବ୍ୟ, ୧୨ । ଶବ୍ଦକାବ୍ୟ ବନ୍ଧୋଦୟ – କାବ୍ୟରଚନାରୀତି ସମ୍ବନ୍ଧୀୟ, ୧୩ । ଦୁହା – (Ethical tales), ୧୪ । ଗାହା – (Ethica tales), ୧୫ । ଗୀତାଭିଧାନ; ୧୬ । ହେମ-ମଞ୍ଜରୀ – ପ୍ରଣୟ କାବ୍ୟ, ୧୭ । ଇଚ୍ଛାବତୀ – ରାଜ୍ଞୀ ଓ ରାଜ-କୁମାରୀ ଇଚ୍ଛାବତୀଙ୍କ କାହାଣୀ; ୧୮ । ଯମକରାଜ ଚଉତିଶା – କୃଷ୍ଣବିଷୟକ ସଙ୍ଗୀତ, ୧୯ । ଭରତ ଓ କଳାବତୀଙ୍କ ପ୍ରଣୟ କାହାଣୀ, ୨୦ । କଳାକଉତୁକ – କୃଷ୍ଣ ଲୀଳାତ୍ମକ, ୨୧ । କାମକଳା – ପ୍ରଣୟ କାବ୍ୟ, ୨୨ । କୋଟି ବ୍ରହ୍ମାଣ୍ଡସୁନ୍ଦରୀ – ନାରୀ ପ୍ରଣୟର ବିଶୁଦ୍ଧତା ଓ ଅବିଚ୍ଛିନ୍ନତାର ଏକ ମନୋହର କାହାଣୀ ସମ୍ବଳିତ କାବ୍ୟ, ୨୩ । କୁଞ୍ଜ ବିହାର – କୃଷ୍ଣ ଲୀଳାତ୍ମକ, ୨୪ । ଲାବଣ୍ୟବତୀ – ଚନ୍ଦ୍ରଭାନୁ ଓ ଲାବଣ୍ୟବତୀଙ୍କ ପ୍ରଣୟ ସମ୍ବଳିତ ଜନପ୍ରିୟ କାବ୍ୟ, ୨୫ । ମୁକ୍ତାବତୀ— ମୁକ୍ତାବତୀର କାହାଣୀ, ୨୬ । ମନୋରମା – ( ପ୍ରଣୟପ୍ରଧାନ କାବ୍ୟ) ୨୭ । ପ୍ରେମଲତା କାବ୍ୟ, ୨୮ । ପ୍ରେମସୁଧାନିଧି – କେରଳ ରାଜକୁମାରୀ ପ୍ରେମସୁଧାନିଧିର ପ୍ରଣୟ ଉପାଖ୍ୟାନ,

୨୯ । ପୁରୁଷୋତ୍ତମ ମହାତ୍ମ୍ୟ, ୩୦ । ରସଲୀଳା— କୃଷ୍ଣ ଲୀଳାତ୍ମକ, ୩୧ । ରସଲେଖା—ରାଜକୁମାରୀ ରସଲେଖାର କାହାଣୀ, ୩୨ । ରସପଞ୍ଚକ—ଛନ୍ଦବଦ୍ଧ ଆଦିରସାତ୍ମକ ସଙ୍ଗୀତ, ୩୩ । ରସିକ ହାରବଳୀ--ସ୍ତୁଦ୍ୟମୂଳକ କାବ୍ୟ, ୩୦ । ରାମଲୀଳାମୃତ—ରାମଚରିତମୂଳକ, ୩୫ । ରସମଞ୍ଜରୀ— କାବ୍ୟ ରଚନାର ନିୟମାବଳୀ ସମ୍ବନ୍ଧୀୟ, ୩୬ । ଋତୁରତ୍ନ— କାଳୀଦାସଙ୍କ ଋତୁସଂହାରର ପଦ୍ୟରୂପ, ୩୭ । ସଂଗୀତ କୌମୁଦୀ—ସଂଗୀତ ବିଷୟକ ଗ୍ରନ୍ଥ, ୩୮ । ଶଶିରେଖା— କାବ୍ୟ, ୩୯ । ଶୋଭାବତୀ—ରାଜକନ୍ୟା ଶୋଭାବତୀର କାହାଣୀ, ୪୦ । ସୁବର୍ଣ୍ଣରେଖା—କାବ୍ୟ, ୪୧ । ସୁଭଦ୍ରା ପରିଣୟ—ଅର୍ଜୁନ ଓ ଜଗନ୍ନାଥଙ୍କ ଭଗିନୀ ସୁଭଦ୍ରାଙ୍କ ପରିଣୟ ବିଷୟକ, ୪୨ । ତ୍ରୈଲୋକ୍ୟମୋହିନୀ କାବ୍ୟ ।

---

# ନିମ୍ନୋକ୍ତ ରଚନାବଳୀର ଲେଖକଙ୍କ ବିଷୟ ସଂଶୟାତ୍ମକ

୧ । ଅର୍ଥ କୋଇଲି—କୃଷ୍ଣକଥା ସଂବନ୍ଧୀୟ, ୨ । ଅଶ୍ୱତ୍ଥ କ୍ଷେତ୍ର ମାହାତ୍ମ୍ୟ—ବୃକ୍ଷଙ୍କର ପବିତ୍ରତା ସମ୍ବନ୍ଧୀୟ, ୩ । ବସନ୍ତ କୋଇଲି—କୃଷ୍ଣକଥାମୂଳକ, ୪ । ଭାରତାମୃତ (?)— ଭାରତ ବା ଭରତ ସଂପର୍କୀୟ, ୫ । ଭଞ୍ଜ ମହୋଦୟ ନାଟିକା— ଏକ କ୍ଷୁଦ୍ର ସଂସ୍କୃତ ନାଟକ, ୬ । ଭକ୍ତି ରସାମୃତ ସିନ୍ଧୁ— ଭକ୍ତିମୂଳକ ରଚନା, ୭ । ବିଦଗ୍ଧ ମାଧବ—ରାଧାକୃଷ୍ଣ ବିଷୟକ, ୮ । ବ୍ରହ୍ମଜ୍ଞାନ—ଆଧ୍ୟାତ୍ମ୍ୟ ବିଷୟକ, ୯ । ଚୈତନ୍ୟ ଚରିତାମୃତ—ନଦିଆର ବୈଷ୍ଣବ ଧର୍ମ ସଂଗଠକ ଚୈତନ୍ୟଙ୍କ

ଗୀତମ୍ମ—ବଙ୍ଗଳାରୁ ଅନୁବାଦ, ୧୦ । ଦେଉଳ ତୋଳା—ଜଗନ୍ନାଥଙ୍କ ବଡ଼ଠ ଦେଉଳ ନିର୍ମାଣ ସମ୍ପର୍କୀୟ, ୧୧ । ଧ୍ୱନି ମଂଜରୀ—ସଂସ୍କୃତ ଅଭିଧାନ, ୧୨ । ଦ୍ୱିରେଫ କୋଷ—ପୂର୍ବଭଳି, ୧୩ । ଏକାମ୍ର କ୍ଷେତ୍ର—ଭୁବନେଶ୍ୱରର ପବିତ୍ର ମନ୍ଦିରାଦି ସଂପର୍କୀୟ, ୧୪ । ଏକାମ୍ର ପୁରାଣ—ପୂର୍ବୋକ୍ତ ବିଷୟକ, ୧୫ । ଏକାକ୍ଷର କୋଷ—ସଂସ୍କୃତ ଅଭିଧାନ, ୧୬ । ଜ୍ଞାନଚନ୍ଦ୍ର ଚୂଡ଼ାମଣି—ଆତ୍ମଜ୍ଞାନ ସଂପର୍କୀୟ, ୧୭ । ଇତିହାସ ଲେଖନ—ପୂର୍ବୋକ୍ତ ବିଷୟକ, ୧୮ । ଜଳେଶ୍ୱର ପଦ୍ଧତି—ସ୍ମୃତି ବିଷୟକ ସଂସ୍କୃତ ଗ୍ରନ୍ଥ, ୧୯ । କାଞ୍ଚି କାବେରୀ—କାଞ୍ଚି ବିଜୟ ଓ ପଦ୍ମାବତୀଙ୍କ ସଂପର୍କୀୟ ଚମତ୍କାର କାହାଣୀ, ୨୦ । କପିଳ ସଂହିତା—ସଂସ୍କୃତ; ପୁରୀ, କୋଣାର୍କ, ଭୁବନେଶ୍ୱର ଯାଜପୁର ଆଦି ଓଡ଼ିଶାର ତୀର୍ଥସ୍ଥାନ ସଂପର୍କୀୟ ଗ୍ରନ୍ଥ, ୨୧ । କୋଷ ମଞ୍ଜରୀ—ସଂସ୍କୃତ ଅଭିଧାନ, ୨୨ । କ୍ଷେତ୍ର ମାହାତ୍ମ୍ୟ—(ସଂସ୍କୃତ) ଓଡ଼ିଶାର ପବିତ୍ର ସ୍ଥାନ ବିଷୟକ, ୨୩ । ମହାନ୍ତନିର୍ଣ୍ଣୟରସ—ବିଭିନ୍ନ ସନ୍ନ୍ୟାସୀ ସମ୍ପ୍ରଦାୟ ବିଷୟକ, ୨୪ । ମନ୍ତ୍ରାର୍ଣ୍ଣବ—ସଂସ୍କୃତ ତନ୍ତ୍ର ଓ ଉପାସନା ବିଷୟକ ଗ୍ରନ୍ଥ, ୨୫ । ମନ୍ତ୍ରମଣ୍ଡଳ—ସୃଷ୍ଟିତତ୍ତ୍ୱ ସଂପର୍କୀୟ ପୁସ୍ତକ, ୨୬ । ମୁକୁନ୍ଦ ମାଳା—ଆଂଶିକ ଓଡ଼ିଆ ଓ ଆଂଶିକ ସଂସ୍କୃତରେ ରାମ ବିଷୟକ ରଚନା, ୨୭ । ନବ ବୃନ୍ଦାବନ ବିହାର—କୃଷ୍ଣ ଓ ବୃନ୍ଦାବନର ନାରୀଙ୍କ ବିହାର, ୨୮ । ନାନାର୍ଥ କୋଷ—ସଂସ୍କୃତ ଅଭିଧାନ, ୨୯ । ନିଦାନ ଟୀକା—ସଂସ୍କୃତ ଚିକିତ୍ସା ଗ୍ରନ୍ଥର ସଂସ୍କୃତ ଟୀକା, ୩୦ । ପାରିଜାତ ହରଣ—ସଂସ୍କୃତ ନାଟକ କୃଷ୍ଣ ବିଷୟକ, ୩୧ । ପ୍ରାଚୀ ମହାତ୍ମ୍ୟ—ସଂସ୍କୃତ,

୩୨ । ପ୍ରେମକଳ୍ପଲତିକା ନାଟକ— ସଂସ୍କୃତଗ୍ରନ୍ଥ, ୩୩ । ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ—ସଂସ୍କୃତ, ୩୪ । ରାଧାମୃତ ଗୀତା, ୩୫ । ରାମ ସୀତା ବଲ୍ଲଭ—ସଂସ୍କୃତ ନାଟକ, ୩୬ । ରାମଲୀଳା ନାଟକ —ସଂସ୍କୃତ, ୩୭ । ଶବ୍ଦ କୋଷ ଟୋଲା (Tola)—ସଂସ୍କୃତ ବ୍ୟାକରଣ, ୩୮ । ସଂପ୍ରଦାୟ ସିଦ୍ଧ— ବୃନ୍ଦାବନ ମାନ୍ଦ ବିଷୟକ ଗ୍ରନ୍ଥ, ୩୯ । ସଚ୍ଚିଦାନନ୍ଦ— ସଂସ୍କୃତ କାବ୍ୟ, ୪୦ । ଶିବ ପୁରାଣ—ମୂଳ ସଂସ୍କୃତ ପଦ୍ୟର ଓଡ଼ିଆ ଅନୁବାଦ, ୪୧ । ଶିବ ଲୀଳାମୃତ, ୪୨ । ଶ୍ଳୋକାବଳୀ (ସଂସ୍କୃତ), ୪୩ । ସୂର୍ଯ୍ୟକ୍ଷେତ୍ର ମାହାତ୍ମ୍ୟ—କୋଣାର୍କ ଦେଉଳର ମହତ୍ତ୍ୱବିଷୟକ ସଂସ୍କୃତ ଗ୍ରନ୍ଥ, ୪୪ । ତନ୍ତ୍ରସାର – ତନ୍ତ୍ରବିଷୟକ ସଂସ୍କୃତ ଗ୍ରନ୍ଥ, ୪୫ । ତନ୍ତ୍ରାର୍ଣ୍ଣବ—ତନ୍ତ୍ରଶାସ୍ତ୍ର ସମ୍ପର୍କୀୟ ସଂସ୍କୃତ ଗ୍ରନ୍ଥ, ୪୬ । ଭୁଳସୀକ୍ଷେତ୍ର ମାହାତ୍ମ୍ୟ—କେନ୍ଦ୍ରାପଡ଼ାର ମହତ୍ତ୍ୱ ପରିଚୟସୂଚକ, ୪୭ । ଉତ୍କଳ ମାହାତ୍ମ୍ୟ—(ସଂସ୍କୃତ), ଓଡ଼ିଶାର ପବିତ୍ର ସ୍ଥାନମାନଙ୍କ ବିଷୟରେ ଲିଖିତ ଗ୍ରନ୍ଥ ।

---

ମୁଦ୍ରକ— ଶ୍ରୀ ରାମକୃଷ୍ଣ ମହାପାତ୍ର, ଶାସ୍ତ୍ରୀ, ଗୀତା ପ୍ରେସ,
ମହମ୍ମଦିଆ ବଜାର, କଟକ—୨